**HE SURYA, HE AKASH** By Dr. Hemant Kumar Das, First Edition : 2001, Publisher : Ananda Prakasn, Mission Road, Cuttack - 1, D.T.P ; - Graph 'n' Graphics, Oriya Bazar, Cuttack - 1, Printed at : Surya Offset, Nima Sahi, Cuttack, Price : Rs. 95-00

ହେ ସୂର୍ଯ୍ୟ, ହେ ଆକାଶ, ଲେଖକ : ଡଃ ହେମନ୍ତ କୁମାର ଦାସ, ପ୍ରକାଶକ : ଆନନ୍ଦ ପ୍ରକାଶନ, ମିଶନ୍ ରୋଡ୍, କଟକ - ୧, ପ୍ରଥମ ସଂସ୍କରଣ : ୨୦୦୧, ଅକ୍ଷର : ଗ୍ରାଫ୍ 'ଏନ୍' ଗ୍ରାଫିକ୍ସ, ଓଡ଼ିଆ ବଜାର, କଟକ, ମୁଦ୍ରଣ : ସୂର୍ଯ୍ୟ ଅଫ୍‌ସେଟ୍, ନିମ ସାହି, କଟକ, ମୂଲ୍ୟ:- ଟ ୯୫-୦୦ ମାତ୍ର

## ଗଳ୍ପ ପଢ଼ିବା ପୂର୍ବରୁ..

ନିତ୍‌ସେ ଯେତେବେଳେ ଈଶ୍ୱରଙ୍କର ମୃତ୍ୟୁ ଘୋଷଣା କରି ସମଗ୍ର ବିଶ୍ୱରେ ନିଜ ଚିନ୍ତାର ଅଭିନବତା ଓ ମୌଳିକତା ନିମନ୍ତେ ଅଭିନନ୍ଦିତ ଏବଂ ନିନ୍ଦିତ ହେଉଥିଲେ ସେତେବେଳେ ସେ ଜାଣି ନ ଥିଲେ ଯେ ମଣିଷ ନିଜର ସମସ୍ତ ସ୍ୱପ୍ନ ଦେଇ ଦେବତା ଗଢ଼ିଚି । ଯେଉଁଦିନ ତା' ସ୍ମୃତିର ଆକାଶରୁ ଦେବତାମାନେ ଅସ୍ତ ହୋଇଯିବେ, ସେଦିନ ସେ ନିଜେ ନ ଥିବ । ଏଇ ଭଳି ଏକ ଚାଞ୍ଚଲ୍ୟକର ମନ୍ତବ୍ୟ ଦେଇ ସେ ପରେ ଅନୁତାପ ମଧ କରିଥିଲେ । ଈଶ୍ୱରଙ୍କଠାରୁ ଦୂରେଇ ଯିବା ପରେ ନିଃସଙ୍ଗତାର ତୀବ୍ର ଯନ୍ତ୍ରଣା ତାଙ୍କ ଜୀବନର ସମସ୍ତ ସରସତାକୁ କିଭଳି ଶୋଷି ନେଇଥିଲା, ତାହା ଅକପଟ ଚିତ୍ତରେ ସ୍ୱୀକାର କରିଥିଲେ ।

ଦେବତ୍ୱ ଏବଂ ମାନବତ୍ୱ ମଧରେ ଶ୍ରେଷ୍ଠତ୍ୱର ପ୍ରଶ୍ନ ଚିରକାଳ ଅସମାହିତ ରହି ଆମ ମଧରେ ଏକ ଚିରନ୍ତନ ପ୍ରଶ୍ନବାଚୀ ସୃଷ୍ଟି କରିଛି । ମନେହୁଏ, ନିଜ ଅପୂର୍ଣ୍ଣ ଆଶାର ନିର୍ଯ୍ୟାସ ଦେଇ ମଣିଷ ଦେବତା ଗଢ଼ିଚି । ଯାହା ସେ ହୋଇ ପାରିନାହିଁ ଅଥଚ ହେବା ପାଇଁ ଚିରକାଳ ସ୍ୱପ୍ନ ଦେଖିଚି ସେଇ ଚେତନାର ଫସଲ ହେଉଛି ଦେବତା । ତା' ଭିତରେ ତେଣୁ ମଣିଷ ଭଳି କାମନା ବାସନା ଲୋଭ, ମୋହ ଇତ୍ୟାଦି ସବୁ ରହିଚି । ଗୋଟିଏ ଦୃଷ୍ଟିରୁ କିନ୍ତୁ ମଣିଷ ତା'ଠାରୁ ପାଦେ ଆଗେଇ ରହିଛି । ଅଖଣ୍ଡ ଆଶା ଆଉ ସମ୍ଭାବନାକୁ ନେଇ ମଣିଷ ଜୀବନ ଦୀପ୍ତିମନ୍ତ ହୋଇ ଉଠିଥିବା ବେଳେ ଅଶ୍ରୁବିହୀନ ଉପଲବ୍ଧିକୁ ନେଇ ଦେବତାର ଦୟନୀୟ ଜୀବନ ଏକ ଦୁର୍ବହ ଭାର ତୁଲ୍ୟ ତା' ଉପରେ ଲଦି ହୋଇ ପଡ଼ିଚି । ଏହା ହିଁ ହେଉଚି ଦେବ- ଜୀବନର ବିଡ଼ମ୍ବନା ।

'ହେ ସୂର୍ଯ୍ୟ, ହେ ଆକାଶ' ର ଗଳ୍ପଗୁଡ଼ିକ ଭିତରେ ଦେବତ୍ୱର ସେଇ ବିଡ଼ମ୍ବିତ ଉତ୍‌କ୍ରମଣ ଦେଖିବାକୁ ମିଳିବ । ଦାୟିତ୍ୱହୀନ ଭୋଗ ଏବଂ ଅବାରିତ ପ୍ରାପ୍ତିର ମହୋତ୍ସବ ମଧରେ ଦେବତାର ଜୀବନରେ ଯେଉଁ ଦୁର୍ଭୋଗ ନଇଁ ଆସେ ତାକୁ ହିଁ ଏଇ ସଂକଳନର ଅଧିକାଂଶ ଗଳ୍ପରେ ବିଶ୍ଳେଷଣ କରିବାକୁ ଚେଷ୍ଟା କରାଯାଇଛି । ଅମାପ କ୍ଷମତା, ନିୟନ୍ତ୍ରଣହୀନ ବିଳାସ ଏବଂ ନୀତିହୀନ ଆଚରଣ ଦେବଜୀବନ ପାଇଁ ଯେଉଁ ଅଭିଶାପ ଡାକି ଆଣେ, ସାଧାରଣ ଏକ ମଣିଷର ଦୃଷ୍ଟିକୋଣରୁ ତାହାକୁ ବିଚାର କରାଯାଇଛି । ବ୍ରହ୍ମାଙ୍କର ନିଜ ଆତ୍ମଜା ସହିତ ଏବଂ ଯମୀଙ୍କର ନିଜର ସହୋଦର ସହିତ ରମଣେଚ୍ଛା, ମହାଭାରତ ପ୍ରଣେତା ନୀତିଶାସ୍ତ୍ରବିତ୍ ବ୍ୟାସଦେବଙ୍କର ମାତାଙ୍କ ପ୍ରରୋଚନାରେ

ଅଗମ୍ୟଗମନ ଏହା ଭିତରେ ସେକାଳର ସମାଜ-ସଂସ୍ଥା କିଭଳି ତଥାପି କଳୁଷିତ ନ ହୋଇ ରହି ପାରିଥିଲା, ଏହା ଆମ ଭଳି ସାଧାରଣ ମଣିଷ ପାଇଁ ଚିରକାଳ ଅସମାହିତ ପ୍ରଶ୍ନ ହୋଇ ରହିଥିବା ଅଧ୍ୟାତ୍ମ ବାଦୀମାନେ ଏଥିରୁ ଯେଉଁ ତାତ୍ତ୍ୱିକ ଅର୍ଥ ବାହାର କରନ୍ତୁ ନା କାହିଁକି ଆମ ପାଇଁ ଏହା ଛଳନା ବ୍ୟତୀତ ଅନ୍ୟ କିଛି ନୁହେଁ । ଦେବତ୍ୱ ଆଶୀର୍ବାଦ କିମ୍ବା ଅଭିଶାପ ଏଇ ଭଳି ଏକ ପ୍ରଶ୍ନ ବାରମ୍ବାର ମନରେ ଦେଖାଦିଏ ।

ସଂକଳିତ ଗଳ୍ପରେ ଦେବ ଚରିତ୍ରକୁ ଧୂଳିମାଟିର ଧରଣୀକୁ ଓହ୍ଲାଇ ଆଣି ତାହା ଭିତରେ ମାନବୀୟ ଚେତନାର ଅନ୍ୱେଷଣ କରିବା ନିମନ୍ତେ ଉଦ୍ୟମ କରାଯାଇଛି । ବସ୍ତୁତଃ ଦେବ ଏବଂ ମାନବ ଏ ଉଭୟଙ୍କୁ ଗୋଟିଏ ବିନ୍ଦୁରେ ମିଳାଇ ଦେଖିବାର କାମନା ମଧ୍ୟରୁ ହିଁ ଏ ସବୁ ଗଳ୍ପର ସୃଷ୍ଟି । ଏହାର ସଫଳତା, ବିଫଳତା ପାଠକ ସମାଜର ବିଚାର ସାପେକ୍ଷ । ଗଳ୍ପ ସବୁ ସାରଳା ସାହିତ୍ୟ ସଂସଦ କଟକର ବାର୍ଷିକ ଗଳ୍ପ ସଂକଳନ ନିମନ୍ତେ ବିଗତ ସତର / ଅଠର ବର୍ଷ ମଧ୍ୟରେ ରଚିତ, ବହୁ ପଠିତ, ଚର୍ଚ୍ଚିତ, ନନ୍ଦିତ ଏବଂ ନିନ୍ଦିତ ମଧ୍ୟ । ଗାଣ୍ଡିକ ହିସାବରେ ଏ ସବୁର ଗୋଟିଏ ଏକତ୍ରିତ ରୂପର ଚିନ୍ତା ମୋ ମନରେ ବହୁକାଳରୁ ଥିଲା । ଏହା ଦ୍ୱାରା ପାଠକମାନେ ବକ୍ତବ୍ୟର ଏକ ପୂର୍ଣ୍ଣ ରୂପ ଦେଖି ବାକୁ ପାଇ ଏହାର ଗୁଣାଗୁଣ ପରୀକ୍ଷାର ସୁଯୋଗ ପାଇବେ । 'ହେ ସୂର୍ଯ୍ୟ, ହେ ଆକାଶ' ହେଉଛି ସେଇ ଚିନ୍ତାର ପ୍ରସୂତି । ଆଶା କରୁଛି, ମୋର ପୂର୍ବ ସଂକଳନ ଭଳି, ପାଠକମାନେ ଏହାକୁ ସାଦରେ ଗ୍ରହଣ କରିବେ ।

ପ୍ରକାଶକ ବନ୍ଧୁ ଶ୍ରୀ ଜଗଦୀଶ ପଣ୍ଡା ଖୁବ୍ ଅଳ୍ପ ସମୟ ମଧ୍ୟରେ ମୋର କଳ୍ପନାକୁ ସାକାର କରିଛନ୍ତି । ସେଥିଲାଗି ତାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

— ହେମନ୍ତ କୁମାର ଦାସ

ଯଶସ୍ୱୀ କଥାକାର

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ



ମାନନୀୟେଷୁ

ହେମନ୍ତ କୁମାର ଦାସ

# ସୂଚୀ ପତ୍ର



—•—

# ଅଧିବାସ

ନାମ ନ ଜଣା ରାତ୍ରିଚର ପକ୍ଷୀର ଅଶାନ୍ତ କୁହାଟରେ ନିଶିଥିନୀର ଶାନ୍ତ ଆଉ ନିଥର ନିର୍ଜନତା ଖଣ୍ଡ ଖଣ୍ଡ ହୋଇ ଖସିପଡ଼ିଲା । ତା' ସହିତ ତାଳ ଦେଇ ଶୁଣାଗଲା ପଥଚାରୀ ସାରମେୟ କୁକୁର ତନ୍ଦ୍ରାଳସ ଚିତ୍କାର । ଘୁମନ୍ତ ରାତ୍ରିଚର ପ୍ରହରୀର ନିଦ୍ରାତୁର କ୍ଳାନ୍ତ କଣ୍ଠ ଏଥର ସଜାଗ ହୋଇଉଠିଲା । ସୁପ୍ତ ପୃଥିବୀର ଗହମ ନିଦ ଭାଙ୍ଗିବା ପାଇଁ ଭଏ ଯେମିତି ଏକ ସତର୍କ ଚେତାବନୀ ।

ଶୋଇପଡ଼ିଛି ସମଗ୍ର ସୃଷ୍ଟି ଆଜି କର୍ମହୀନତାର ନିଚ୍ଛିଦ୍ର ସୁଶୁପ୍ତିରେ । ଭବିତବ୍ୟ ଆଉ ଭାଗ୍ୟର ଆପାତ କୋମଳ ତୂଳୀତଳରେ ଶୋଇ ରହିଛି ସମଗ୍ର ଭାରତବର୍ଷ । କାଳର ଅମୋଘ ଚେତାବନୀ କେମିତି ତା'ର କାନରେ ପଡ଼ିବ ?

ସୂଚୀଭେଦ୍ୟ ଅନ୍ଧକାରର ମଥା ଉପରେ ତାରା ଭରା ଆକାଶ ଆଡ଼କୁ ଅନାଇ ଦ୍ୱାରକାଧିପତି ଶ୍ରୀକୃଷ୍ଣ ଭାରତବର୍ଷର ଭାଗ୍ୟ ବିଷୟରେ ଚିନ୍ତା କରୁଥିଲେ । ସମଗ୍ର ଜମ୍ବୁଦ୍ୱୀପର ରାଜନୈତିକ ଆକାଶ ଆଜି ଦୁର୍ଭାଗ୍ୟର କୃଷ୍ଣ କଜ୍ଜଳ ମେଘରେ ଆଚ୍ଛନ୍ନ ହୋଇପଡ଼ିଚି । ଝଡ଼ ଉଠିବାକୁ ବେଶୀ ବିଳମ୍ବ ମଧ୍ୟ ନାହିଁ ।

ଅଶାନ୍ତ ସମୁଦ୍ର ଭିତରେ କର୍ଣ୍ଣଧାରହୀନ ଜର୍ଜର ନୌକାଟିଏ ଭଳି ଆଜି ଜମ୍ବୁଦ୍ୱୀପର ଅବସ୍ଥା । ନିରାପଦରେ ତାକୁ କୂଳରେ ଲଗାଇବ, ଏଭଳି ଶକ୍ତିଧର ନେତାଟିଏ ତ କାହିଁ ଆଖିରେ ପଡୁନାହିଁ । ନେତା ନିୟନ୍ତ୍ରଣ କରେ ଦେଶର ଭାଗ୍ୟ । ସମୂହ ସ୍ୱାର୍ଥର କଷଟୀରେ ପରୀକ୍ଷିତ ହୋଇ ଉତ୍ତୀର୍ଣ୍ଣ ହୋଇପାରିଲେ ହିଁ ନେତାଟିଏ ସୃଷ୍ଟି ହୁଏ । ହସ୍ତିନାର ରାଜସିଂହାସନ ମଣ୍ଡନକରି ବସିଥିବା ଅନ୍ଧନନ୍ଦନ ଦୁର୍ଯ୍ୟୋଧନ କ'ଣ ସେଇ ନେତା ?

ଜତୁ ଗୃହରେ ପାଣ୍ଡବମାନଙ୍କର ନିଧନବାର୍ତ୍ତା ଯେଉଁ ଦିନଠୁ ପ୍ରଚାରିତ ହେଲାଣି, ସେଇ ଦିନଠୁଁ ସେ ହୋଇ ଉଠିଚି ବେପରୁଆ, ଲଗାମ୍‌ହୀନ ଘୋଡ଼ାଭଳି ଛୁଟିଚି ଦିଗ୍ ବିଦିଗ ଜ୍ଞାନଶୂନ୍ୟ ହୋଇ । ଅନ୍ଧ ଧୃତରାଷ୍ଟ୍ର କୁଆଡୁ ତାକୁ ନିୟନ୍ତ୍ରଣ କରିପାରିବେ ?

ପାଣ୍ଡବମାନେ ଥିଲେ ଅବା !

•

ରାତ୍ରିର ବିଳମ୍ବିତ ପ୍ରହରଯାଏ ଆଜି - ମନ୍ତ୍ରଣାକକ୍ଷରେ ସେଇ ଆଲୋଚନା ଚାଲିଥିଲା । ଗୁପ୍ତଚର ସମ୍ବାଦ ଆଣିଥିଲା, ମଗଧ ନରେଶ ଜରାସନ୍ଧ ପୁଣି କୁଆଡ଼େ

ଦ୍ୱାରକା ଆକ୍ରମଣ ନିମନ୍ତେ ପ୍ରସ୍ତୁତ ହେଉଛି । ନାଃ - ଲୋକଟାର ସାହସକୁ ପ୍ରଶଂସା କରିବାକୁ ପଡ଼ିବ । ଏ ବୟସରେ ଯୋଜନ ଯୋଜନ ଦୂର ଲଂଘନ କରି ସମୁଦ୍ର ମଝିରେ ସ୍ଥିତ ଏଇ ଛୋଟିଆ ରାଜ୍ୟ ଖଣ୍ଡିକୁ ଗ୍ରାସକରିବା ନିମନ୍ତେ ବାହାରି ପଡ଼ିବା କିଛି କମ୍ କଥା ନୁହେଁ । ମଗଧ ଆକ୍ରମଣରୁ ଆତ୍ମରକ୍ଷା ନିମନ୍ତେ ତ ଯାଦବମାନଙ୍କର ଏଇ ସ୍ୱେଚ୍ଛାନିର୍ବାସନ । ନ ହେଲେ ମଥୁରା ଭଳି ଏକ ସମୃଦ୍ଧ ରାଜପଦ ଛାଡ଼ି ଜଳାର୍ଣ୍ଣବ ଏଇ ଅଞ୍ଚଳକୁ କିଏ ଆସିଥାଆନ୍ତା ?

ମନ୍ତ୍ରଣା ଚାଲିଥିଲା ଦୀର୍ଘକାଳ । କାଦମ୍ବରୀ ପ୍ରମତ୍ତ ରୋହିଣୀ ନନ୍ଦନ ବଳଦେବ ସଦା ଚରମ କାର୍ଯ୍ୟ ପନ୍ଥା ଗ୍ରହଣରେ ବିଶ୍ୱାସୀ । ତାଙ୍କର ପ୍ରସ୍ତାବ ଥିଲା, ଜରଦ୍‌ଗବ ଜରାସନ୍ଧ ଏଠାକୁ ଆସିବା ପୂର୍ବରୁ ଯାଦବବୀର ମାନେ ମଗଧ ଘେରାଉ କରନ୍ତୁ । ମୂଷଳାଗ୍ରରେ ମଗଧକୁ ଉତ୍ପାଟନ କରି ସାଗରଗର୍ଭରେ ନିକ୍ଷେପ କରିବାକୁ ତାଙ୍କୁ ବିଶେଷ କଷ୍ଟ କରିବାକୁ ପଡ଼ିବ ନାହିଁ ।

ଉଦ୍ଧବ, ସାତ୍ୟକି, ଅକ୍ରୂର ପ୍ରଭୃତି ଯାଦବ ବୀରମାନେ କିଏ କେତେ ପ୍ରସ୍ତାବ ଦେଲେ । ସମଗ୍ର ଭାରତବର୍ଷର ଆକାଶ ସମ୍ପ୍ରତି ଯେମିତି ଧୂମାଚ୍ଛନ୍ନ ହୋଇ ଉଠିଛି, ସେଥିରେ ରାଜନୀତି ଯେ କୁଆଡ଼କୁ କଡ଼ ଲେଉଟାଇବ, ଏହା ଅନୁମାନ କରିବା କାହାରି ପକ୍ଷରେ ସମ୍ଭବ ନ ଥିଲା ।

ଯଦୁପତି ସେଇ ବିଷୟରେ ଯଦୁବୀରମାନଙ୍କୁ ସଚେତନ କରି ଦେଇଥିଲେ । ଦୁନିଆ ଚିରକାଳ ଶକ୍ତର ଭକ୍ତ । ପାଣ୍ଡବମାନଙ୍କ ଅବର୍ତ୍ତମାନରେ କୁରୁମଣି ଦୁର୍ଯ୍ୟୋଧନ, ଯେମିତି ଶକ୍ତି ବଢ଼ାଇବାରେ ଲାଗିଚି, ସେଥିରେ ହସ୍ତିନାପୁରରୁ କୌଣସି ସହାୟତା ପାଇବା ସମ୍ଭବ ହେବ ନାହିଁ । ସହଜେ କୁନ୍ତୀଙ୍କ କାରଣରୁ ଯଦୁବଂଶ ସହ କୌରବ କୁଳର ସମ୍ପର୍କ ଆଦୌ ଭଲ ନୁହେଁ ।

ଜମ୍ବୁଦ୍ୱୀପର ଛୋଟବଡ଼ ବହୁ ସାମନ୍ତ ଯେଉଁଭଳି ଭାବରେ କୁରୁପତାକା ତଳେ ସମବେତ ହେବାରେ ଲାଗିଛନ୍ତି, ତହିଁରେ ଆଉ କାହାଠୁ ବା ସାହାଯ୍ୟ ଆଶା କରିହେବ ?

ତେଣୁ .....

ଆଲୋଚନା ଅସମାପ୍ତ ରହିଥିଲା । ଉଦ୍ଧବଙ୍କର ପ୍ରସ୍ତାବ ଥିଲା, ତରବରରେ କୌଣସି ନିଷ୍ପତ୍ତି ନିଆ ନ ଯାଇ ତଥ୍ୟ ସଂଗ୍ରହ ପାଇଁ ଅପେକ୍ଷା କରାଯାଉ । ଶାସ୍ତ୍ର କହୁଚି 'ସହସା ବିଦଧୀତ ନ କ୍ରିୟା' । ଜରାସନ୍ଧ ଆକାଶ ମାର୍ଗରେ ଉଡ଼ିଆସି ଦ୍ୱାରକାପାଇଁ କୌଣସି ବିପଦ ସୃଷ୍ଟି କରିବ ନାହିଁ ନିଶ୍ଚୟ । ଯଦି ସେ ଆସେ ତେବେ ଅବସ୍ଥା ଦେଖି ବ୍ୟବସ୍ଥା କରାଯାଇପାରେ ।

ଆପାତତଃ, ଆଲୋଚନାକୁ ଅସମାପ୍ତ ରଖି ଯାଦବବୀରମାନେ ରାତ୍ରି ଅଧିକ ହେବାରୁ ବିଦାୟ ନେଇଛନ୍ତି । ଆସନ୍ତା କାଲି ଅପରାହ୍ନରେ ପୁଣି ମନ୍ତ୍ରଣା ସଭା ବସିବାର କଥା ଅଛି ।

ସେତିକି ବେଳୁ ଯଦୁପତି ମନ୍ତ୍ରଣାଗୃହ ଛାଡ଼ି ଯାଇନାହାନ୍ତି । ଅସ୍ଥିର ଚିତ୍ତରେ ସମଗ୍ର କକ୍ଷରେ ଘୁରି ବୁଲୁଛନ୍ତି । ଅଶାନ୍ତ ଏକ ଜୀବନ ନେଇ ସେ ସଂସାରକୁ ଆସିଛନ୍ତି । ତାଙ୍କ ଭାଗ୍ୟରେ ସ୍ୱସ୍ତି କାହିଁ ? ବାଲ୍ୟ ଆଉ କୈଶୋର କଟିଲା ପରାନ୍ନଭୋଜୀ ହୋଇ ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରାଣକୁ ହାତରେ ଘେନି ମଥୁରାପତି କଂସର ନିତ୍ୟ ନୂତନ ଷଡ଼ଯନ୍ତ୍ରରେ ଆତଙ୍କିତ ରହି । ତା'ର ମୃତ୍ୟୁରେ ରାଜକୀୟ ଆଟୋପ ସିନା ମିଳିଲା, ମାତ୍ର କାହିଁ ଶାନ୍ତି ?

ଗୋଟିଏ ଅସ୍ୱାଭାବିକ ଶବ୍ଦରେ ପ୍ରକୃତିସ୍ଥ ହୋଇ ଯଦୁରାଜ ପ୍ରବେଶ ଦ୍ୱାର ଆଡ଼େ ଚାହିଁଲେ । ସଂଗେ ସଂଗେ ତାଙ୍କର ଦୃଷ୍ଟିଫେରିଗଲା, ମ୍ଳାନ ହୋଇ ଆସୁଥିବା ଦୀପ ଶିଖା ଆଡ଼କୁ । ରାତ୍ରି ହୁଏତ ଶେଷ ହୋଇ ଆସିଲାଣି । ଏ ଅସମୟରେ କିଏ କୁଆଡୁ ଆସିବ ?

ନାଃ- କେହି ନିଶ୍ଚୟ ଆସୁଛି । ଆଗନ୍ତୁକ ଯେ କେହି ହେଉ ନା କାହିଁକି, ତା'ର ପ୍ରୟୋଜନ ନିଶ୍ଚୟ ଗୁରୁତର ହୋଇଥିବ । ନଚେତ୍ ସମୁଦ୍ର ପରିଖା ବେଷ୍ଟିତ ଅତ୍ୟନ୍ତ ସୁରକ୍ଷିତ ଏ ଅଞ୍ଚଳକୁ କିଏ ଅବା ଆସିବ ? ପରିଚିତ କେହି, ଅବା ସମ୍ପୂର୍ଣ୍ଣ ଅପରିଚିତ ?

ଯଦୁପତି ଉତ୍କଣ୍ଠିତ ଦୃଷ୍ଟିରେ ଅନାଇ ରହିଲେ ପ୍ରବେଶ ଦ୍ୱାର ବାଟେ ପରିଦୃଶ୍ୟମାନ ହେଉଥିବା ଆଗନ୍ତୁକର ସଂଚରଣଶୀଳ ପ୍ରେତାୟିତ ଛାୟା ଆଡ଼େ ।

ଦୀପାଲୋକକୁ ପଛରେ ରଖି ଆଗନ୍ତୁକ ଏଥର ଭିତରକୁ ପ୍ରବେଶ କଲେ । ଯଦୁପତି ନିଶ୍ଚିତ ହେଲେ, ଆଗନ୍ତୁକ ଯେ କେହି ହେଉ, ନିଶ୍ଚୟ ପରିଚିତ ନୁହଁ କିମ୍ବା ଉପେକ୍ଷ୍ୟ ମଧ୍ୟ ନୁହଁ । ଆଗନ୍ତୁକଙ୍କ କୃଷ୍ଣବର୍ଣ୍ଣର ଛାୟାର ଆଭାସ ମାତ୍ର ମିଳୁଥିଲେ ହେଁ ଗତିଛନ୍ଦରୁ ସାମ୍ରାଜ୍ୟ ଫୁଟି ଉଠୁଥିଲା । ମଧ୍ୟରାତ୍ରିର ଉଚ୍ଛଳ ପବନ ତାଙ୍କର ବୀରକେଶ ଓ ଶ୍ମଶ୍ରୁକୁ ନେଇ ଯେଉଁ ଭଳି ଚାପଲ୍ୟ ଆରମ୍ଭ କରି ଦେଇଥିଲା, ତହିଁରେ ଆଗନ୍ତୁକ ମନେ ହେଉଥିଲେ ଝଡ଼ ବିଧ୍ୱସ୍ତ ଏକ ମହାଦ୍ରୁମ ଭଳି, ଯାହାର ସ୍ଥିତି ଥିଲା ସିନା- ମାତ୍ର ବିସ୍ତାର ନ ଥିଲା ।

ଯଦୁପତି ଆଉ ସ୍ଥିର ରହି ପାରିଲେ ନାହିଁ । ଆଗନ୍ତୁକଙ୍କ ଆଡ଼େ ଅନାଇ କହିଲେ - କିଏ ?

ଛାୟାମୂର୍ତ୍ତିଠାରେ ଏଥର ପ୍ରାଣର ସଙ୍କେତ ଦେଖା ଦେଲା । ନିଜର ବେଶ ବାସକୁ ଯଥା ସମ୍ଭବ ସଂଯତ କରୁ କରୁ ଆଗନ୍ତୁକ କହିଲେ -

'- ଗାନ୍ଧାର ରାଜପୁତ୍ର ସୌବଳର ଅଭିବାଦନ ଗ୍ରହଣ କରନ୍ତୁ ଯଦୁରାଜ ।'

ଶ୍ରୀ କୃଷ୍ଣ ଚକିତ ହେଲେ । କୁରୁପତି ଦୁର୍ଯ୍ୟୋଧନର ଅହଙ୍କାର ସ୍ଫୀତ ଜିଘାଂସା ନିକଟରେ ଗାନ୍ଧାର ରାଜକୁଳର ସମସ୍ତ ପୁରୁଷବଳୀ ସ୍ୱରୂପ ଅର୍ପିତ ହୋଇଥିବାର ସେ ଶୁଣିଥିଲେ । ରାତ୍ରିର ମଧ୍ୟଯାମରେ ଇଏ ତେବେ କିଏ ତାଙ୍କ ସମ୍ମୁଖରେ ଉଭା ହୋଇଚି ? ଗାନ୍ଧାର ରାଜପୁତ୍ରର ପ୍ରେତମୂର୍ତ୍ତି ?

ଅଗତ୍ୟା ତାଙ୍କୁ ପଚାରିବାକୁ ହେଲା, ''କେଉଁ ରାଜପୁତ୍ର ?''

ଛାୟାମୂର୍ତ୍ତି ଆଡୁ ଉତ୍ତର ଆସିଲା - ମୁଁ କନିଷ୍ଠ ଶକୁନି ।' ଛାୟାମୂର୍ତ୍ତି ଏଥର ଦୁଇପାଦ ଆଗକୁ ଆସିଲା । ଆଲୋକର ରେଖା ତା' ଉପରେ ପଡ଼ିଲା ତେର୍ଚ୍ଛା ହୋଇ । ସେଇ ଆଡ଼କୁ ଅନାଇ ଶ୍ରୀକୃଷ୍ଣ ପ୍ରକୃତରେ ଶିହରି ଉଠିଲେ । ଅବିନ୍ୟସ୍ତ ବେଶବାସ, କୋଟର ଗତ ଦୁଇ ଚକ୍ଷୁର ହିମଶୀତଳ ଚାହାଣି ସତେ ଯେପରି ବିଶ୍ୱସଂସାରକୁ ଜାଳିପୋଡ଼ି ଦେବା ନିମନ୍ତେ ପ୍ରସ୍ତୁତ ହୋଇ ରହିଚି ।

ସେଇ ଆଡ଼କୁ ଅନାଇ ଦ୍ୱାରକାପତିଙ୍କର ହୃଦୟ ସହାନୁଭୂତିରେ କୋମଳହୋଇ ଉଠିଲା । ସେ ପଚାରିଲେ - ଏ ଅବସ୍ଥାରେ ହଠାତ୍ କୁଆଡୁ ଆସିଲେ ରାଜପୁତ୍ର ?

ଗୋଟିଏ ଆସନରେ ବସିପଡ଼ି ଶକୁନି କହିଲେ - କିଛି ଭାବିବେ ନାହିଁ ଯଦୁପତି । ଅନୁମତି ନ ନେଇ ବସିପଡୁଚି । ଆସିଚି ନିଜର ଦୌତ୍ୟରେ ସାହାଯ୍ୟ ପାଇଁ ।

ଶ୍ରୀକୃଷ୍ଣ ଲଜ୍ଜିତ ହୋଇ କହିଲେ ଆପଣଙ୍କୁ ଏଠାରେ ଦେଖି ମୁଁ ଏଭଳି ବିସ୍ମିତ ହୋଇ ପଡ଼ିଥିଲି ଯେ ସାଧାରଣ ସୌଜନ୍ୟ ମଧ୍ୟ ଭୁଲି ଯାଇଛି । ସମଗ୍ର ଜମ୍ବୁଦ୍ୱୀପ ଯାହାପ୍ରତାପରେ ଥରହର, ସେଇ ଦୁର୍ଯ୍ୟୋଧନର ମାତୁଳ ଆଜି ସାହାଯ୍ୟ ପ୍ରାର୍ଥୀ ଗୋଟିଏ ସାମାନ୍ୟ ଦ୍ୱୀପପତି ପାଖରେ । ଏହା ଉପହାସ ନୁହେଁ ତ ମାତୁଳ ?

ଆତ୍ମୀୟତାର ଏଇ କୋମଳ ସ୍ପର୍ଶ ଶକୁନିଙ୍କର ରୁକ୍ଷ ମନକୁ କ୍ଷଣକ ପାଇଁ କାରୁଣ୍ୟରେ ଭରିଦେଲା ଯେମିତି । ଶ୍ରୀକୃଷ୍ଣଙ୍କ ଆଡ଼କୁ ଅନାଇ ସେ କହିଲେ- ପିତା ଆଉ ଭ୍ରାତା ଯାହାର ମୁଠାଏ ଅନ୍ନ ଆଉ ଗଣ୍ଡୁଷେ ଜଳ ପାଇଁ ପ୍ରାଣ ହରାଚନ୍ତି, ତା'ର କେହି ଆତ୍ମୀୟ ସ୍ୱଜନ ନାହାନ୍ତି । ତା'ର ମଧ୍ୟ କାହାରିଠୁ କିଛି ପାଇବାର ନାହିଁ । ଅଛି କେବଳ ଗୋଟିଏ କାମନା - ପ୍ରତିଶୋଧ ... ତୀବ୍ର ନିର୍ମମ ପ୍ରତିଶୋଧ ।

କ୍ଷୁତ୍ ପିପାସା କାତର ଅସହାୟ ଗାନ୍ଧାର ରାଜକୁଳର ନିଧନ୍ ଜମ୍ବୁଦ୍ୱୀପରେ ସମ୍ପ୍ରତି ଘଟିଥିବା ନିଷ୍ଠୁର ତମ ଘଟଣା - ଏହା ଯଦୁପତି ଜାଣନ୍ତି । ଅପ୍ରିୟ ଘଟଣାର ଆଲୋଚନାରେ ଦୁଃଖ ବଢ଼େ । ତେଣୁ ସେ ପ୍ରସଙ୍ଗ ଆଉ ଉଠାଇବା ଅନ୍ୟାୟ ହେବ ।

ଗାନ୍ଧାର ରାଜପୁତ୍ର କିନ୍ତୁ ସତେ ଯେମିତି ସ୍ମୃତିଲୋକରେ ସଂଚରଣ କରୁଥିଲେ । ତାଙ୍କର କଣ୍ଠ ସ୍ୱର ଯେପରି ଭାସି ଆସୁଥିଲା ମୃତ୍ୟୁଲୋକରୁ । ସେ କହୁଥିଲେ - କ୍ଷୁଧା ଆଉ ତୃଷାର ସେଇ ଜୀବନ୍ତ ନର୍କରେ ଗୋଟିକ ପରେ ଗୋଟିଏ ଦୀପ ମୋର ସମ୍ମୁଖରେ ଲିଭିଯାଉଥିଲା । ସେଇ ଗାନ୍ଧାର ରାଜ-ଜୀବନ କାଳରେ ଯେ ନିଜ ଦ୍ୱାରରୁ ଜଣେହେଲେ ଭୋକୀ ଶୋଷୀକୁ ବାହୁଡ଼ାଇ ଦେଇ ନ ଥିଲେ, ମୃତ୍ୟୁ ପୂର୍ବରୁ ଜାନ୍ତବ ଆକ୍ରୋଶରେ ସେ ନିଜ ବାହୁକୁ କାମୁଡ଼ି ପକାଇଥିଲେ । ହାୟରେ ରାଜପଦ !

ଶକୁନି ଦୀର୍ଘଶ୍ୱାସ ପକାଇ ପାନକାଳପାତ୍ର ଭୂଲି ନିଷ୍ଠୀବନ ନିକ୍ଷେପ କଲେ । ଏହା ନିଜର ଦୁର୍ଭାଗ୍ୟ ବିରୁଦ୍ଧରେ କିମ୍ୱା ଅଦୃଶ୍ୟ ଶତ୍ରୁ ଉପରେ, ଏକଥା ସେଇ ଏକା ଜାଣନ୍ତି ।

ଯଦୁପତିଙ୍କୁ କିଛି କହିବାର ସୁଯୋଗ ନ ଦେଇ ଶକୁନି ପୁଣି କହିଲେ - ପିତାଙ୍କର ପଂଜରାସ୍ଥି ତିନିଖଣ୍ଡ ସମ୍ୱଳ କରି ସେଇ ଜୀବନ୍ତ ନର୍କ କୁଣ୍ଡରୁ କିଭଳି ବାହାରିଆସିଲି, ତାହା ଏବେ ଆଉ ମୋର ମନେ ପଡୁନାହିଁ । ତା'ପରେ କେତେ ତୀର୍ଥ ତ ବୁଲିଲି । ଗଙ୍ଗା, ଗୟା, ମାନସରୋବର, କୃଷ୍ଣା, କାବେରୀ ଏହିଭଳି କି ମହୋଦଧି ମଧ୍ୟ ଏହି ଅସ୍ଥିକୁ ସ୍ୱୀକାର କଲେ ନାହିଁ ।

ଯଦୁପତି ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଶକୁନି କହିବାକୁ ଲାଗିଲେ- ଜାଣ ଯଦୁପତି, ଗଭୀର ରାତ୍ରିର ନିର୍ଜନତାରେ ଏହି ଅସ୍ଥିତିନିଖଣ୍ଡ ମୁଖର ହୋଇ ଉଠନ୍ତି । ମୁଁ ସ୍ପଷ୍ଟ ଶୁଣେ ଏମାନେ କହୁଛନ୍ତି, ପ୍ରତିଶୋଧ- ତା'ପୂର୍ବରୁଗାନ୍ଧାର ରାଜବଂଶର ଶ୍ରାଦ୍ଧତର୍ପଣ କରିବାର ଅଧିକାର ତୋ'ର ନାହିଁ ।''

ଅନେକ ସମୟ କହିଯିବାପରେ ଶକୁନି ଏଥର ନୀରବ ହୋଇଗଲେ । ହୁଏତ ତାଙ୍କର କିଛି ସମୟ ବିଶ୍ରାମର ପ୍ରୟୋଜନ ହେଉଥିଲା ।

ଯଦୁପତି ଏଥର ମୁହଁ ଖୋଲିଲେ । କହିଲେ ଯାହା ହେବାର ହୋଇସାରିଛି । ହିଂସା ହିଂସା ବଢ଼ାଏ । ଯେତେହେଲେ ବି କୁରୁପତି ତୁମର ଆତ୍ମୀୟ ।

ଶକୁନି ଉଭରନ୍ତ କ୍ରୋଧକୁ ଧୈର୍ଯ୍ୟର ରଜ୍ଜୁରେ କୌଣସି ମତେ ଆୟତ୍ତ କରି କହିଲେ - କାହାରି ଆତ୍ମୀୟ ସେ ନୁହେଁ ଯଦୁପତି । ତା' ଭିତରର ଶୈତାନ୍ ନିଜ ଛଡ଼ା ଆଉ କାହାରିକୁ ଚିହ୍ନେ ନାହିଁ । ଜମ୍ବୁ ଦ୍ୱୀପର ଲଲାଟରେ ସେ ଏକ ମୂର୍ତ୍ତିମାନ ଅଭିଶାପ । ଶକ୍ତି ଆଉ ସାମର୍ଥ୍ୟର ଅହଙ୍କାରରେ ପାଣ୍ଡବକୁଳକୁ ପୋଡ଼ି ମାରିଚି । ରାଜନୀତିର କୂଟ ଜାଲରେ ସମଗ୍ର ଭାରତକୁ ଆବଦ୍ଧ କରି ରଚନା କରିଛି ଏକ ପାପ ଚକ୍ର ।

ଶ୍ରୀକୃଷ୍ଣ ଜିଜ୍ଞାସା କଲେ - ଆପଣ ତେବେ କ'ଣ ଚାହାନ୍ତି ?

ଶକୁନି କହିଲେ - ନିଜ ପାଇଁ ମୋର ସମସ୍ତ ପ୍ରୟୋଜନ ଶେଷ ହୋଇଛି । ଭାରତବର୍ଷର ଆକାଶରେ ଦୁର୍ଦ୍ଦୈବର ଏ ଯେଉଁ କଳା ମେଘ ଉଠିଚି, ତାକୁହିଁ ମୁଁ ଛିନ୍ନ ଭିନ୍ନ କରିଦେବାକୁ ଚାହେଁ ଯଦୁପତି । ଏଥିପାଇଁ ମୋର ଲୋଡ଼ା ତୁମର ସାହାଯ୍ୟ ।

ତଡ଼ିତ୍ ବେଗରେ ଯଦୁପତିଙ୍କ ମନରେ ଗୋଟିଏ ଭାବ ପ୍ରକଟିତ ହୋଇ ଲିଭିଗଲା । ଉପାୟ ତାଙ୍କୁ ମିଳିଛି । ଦୁର୍ଯ୍ୟୋଧନର ଉଦ୍‌ଗତ ଶକ୍ତି ଆଉ ସାମର୍ଥ୍ୟକୁ ନିୟନ୍ତ୍ରଣ କରିବାକୁ ହେଲେ ପ୍ରୟୋଜନ ଏକ ଶକ୍ତିଶାଳୀ ଆୟୁଧର । ବିଧାତା ପ୍ରେରିତ ହୋଇ ସେଇ ଆୟୁଧ ଆଜି ତାଙ୍କ ନିକଟରେ ଉପସ୍ଥିତ ହୋଇଛି ଶକୁନି ରୂପରେ । ସେ ତାକୁ ନିଶ୍ଚୟ ବ୍ୟବହାର କରିବେ ।

ଶକୁନି ଏଥର କହିଲେ - ସେମାନେ କହିଲେ ଯଦୁପତି ଶ୍ରୀକୃଷ୍ଣ ହିଁ ଆଜି ଭାରତରେ ସବୁଠାରୁ ପରାକ୍ରାନ୍ତ ରାଜା । ତେଣୁ...

ବାଧା ଦେଇ ଶ୍ରୀକୃଷ୍ଣ କହିଲେ - ସେମାନେ ଭୁଲ୍ କହିଛନ୍ତି । ଦ୍ୱାରକା ଏକ କ୍ଷୁଦ୍ରରାଜ୍ୟ । ଏହାର ଶକ୍ତି ଓ ସାମର୍ଥ୍ୟ ମଧ୍ୟ ସୀମାବଦ୍ଧ । ବିଶେଷତଃ ମହାପରାକ୍ରାନ୍ତ ଭାରତ ସମ୍ରାଟ ଦୁର୍ଯ୍ୟୋଧନଙ୍କ ସାମର୍ଥ୍ୟ ନିକଟରେ ଏହା ତ ମହୋଦଧି ଆଗରେ ଗୋଷ୍ପଦ ତୁଲ୍ୟ ।

ଶକୁନି ଦ୍ୱିଧା ଶୂନ୍ୟ ଭାବରେ କହିଲେ - ନାରାୟଣୀ ସେନାର ପ୍ରଳୟଙ୍କରୀ ଶକ୍ତି ସମ୍ପର୍କରେ ସମସ୍ତେ ଅବହିତ ଯଦୁପତି ।

ଶ୍ରୀକୃଷ୍ଣ ଉତ୍ତର ଦେଲେ - ତାହାହେଲେ ତ ସମଗ୍ର ଭାରତ ବର୍ଷ ଆଜି ଯାଦବମାନଙ୍କର ପଦାନତ ହୁଅନ୍ତା । କେଉଁ ଏକ ବୃଦ୍ଧ ରାଜାର ଭୟରେ ଯାଦବମାନଙ୍କୁ ସମୁଦ୍ର ମଧ୍ୟରେ ଆତ୍ମଗୋପନ କରିବାକୁ ପଡ଼ନ୍ତା ନାହିଁ ।

ଶକୁନି କହିଲେ - ମୁଁ ଏକ ଆଗ୍ନେୟଗିରି ଯଦୁରାଜ । ଦୁଃଖ କଷ୍ଟର ତରଳ ଅଗ୍ନିସ୍ରୋତ ମୋ ଭିତରେ ଟକମକ ହୋଇ ଫୁଟୁଚି । ଅସ୍ଥି ଆଉ ଚର୍ମର ଆବରଣ ଦେଇ ମୁଁ ତାକୁ ଢାଙ୍କି ରଖିଛି । ତମେ ମୋର ସହାୟ ହୁଅ । ଗାନ୍ଧାର ରାଜପୁତ୍ର ଭୀରୁ ନୁହେଁ । ଯୁଦ୍ଧ ବିଦ୍ୟା ତାକୁ ଜଣା । ତମର ନାରାୟଣୀ ସେନାର ସହାୟତା ମାତ୍ର ପାଇଲେ ସେ ସମଗ୍ର ଜମ୍ବୁଦ୍ୱୀପକୁ ଧ୍ୱଂସ ସ୍ତୁପରେ ପରିଣତ କରି ଦେଇପାରେ । ତା'ପରେ ତମେ ରାଜ୍ୟ ନିଅ - ସମ୍ପଦ ନିଅ । ଶକୁନି କ୍ଷମତା କିମ୍ବା ସମ୍ପଦର କାଙ୍ଗାଳ ନୁହଁ । ତା'ର ଲୋଡ଼ା କେବଳ ପ୍ରତିଶୋଧ ।

ଶ୍ରୀକୃଷ୍ଣ କୋମଳ ଦୃଷ୍ଟିରେ ଏଇ ଅଦ୍ଭୁତକର୍ମୀ ପୁରୁଷଟି ଆଡ଼େ ଅନାଇଲେ । ଧର୍ମ ସଂସ୍ଥାପନା କାର୍ଯ୍ୟରେ ଇଏ ହେବେ ଏକ ଶକ୍ତିଶାଳୀ ଆୟୁଧ । ଏହାକୁ ହାତରୁ ଛାଡ଼ିଦେଲେ ଚଳିବ ନାହିଁ । ଅଦୂର ଭବିଷ୍ୟତ୍‌ରେ କୌରବ - ପାଣ୍ଡବମାନଙ୍କ ମଧ୍ୟରେ ଯେଉଁ ମହାହବ ହେବ, ସେଥିରେ ଶକୁନି ହିଁ ହେବ, ପାଣ୍ଡବ ପକ୍ଷର ଶ୍ରେଷ୍ଠ ଆୟୁଧ । ସମଗ୍ର ବିଶ୍ୱଜାଣେ ଜତୁଗୃହରେ ପାଣ୍ଡବମାନଙ୍କର ନିଧନ ବୃତ୍ତାନ୍ତ । ମାତ୍ର ପ୍ରକୃତ ତଥ୍ୟ ତ ବିଦୁର ଆଉ ତାଙ୍କ ଛଡ଼ା କେହି ଜାଣିନାହାନ୍ତି । ପାଣ୍ଡବମାନେ ଏବେ ଛଦ୍ମବେଶରେ ଦେଶ ପର୍ଯ୍ୟଟନ କରୁଛନ୍ତି । ମାତ୍ର ଚିରକାଳ ତ ଏପରି ହେବ ନାହିଁ । ସେମାନେ ଫେରିବେ । ରାଜ୍ୟ ଚାହିଁବେ । ଅଧିକାର ଲୋଡ଼ିବେ । ଦୁର୍ଯ୍ୟୋଧନ ତା' କେବେ ଦେବ ନାହିଁ । ଅତଏବ ଯେମିତି ନ ଦିଏ, ସେଇ ବ୍ୟବସ୍ଥା ପୂର୍ବରୁ କରି ରଖିବାକୁ ହେବ । ପାଣ୍ଡବମାନଙ୍କ ବିରୁଦ୍ଧରେ ତାକୁ ପ୍ରତ୍ୟେକ ମୁହୂର୍ତ୍ତରେ ଉତ୍ତେଜିତ କରିବାକୁ ହେବ । ଏ କାମ ବାହାରର କେହି କରିପାରିବେ ନାହିଁ । ଏହା କେବଳ ସମ୍ଭବ ହେବ, କୁରୁପତିର ଅତି ନିକଟତମ ବିଶ୍ୱାସୀ ଲୋକ ଦ୍ୱାରା । ଘରର ମଣିଷ ପର ହୋଇଗଲେ, ତା'ଠାରୁ ଅଧିକ କ୍ଷତି ଆଉ କିଏ କରିପାରେ ?

ଶକୁନିଙ୍କୁ ଯେକୌଣସି ମତେ ଦୁର୍ଯ୍ୟୋଧନର ସେଇ 'ଘର' ମଣିଷର ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିବ, ଯେ କି ଅତି ପାଖରେ ଥାଇ ମଧ୍ୟ ଦୂରର ହୋଇପାରିବ । ଦୁଇଧାର ବିଶିଷ୍ଟ ଛୁରୀକା ହୋଇ ଚମତ୍କାର ଭାବରେ ଦୁଇ ପଟରୁ କାଟିପାରିବ ।

ଯଦୁପତି ଶକୁନି ଆଡ଼କୁ ଅନାଇଲେ । ଗଦାଏ ପଙ୍କ ଭିତରୁ ସଦ୍ୟ ପ୍ରସ୍ଫୁଟିତ ପଦ୍ମର ସୁରଭି ବହି ଆସି ତାଙ୍କ ନାକରେ ବାଜିଲା । ତାଙ୍କର ସେଇ ବହୁ ଚର୍ଚ୍ଚିତ ବଙ୍କିମ ରକ୍ତାଧରରେ ଟେନାଏ ହସ ଫୁଟି ଉଠିଲା ।

ଶକୁନି ହତାଶ ହୋଇ କହିଲେ - ମୁଁ ତେବେ ଶୂନ୍ୟ ହସ୍ତରେ ଫେରିଯିବି ଯଦୁପତି ? ତମେ ଯେ ଏତେ ଭୀରୁ, ତା' ମୋତେ ଜଣା ନ ଥିଲା ।

ଶକୁନି ଏଥର ଉଠିବାର ଉପକ୍ରମ କରୁଥିଲେ । ଆଶା ଭଙ୍ଗର ବେଦନା ତାଙ୍କର ମୁଖ ମଣ୍ଡଳରେ କାଳିମା ଲେପି ଦେଇଥିଲା । ଏହାପରେ ସେ କାହାର ଦ୍ୱାରସ୍ଥ ହେବେ, କିଛି ଚିନ୍ତା କରିପାରୁ ନଥିଲେ । ପୃଥିବୀ ତେବେ ଆଜି ପ୍ରକୃତରେ ବୀରଶୂନ୍ୟ ହୋଇ ପଡ଼ିଚି ।

ଶ୍ରୀକୃଷ୍ଣଙ୍କ ଅଧରରେ ସେଇ ହସ ଟେନାକ ଲାଗି ରହିଥିଲା । ସେ ବାଧା ଦେଇ କହିଲେ - ଏ କ'ଣ, ଆପଣ ଉଠୁଛନ୍ତି ଯେ ମାତୁଳ ? ଆପଣ ଆତ୍ମୀୟ, ପୁଣି ଅତିଥି । ଶ୍ରାନ୍ତ କ୍ଳାନ୍ତ ହୋଇ ଫେରିଗଲେ ଏ ରାଜକୁଳର ଅକଲ୍ୟାଣ ହେବ ।''

ଅଧରର ହସ ଆହୁରି ବିସ୍ତୃତ ହେଲା ଏଥର । ଶକୁନିଙ୍କର କ୍ଳାନ୍ତ ଓ ନିରାଶ ଶରୀରରେ ଅଗ୍ନି ସଂଚାରିତ ହେଲା ଯେମିତି । ସେ ଅସହାୟ, ମାତ୍ର ଭିକ୍ଷୁକ ନୁହନ୍ତି । ଗୋଚାରଣ ଏବଂ ଆଭୀରୀମାନଙ୍କ ସହିତ ନର୍ମ କ୍ରୀଡ଼ାରେ ଅଭ୍ୟସ୍ତ ଶିକ୍ଷାଦୀକ୍ଷା ହୀନ ଗୋପାଳଟିଏ ହିଁ ଏଭଳି ରସିକତା କରିପାରେ । ନାଃ - ଏଠି ଆଉ ମୁହୂର୍ତ୍ତେ ମଧ ନୁହେଁ ।

ଶକୁନିଙ୍କର ବେଦନା ଯଦୁପତିଙ୍କର ହୃଦୟ ଦର୍ପଣରେ ପ୍ରତିଫଳିତ ହେଲା । ସେ ନିକଟକୁ ଆସି ଶକୁନିଙ୍କୁ ପୁନର୍ବାର ଆସନରେ ବସାଇ ଦେଇ କହିଲେ - କ୍ରୋଧର ପ୍ରକୋପରେ ଆପଣ କେତେ କ୍ଳାନ୍ତ ତାହା ବୋଧ ହୁଏ ନିଜେ ହୃଦୟଙ୍ଗମ କରି ପାରୁନାହାନ୍ତି । ଦ୍ୱାରକା ବର୍ତ୍ତମାନ ଯୁଦ୍ଧ କରିବା ଅବସ୍ଥାରେ ନାହିଁ, ମୁଁ ଏତିକି ମାତ୍ର କହିଛି । ମୋର ଅନ୍ୟ ପ୍ରସ୍ତାବ ଥାଇପାରେ ।

ବିରକ୍ତିରେ ଶକୁନିଙ୍କର ନାଭିରଂଧ୍ର ଜଳି ଉଠିଲା । ରସିକତା ଶୁଣିବାକୁ ତାଙ୍କର ସମୟ ନାହିଁ । କ୍ରୋଧ ଜର୍ଜରିତ କଣ୍ଠରେ ସେ କହିଲେ - ପଥ ଛାଡ଼ କୃଷ୍ଣ । ମୋତେ ଏଇ ମୁହୂର୍ତ୍ତରେ ଦ୍ୱାରକା ତ୍ୟାଗ କରିବାକୁ ପଡ଼ିବ ।

ଶ୍ରୀକୃଷ୍ଣ ଏଥର ମନ୍ଦ୍ରକଣ୍ଠରେ କହିଲେ - ମୋର ଯେ ତୁମକୁ ଛାଡ଼ିଲେ ଚଳିବ ନାହିଁ ମାତୁଳ । ଶାସ୍ତ୍ରକାର କହନ୍ତି 'ବିପଦିଧୈର୍ଯ୍ୟ' । ଅଧୈର୍ଯ୍ୟ ହୁଅ ନାହିଁ । ଧୀର ଚିତ୍ତରେ ମୋର ପ୍ରସ୍ତାବ ଶୁଣ । ସେ ବିଷୟରେ ଚିନ୍ତା କର । ତମ ନିଷ୍ପତ୍ତି ମୋତେ ନ ଜଣାଇବା ପର୍ଯ୍ୟନ୍ତ ଦ୍ୱାରକା ଛାଡ଼ି ଯାଅ ନାହିଁ ମାତୁଳ । ଯଦୁପତି ଶ୍ରୀକୃଷ୍ଣ ଆଜି ପ୍ରକୃତରେ ତମର ସାହାଯ୍ୟ ପ୍ରାର୍ଥୀ । ଶକୁନି ସ୍ଥିର ହେଲେ । ସର୍ବହରା ନିଃସ୍ୱ ପାଖରେ ହାତ ପତାଇ ଠିଆ ହୋଇଛି କୁବେର । ଇଏ ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ?

ଶ୍ରୀକୃଷ୍ଣ ଅକମ୍ପିତ କଣ୍ଠରେ ନିଜର ଯୋଜନାର ଏକ ସ୍ପଷ୍ଟ ଆଲେଖ୍ୟ ଶକୁନିଙ୍କ ଆଗରେ ଟେକି ଧରିଲେ । ଦୁର୍ଯ୍ୟୋଧନକୁ ଯେ କୌଣସି ମତେ ଜୟ କରିବାକୁ ପଡ଼ିବ । ତେବେ ରକ୍ତପାତ ଦ୍ୱାରା ନୁହେଁ ତାହାର ହୃଦୟ ଭିତରକୁ ପ୍ରବେଶ କରି ସେଠାରେ ନିଜ ପ୍ରତି ପ୍ରତ୍ୟୟ ସୃଷ୍ଟି କରାଇ ।

ଶକୁନି ପ୍ରସ୍ତାବଟିକୁ ତଳେଇ କରି ଦେଖିଲେ । ଯଦୁପତି ଅଦୂର ଭବିଷ୍ୟତ୍‌ର ଯେଉଁ ମହାହବର ସୂଚନା ଦେଉଛନ୍ତି, ପାଣ୍ଡବମାନେ ହେବେ ସେଇ ଯଜ୍ଞର ହୋତା (ପାଣ୍ଡବମାନେ ତେବେ ଜତୁ ଗୃହରେ ଦଗ୍ଧ ହେବା ସମ୍ବାଦ ମିଥ୍ୟା) । ଆଉ ତା'ର ଅଧିବାସ ରଚିତ-ହେଉଛି, ଆଜି ଦ୍ୱାରକାର ଏଇ ମନ୍ତ୍ରଣାଳୟରେ ।

ଶୁକନି ନିଜକୁ ପ୍ରବୋଧ ଦେଉଥିଲେ । 'ଶନୈପନ୍ଥା ଶନୈଃ କନ୍ଥା ଶନୈ ପର୍ବତ ଲଘଂନମ୍' ଇଏ ହେଲା ଶାସ୍ତ୍ର ବାଣୀ । ଧୈର୍ଯ୍ୟ ଧରି ଭବିଷ୍ୟତ୍‌କୁ ଆଶାୟୀ ନୟନରେ ଚାହିଁ ବସିବା ଛଡ଼ା ବର୍ତ୍ତମାନ ଆଉ ଉପାୟ ବା କ'ଣ ଅଛି ?

ଯଦୁପତି ପୁଣି କୁଆଡ଼େ ତ୍ରିକାଳଦର୍ଶୀ । ଭବିଷ୍ୟତ୍‌ର ଯେଉଁ ଚିତ୍ର ଦେଖାଇଲେ, ତାହା ନିଶ୍ଚୟ ଘଟିବ । ବର୍ତ୍ତମାନ ପ୍ରଶ୍ନ ହେଉଛି ଦୁର୍ଯ୍ୟୋଧନର ବିଶ୍ୱାସ କେଉଁ ଉପାୟରେ ଅର୍ଜନ କରାଯିବ ? ଅବଶ୍ୟ ବ୍ୟାପାରଟି ସେତେ କଠିନ ନୁହେଁ । ତୃଣକୁ ସହ୍ୟ କରିବାକୁ ହୁଏନା ବାତ୍ୟାର ଆଘାତ । ନଇଁ ପଡ଼ିଲେ ଶତ୍ରୁ ବି ମିତ୍ର ହୁଏ । କାର୍ଯ୍ୟୋଦ୍ଧାର ପାଇ ତାକୁ ଏଇ ପଥ ଅବଲମ୍ବନ କରିବାକୁ ହିଁ ହେବ ।

ଶ୍ରୀକୃଷ୍ଣ ଅନାଇ ଦେଖିଲେ, ଶକୁନିଙ୍କ ମୁହଁରେ ଫୁଟି ଉଠିଛି ଧାରେ ହସ । ପାଖକୁ ଆସି ଡାକିଲେ, ମାତୁଳ !!

ଶକୁନି ନୀରବ ରହିଲେ ।

ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ଶକୁନି ସେଇ ବସିଥିବା ଅବସ୍ଥାରେ ହିଁ ଘୁମାଇ ପଡ଼ିଛନ୍ତି । ତାଙ୍କ ମୁହଁରେ ଦୁଶ୍ଚିନ୍ତାର ଲେଶମାତ୍ର ଚିହ୍ନ ନାହିଁ ।

ପୂର୍ବ ଆକାଶରେ ସିନ୍ଦୁରା ଫାଟୁଚି ।



# ମହାଯଜ୍ଞ

ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିବେ । ପରାମର୍ଶ ପାଣ୍ଡବ ସଖା ଯାଦବଶିରୋମଣି ଶ୍ରୀକୃଷ୍ଣଙ୍କର । ଅର୍ଥ ହେଉ କି କ୍ଷମତା ହେଉ - ଏସବୁ ଯଦି ଦୁନିଆ ନ ଦେଖିଲା, ତେବେ କି ଲାଭ ସେଥିରୁ ? ସେଥିପାଇଁ ତ ଯୁଗ ଯୁଗ ଧରି ଏତେ ସଂଗ୍ରାମ, ଏତେ ସଂଘର୍ଷ । ଶ୍ରୀକୃଷ୍ଣ ଅନ୍ତତଃ ସେଇ କଥା - ପାଣ୍ଡବମାନଙ୍କୁ ବୁଝାଉଥିଲେ । ଯୁଧିଷ୍ଠିର ନିର୍ବିବାଦୀ ମଣିଷ । ଏତେ ସବୁ ଜଟିଳତା ଭିତରକୁ ଯିବା ପାଇଁ ସେ କେବେ ରାଜି ହୁଅନ୍ତି ନାହିଁ । ଅୟୁତ ଈର୍ଷା କାତର ଦୃଷ୍ଟିର କେନ୍ଦ୍ରବିନ୍ଦୁ ହୋଇ ରହିବା କଥାଟି ତାଙ୍କୁ କେମିତି ଅସ୍ୱସ୍ତିକର ମନେହୁଏ ।

ଦୁଃଖ ଆଉ ଯନ୍ତ୍ରଣା ଭିତର ଦେଇ ତାଙ୍କର ଜୀବନଟା କଟିଗଲା । ସୁଖ-କାହାକୁ କହନ୍ତି ସେ କଥା ପାଣ୍ଡବମାନେ କେତେ ଜାଣିଲେ ? ଦୁଃଖର ଘରେ ଏକ ମାତ୍ର ସୁଖ ହେଉଛି ଆତ୍ମୀୟମାନଙ୍କୁ ପାଖରେ ପାଇବା । ଥାଜି ଶ୍ରୀକୃଷ୍ଣଙ୍କ ଯୋଜନା ପ୍ରକାରେ ସେଥିରେ ପୁଣି ବ୍ୟତ୍ୟୟ ହେବାକୁ ଯାଉଛି ।

ଅନ୍ୟ ଚାରି ଭାଇଙ୍କର ମନ କଥା ଯୁଧିଷ୍ଠିର ଜାଣନ୍ତି । ଅର୍ଜୁନ ପାଟିଖୋଲି କିଛି କହିବେ ନାହିଁ । ତାଙ୍କର ଆତ୍ମସମ୍ମାନ ଜ୍ଞାନ ଅତି ଅଧିକ । ତେବେ ଯୁଧିଷ୍ଠିରଙ୍କର ବ୍ୟବସ୍ଥାରେ ସେ ପ୍ରତିବାଦ ଜଣାଇବେ ନାହିଁ । ଯୁଦ୍ଧ ବିଗ୍ରହ, ରକ୍ତପାତ, ସଂଘର୍ଷ ଏ ସବୁ ଉତ୍ତେଜନାମୂଳକ ବ୍ୟାପାରରେ ଭୀମଙ୍କର ଉତ୍ସାହ ସବୁଠୁ ବେଶୀ । ଜୀବନଟାକୁ ସେ ନିଜର ଗଦା ଭିତରେ ସ୍ପଷ୍ଟ ଦେଖନ୍ତି । ତାଙ୍କର ବାହୁର ଶକ୍ତି ଅନ୍ୟମାନଙ୍କୁ ଜଣାଇ ଦେବା ନିମନ୍ତେ କୌଣସି ସୁଯୋଗ ସେ ହାତଛଡ଼ା କରିବାକୁ ଚାହାନ୍ତି ନାହିଁ । ରାଜସୂୟ ଯଜ୍ଞ ବ୍ୟାପାରରେ ତେଣୁ ତାଙ୍କର ଉତ୍ସାହ ଯେ ସବୁଠୁଁ ଅଧିକ ।

ସହଦେବ ଗମ୍ଭୀର ପ୍ରକୃତିର ମଣିଷ । ବେଶୀ କଥା ସେ କହନ୍ତି ନାହିଁ କିମ୍ବା ନ ପଚାରିଲେ ମଧ୍ୟ ମୁହଁ ଖୋଲନ୍ତି ନାହିଁ । ଚୁମ୍ବକରେ ନିଜର ମତାମତ ଜଣାଇ ଦିଅନ୍ତି । ତାଙ୍କ କଥାର ଓଜନରେ ବେଳେ ବେଳେ ଯୁଧିଷ୍ଠିର ମଧ୍ୟ ତଳକୁ ଦବି ଯାଆନ୍ତି । ତେବେ ପ୍ରତିବାଦ କରିବା ତାଙ୍କର ସ୍ୱଭାବ ନୁହେଁ ।

ବାକି ରହିଲେ ନକୁଳ । କୁନ୍ତୀଙ୍କର ଅତି ପ୍ରିୟ ସନ୍ତାନ । ଅତିମାତ୍ରାରେ ବସନଭୂଷଣ ପ୍ରସାଧନ ପ୍ରିୟ, ବାଳ ଚପଳତା ତାଙ୍କର ଏ ପର୍ଯ୍ୟନ୍ତ ତୁଟି ନାହିଁ । ତେବେ ସେ

ଯୁଧିଷ୍ଠିରଙ୍କର ଅତି ବାଧ୍ୟ । ତାଙ୍କ କଥା ଉପରେ କଥା କହନ୍ତି ନାହିଁ - ପାଣ୍ଡବ ପରିବାରର ଏଇ ଚାରି ସଦସ୍ୟ କିନ୍ତୁ ହୋଇଛନ୍ତି - ଯୁଧିଷ୍ଠିରଙ୍କର ପ୍ରତିଷ୍ଠାର ଚାରୋଟି ସ୍ତମ୍ଭ । ସେମାନେ ଅଛନ୍ତି, ତେଣୁ ଯୁଧିଷ୍ଠିର ମଧ୍ୟ ଅଛନ୍ତି । ଦୁଃଖ କଷ୍ଟର ଗୁରୁଭାର ବହନ କରିବାକୁ ଯୁଧିଷ୍ଠିର ଏଇମାନଙ୍କର ମାଧ୍ୟମରେ ଶକ୍ତି ସଂଗ୍ରହ କରନ୍ତି । ଏମାନଙ୍କର ବିଚ୍ଛେଦ ତେଣୁ ଯୁଧିଷ୍ଠିର ଲବେ ମାତ୍ର ସହ୍ୟ କରି ପାରନ୍ତି ନାହିଁ ।

ବନବାସ, ଅଜ୍ଞାତବାସର ଯନ୍ତ୍ରଣା, ଦୁର୍ଯ୍ୟୋଧନର ଜିଘାଂସା ଏ ସବୁକୁ ଯୁଧିଷ୍ଠିର ହସି ହସି ସହ୍ୟ କରି ନେଇଛନ୍ତି କେବଳ ନିଜର ଭାଇମାନଙ୍କର ମୁହଁ ଚାହିଁ । ଆଜି କୃଷ୍ଣ ଯେଉଁ ପ୍ରସ୍ତାବ ରଖିଛନ୍ତି, ତହିଁରେ ବେଶ୍ କିଛି ଦିନ ପାଇଁ ପାଣ୍ଡବମାନଙ୍କୁ ପରସ୍ପରଠାରୁ ଦୂରେଇ ରହିବାକୁ ପଡ଼ିବ । ତାହା ହିଁ ଯୁଧିଷ୍ଠିରଙ୍କର ଚିନ୍ତାର କାରଣ ହୋଇଛି ।

ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପ୍ରତିଷ୍ଠା ବଢ଼ାଇବା ପାଇଁ ରାଜସୂୟ ଯଜ୍ଞ କଥା କହୁଛନ୍ତି । ଏ କିଛି ପିଲା ଖେଳ ନୁହେଁ । ଜମ୍ବୁଦ୍ୱୀପର ସମସ୍ତ ରାଜାଙ୍କୁ ପଦାନତ କରାଇବା ହେଉଛି ଏହାର ପ୍ରଥମ ପାଦ । ଏଥିପାଇଁ ପ୍ରତ୍ୟେକ ରାଜ୍ୟକୁ ପ୍ରେରିତ ହେବ ଶୁଭ ନାରିକେଳ । ଉପବୀତଧାରୀ ପୁରୋହିତଙ୍କ ପଛେ ପଛେ ଯିବେ ଅସ୍ତ୍ରଶସ୍ତ୍ରଧାରୀ ପାଣ୍ଡବ ଚମୂ । ନାରିକେଳ ରାଜା ଯଦି ଗ୍ରହଣ ନ କରନ୍ତି ତେବେ ଯୁଦ୍ଧ ହେବ । ଜୟ ପରାଜୟ ପଛର କଥା । ନିର୍ଦ୍ଦୋଷଗୁଡ଼ିଏ ଲୋକଙ୍କର ପ୍ରାଣହାନି, ରକ୍ତପାତ - ଏଥିକୁ ଯୁଧିଷ୍ଠିରଙ୍କର ଆପତ୍ତି ।

ରାଜସୂୟ ଯଜ୍ଞ ପାଇ ଯେଉଁ ପ୍ରଚୁର ଧନର ପ୍ରୟୋଜନ, ସେଥିପାଇଁ ପର ରାଜ୍ୟ ଲୁଣ୍ଠନ କରିବାକୁ ହେବ । ଏହା ହେଉଛି କ୍ଷତ୍ରିୟମାନଙ୍କର ଧର୍ମ । ଅନ୍ତତଃ ବାସୁଦେବଙ୍କର ତାହାହିଁ ବିଧାନ । ଭୀମ ଏଥିପାଇଁ ଗୋଟିଏ କଥାରେ ପ୍ରସ୍ତୁତ । ଯୁଧିଷ୍ଠିର ତଥାପି ମନସ୍ଥିର କରିପାରୁ ନାହାନ୍ତି ।

ସବୁଠାରୁ ବଡ଼ ସମସ୍ୟା ହେଉଛନ୍ତି ମଗଧ ରାଜ ଜରାସନ୍ଧ । ପରିଣତ ବୟସରେ ମଧ୍ୟ ଅମିତତେଜା ବୀରକୁଳାଗ୍ରଗଣ୍ୟ ଏହି ରାଜ୍ୟେଶ୍ୱର ହେଉଛନ୍ତି, କୃଷ୍ଣ ଯାଦବଙ୍କର ପ୍ରଥମ ଶ୍ରେଣୀର ଶତ୍ରୁ । ଜରାସନ୍ଧ ବିଶ୍ୱାସ କରନ୍ତି କଂସ ପାଟରାଣୀ - ତାଙ୍କର ପ୍ରିୟତମା ଦୁଇ କନ୍ୟା ହେତି ପ୍ରହେତିଙ୍କର ଅକାଳ ବୈଧବ୍ୟର ମୂଳରେ ରହିଛି କୃଷ୍ଣ-ଗୋପାଳର କୂଟକୌଶଳ । ଛଳନାପୂର୍ଣ୍ଣ ଉପାୟରେ କଂସ ଭଳି ଦିଗ୍‌ବିଜୟୀ ବୀରକୁ ହତ୍ୟା କରି ଏଇ ଭଣ୍ଡ ଗୋପାଳ ଏବେ ଜମ୍ବୁଦ୍ୱୀପର ତ୍ରାଣ କର୍ତ୍ତା ହୋଇ ବସିଛି ।

କୃଷ୍ଣ-ବଳରାମ ଦୁଇ ଗୋପାଳ ଯୁବକଙ୍କୁ ହତ୍ୟା କରି ଜାମାତୃ ହତ୍ୟାର ପ୍ରତିଶୋଧ ନେବା ନିମନ୍ତେ ଜରାସନ୍ଧ ଥରେ ନୁହେଁ, ଦୁଇଥର ନୁହେଁ - ଏକୋଇଶ ଧର ମଥୁରା

ନଗରକୁ ଧାଉଡ଼ି ଦେଉଛନ୍ତି । ମାତ୍ର ତାଙ୍କର ଦୁର୍ଭାଗ୍ୟ- ଥରେ ହେଲେ ସେଇ ଲମ୍ପଟ ଗୋପାଳ ତାଙ୍କ ସହିତ ସମ୍ମୁଖ ସମୟରେ ଅବତୀର୍ଣ୍ଣ ହୋଇ ନାହିଁ । ବୃନ୍ଦାବନ ଅରଣ୍ୟରେ ଗୋପିନୀମାନଙ୍କର ଯୌବନକୁ ନେଇ ଖେଳ ଖେଳୁଥିବା ସେଇ କାମୁକ ଗୋପାଳର ନାମ ଶୁଣିଲେ, ମଗଧପତିଙ୍କର ବକ୍ଷସ୍ଫୀତ ହୋଇ ଉଠେ । ନାସାରନ୍ଧ୍ର ଫୁଲି ଉଠେ । ଥରେ ଯଦି ସେ ତାକୁ ନିଜ ଆଗରେ ପାଇଥାଆନ୍ତେ, ତେବେ ଦେଖାଇ ଦେଇଥାଆନ୍ତେ, ବୀରତ୍ୱ କାହାକୁ କହନ୍ତି ।

ମାତ୍ର ଭୀରୁ ଗୋପାଳ ସଦାବେଳେ ଆତ୍ମଗୋପନ କରି ବସିଛି ଏବଂ ଶେଷରେ ପଶ୍ଚିମ ସମୁଦ୍ରଗର୍ଭରେ ଦ୍ୱାରକା ନାମରେ ନୂତନ ରାଜଧାନୀ ସ୍ଥାପନ କରି ସେଠି ଲୁଚି ବସିଛି ।

ମଥୁରା ଏବେ ଏକ ପରିତ୍ୟକ୍ତ ନଗରୀ - ଏହାହିଁ ହେଉଛି ଜରାସନ୍ଧଙ୍କର ପରମ ସନ୍ତୋଷ । ତେବେ ଯୁଧିଷ୍ଠିର ଜାଣନ୍ତି, ସେ ସୁଯୋଗର ଅପେକ୍ଷାରେ ହିଁ ଅଛନ୍ତି ।

ବାସୁଦେବଙ୍କର ଯୁକ୍ତି ହେଉଛି, ଜରାସନ୍ଧର କାରାଗାରରେ ଜମ୍ବୁ-ଦ୍ୱୀପର କୋଡ଼ିଏ ହଜାର ଆଠଶହ ରାଜା ବନ୍ଦୀ ଅଛନ୍ତି । ଜରାସନ୍ଧକୁ ପରାଜିତ କଲେ, ଏମାନଙ୍କର ଆନୁଗତ୍ୟ ପାଣ୍ଡବମାନେ ଆପେ ଆପେ ପାଇଯିବେ । କଥାଟି ସତ । ମାତ୍ର ଜରାସନ୍ଧକୁ ପରାଜିତ କରିବା କ'ଣ ଏଡ଼େ ସହଜ ହୋଇଛି ? ସ୍ୱୟଂ ବାସୁଦେବ - କୃଷ୍ଣଙ୍କୁ ଯାହାର ଭୟରେ ଘର ଛଡ଼ା ରାଜ୍ୟ ଛଡ଼ା ହୋଇ ସମୁଦ୍ର ଭିତରେ ଆଶ୍ରୟ ଖୋଜିବାକୁ ହୋଇଛି, ତାକୁ ନିଗୃହୀତ କରିବା ଶକ୍ତି କ'ଣ ପାଣ୍ଡବମାନଙ୍କର ଅଛି ।

ଯୁଧିଷ୍ଠିର ନିଜର ସନ୍ଦେହ ପ୍ରକଟ କଲେ ।

ବାସୁଦେବଙ୍କର ରଙ୍ଗାଅଧରରେ ତାଙ୍କର ସେଇ ଚିର ରହସ୍ୟମୟ ହସରୁ ଟେନାଏଁ ଫୁଟି ଉଠିଥିଲା, ଯାହାର ମର୍ମ ଉଦ୍‌ଘାଟନ କରିବା ଯୁଧିଷ୍ଠିରଙ୍କର ପକ୍ଷରେ କେବେ ସମ୍ଭବ ହୋଇ ନାହିଁ ।

କୃଷ୍ଣ କେବଳ ତିନୋଟି ମିତାକ୍ଷର ଉଚ୍ଚାରଣ କରି କହିଥିଲେ ସ-ମ-ୟ । ଏଥିରୁ ଏବେ ଯିଏ ଯାହା ବୁଝିବାର କଥା ବୁଝୁଥାଉ ।

ଜରାସନ୍ଧ ଅପରାଜେୟ, ଦୁର୍ଦ୍ଧର୍ଷ-ଜରା ରାକ୍ଷସୀର ଆଶୀର୍ବାଦ ତା'ର ଶରୀରର ପ୍ରତ୍ୟେକଟି କୋଷରେ । ଯୁଧିଷ୍ଠିର ଜରାସନ୍ଧର ବିଚିତ୍ର ଜନ୍ମ-ବୃତ୍ତାନ୍ତ କୃଷ୍ଣଙ୍କଠାରୁ ଶୁଣିଛନ୍ତି ।

ସେ ଦିନ ନିଜର କୁଳରକ୍ଷା ପାଇଁ ମଗଧ ରାଜ ବୃହଦ୍ରଥ ଯେତେ-ବେଳେ ନିତାନ୍ତ ବ୍ୟତିବ୍ୟସ୍ତ ହୋଇପଡ଼ି ସଂସାର ତ୍ୟାଗ ନିମନ୍ତେ ପ୍ରାୟ ମନସ୍ଥିର କରି

ସାରିଥିଲେ, ହଠାତ୍ ଦୈବ ପ୍ରେରିତ ଭଳି ତାଙ୍କ ପ୍ରାସାଦରେ ଆସି ଉପସ୍ଥିତ ହୋଇଥିଲେ ଚଣ୍ଡକୌଶିକ - ବିଶ୍ୱାମିତ୍ର ।

ବୁଡ଼ିଗଲା ଲୋକର କୁଟାଖିଅକୁ ଆଶ୍ରା ।

ବ୍ୟାକୁଳ ବୃହଦ୍ରଥ ପ୍ରଚଣ୍ଡ ତପୀ ଅକର୍ମୀ କର୍ମ ଦାୟୀ - ସେଇ ମୁନୀଙ୍କ ନିକଟରେ ନିଜର ସମସ୍ୟା ଉପସ୍ଥାପନ କରିଥିଲେ ।

ବିଶ୍ୱାମିତ୍ର କ୍ଷଣକ ପାଇଁ ନେତ୍ର ନିମୀଳିତ କରି ରାଜ ପରିବାରର ଭବିଷ୍ୟତ୍ ଜାଣିବାକୁ ଚେଷ୍ଟା କରିଥିଲେ ।

ସମ୍ମୁଖରେ ଯୋଡ଼ହସ୍ତ ବୃହଦ୍ରଥ ।

ଅନେକ ସମୟ ପରେ ମୁନିଙ୍କର ଧ୍ୟାନ ଭଗ୍ନ ହୋଇଥିଲା । ସେ କେବଳ କହିଥିଲେ, 'ସବୁ ଠିକ୍ ହୋଇଯିବ' ।

ବୃହଦ୍ରଥଙ୍କ ହୃଦୟରେ ଅଶେଷ ଆଶାର ସଞ୍ଚାର କରାଇ ରାଜପରିବାରର ଆତିଥ୍ୟ ପରିତୃପ୍ତ ମୁନି ବିଦାୟ ନେବା ପୂର୍ବରୁ ରାଜାଙ୍କୁ ଉପହାର ଦେଇଥିଲେ ଏକ ପକ୍ୱ ଚୂତଫଳ । କହିଥିଲେ - "ଚିନ୍ତା କରିବାର କିଛି ନାହିଁ । ରାଣୀ ଏହା ଭକ୍ଷଣ କଲେ ତାଙ୍କର ମନସ୍କାମନା ନିଶ୍ଚୟ ପୂର୍ଣ୍ଣ ହେବ ।

ବୃହଦ୍ରଥ ଯଥା ସମୟରେ ପାଟରାଣୀଙ୍କୁ ଫଳଟି ଦେଇ ତା'ର ମାହାତ୍ମ୍ୟ ବୁଝାଇ କହିଥିଲେ । କାଶୀରାଜଙ୍କର ଦୁଇ କନ୍ୟା ବୃହଦ୍ରଥଙ୍କର ପ୍ରିୟମହିଷୀ । ଜ୍ୟେଷ୍ଠା ପଟ୍ଟମହିଷୀ ହେଲେ ମଧ୍ୟ ଭଗ୍ନୀଗତପ୍ରାଣା । ଦିବ୍ୟ ଫଳ-ଅପୂର୍ବ ତା'ର ସୁବାସ । ବଡ଼ରାଣୀ ସାନଭଉଣୀକୁ ନଦେଇ ନିଜେ କିଭଳି ଏକା ଏକା ଫଳଟିକୁ ଖାଇଥାଆନ୍ତେ ? ସ୍ୱାମୀଙ୍କୁ ତ' ଭାଗ କରି ଭୋଗ କରୁଛନ୍ତି । ଛାର ଆମ୍ବ ଫଳରୁ ଅଧେ ଦେବା ପାଇଁ ସେ ଅବା କାର୍ପଣ୍ୟ କରିବେ କାହିଁକି ?

ଫଳର ଅଧା ତେଣୁ ସାନରାଣୀଙ୍କର ଭାଗରେ ପଡ଼ିଲା । ଏକ ସମୟରେ ଦୁଇରାଣୀ ଗର୍ଭବତୀ ହେଲେ । ମଗଧ ରାଜ୍ୟରେ ଆନନ୍ଦ ଉଲ୍ଲାସର ଢେଉ ଉଠିଲା । ପରିଣତ ବୟସରେ ରାଜା ବୃହଦ୍ରଥ ତାରୁଣ୍ୟର ନବଉତ୍ସାହରେ ମାତି ଉଠିଲେ ।

ଉତ୍ସବର କଳରୋଳ ଶେଷ ନ ହେଉଣୁ ମଗଧରାଜ ପରିବାର ଉପରେ ଆକାଶ ଛିଡ଼ି ପଡ଼ିଲା । ଦୁଇ ରାଣୀ ଗୋଟିଏ ସନ୍ତାନର ଅର୍ଦ୍ଧେକ ଲେଖାଁ ଜନ୍ମ ଦେଇଛନ୍ତି । ମଗଧ ରାଜ ନିଜର କପାଳ ତାଡ଼ନକଲେ ଏବଂ ଅଦୃଷ୍ଟକୁ ଦୋଷ ଦେଲେ ।

ଦୁଇ ଖଣ୍ଡ ମାଂସ ପିଣ୍ଡୁଳା ଶ୍ମଶାନରେ ଫିଙ୍ଗି ଦିଆଗଲା । ଦୈବର ବିଧାନ । ମାଂସର ଗନ୍ଧରେ ଆକୃଷ୍ଟ ହୋଇ ସେଇଠି ଆସି ଉପସ୍ଥିତ ହେଲା ଜରାନାମକ

ନିଶାଚରୀ ଏବଂ ତାରି ହାତରେ ଚମତ୍କାର ଘଟଣାଟି ଘଟିଗଲା । ମୃତ ଶିଶୁର ଅର୍ଦ୍ଧେକ ଭାଗ ଆଖି ପିଛୁଳାକେ ଯୋଡ଼ିହୋଇଗଲା ଏବଂ କ୍ରନ୍ଦନ କରିବାକୁ ଲାଗିଲା ।

ନବଜାତକର କ୍ରନ୍ଦନରେ ଉଲ୍କାପାତହେଲା, ସାଗର କୂଳଲଘନ କଲା । ଚଡ଼ଚଡ଼ ନିନାଦରେ ବଜ୍ରପାତ ହେଲା, ଆକାଶର ବକ୍ଷ ଚିରି ଝଲକି ଉଠିଲା ଭାଗ୍ୟର ପରିହାସ ପରି ବିଦ୍ୟୁତ୍ ଶିଖା । ଗୃଧ୍ରଗୋମାୟୁଙ୍କର ଚିତ୍କାରରେ ଗଗନପବନ ମୁଖରିତ ହୋଇଉଠିଲା । ନଦୀମାନଙ୍କରେ ଦେଖା ହେଲା ଉଜାଣି ସ୍ରୋତ ।

ରାକ୍ଷସୀ ପ୍ରଥମେ ତ ଏଇ ନବଜାତକର ଭୟଙ୍କର ରଡ଼ିରେ ଆତଙ୍କିତ ହୋଇପଡ଼ିଥିଲା । ତା' ସହିତ ଏଭଳି ଭୟଙ୍କର ପ୍ରାକୃତିକ ବିପ୍ଳାତ ଦେଖି ଜୀବନ ନେଇ ପଳାଇଗଲା ।

ନବଜାତକ ଅସହାୟ ଭାବରେ ସେଇ ନିର୍ଜନ ପ୍ରେତଭୂମିରେ ପଡ଼ି ପଡ଼ି କାନ୍ଦିବାକୁ ଲାଗିଲା ।

ସବୁ ରାତିର ସକାଳଥାଏ । ସେଇ ଘୋର ଦୁର୍ଦ୍ଦିନରେ ମଧ୍ୟ ମଗଧର ଆକାଶରେ ସୂର୍ଯ୍ୟ ଦେଖା ଦେଇଥିଲେ । ବିଷଣ୍ଣ ବୃହଦ୍ରଥ ରାଜସଭାରେ ବସି ଶାନ୍ତି ସ୍ୱସ୍ତ୍ୟୟନ ନିମନ୍ତେ ରାଜପୁରୋହିତଙ୍କ ସହ ଆଲୋଚନା ଚଳାଇଥିବା ବେଳେ ଜରା ରାଜସଭାରେ ଦେଖା ଦେଇଥିଲା ।

ତା'ର ମାନବୀ ବେଶ ।

ତା'ଠାରୁ ସମସ୍ତ ବିବରଣୀ ଶୁଣିବାପରେ ବୃହଦ୍ରଥ ଆନନ୍ଦିତ ହେବାକୁ ଭୁଲି ଯାଇଥିଲେ । କୁଳଗୁରୁ ତାଙ୍କୁ ସ୍ପଷ୍ଟଭାଷାରେ ବୁଝାଇ ଦେଇଥିଲେ ଯେ, କୁଳ ପାବନ ନୁହେଁ, କୁଳନାଶନ ପୁତ୍ର ଜନ୍ମ ନେଇଛି । କୋଳରେ ତାକୁ ସ୍ଥାନଦେଲେ କୁଳ ଧ୍ୱଂସ ପାଇବ ।

ବୃହଦ୍ରଥ ସବୁଶୁଣି ସେଦିନ ପଥର ହୋଇଯାଇଥିଲେ । ଭବିଷ୍ୟତରେ ଅନ୍ଧକାରାଚ୍ଛନ୍ନ ରୂପ ତାଙ୍କ ଆଖି ଆଗରେ ନାଚି ଉଠିଥିଲା । ନିରପରାଧ ଶିଶୁ । ସେ ପୁଣି ଦେବାନୁଗ୍ରହରୁ ପ୍ରାପ୍ତ - ତାଙ୍କରି ରକ୍ତର ସନ୍ତକ । ଭବିଷ୍ୟତର କଥା ଭାବି ସେ ବର୍ତ୍ତମାନକୁ ପଦାଘାତ କରିବେ ? ଅସହାୟ ଏକ ଶିଶୁକୁ ଗୃଧ୍ର ଶୃଗାଳଙ୍କର ଆହାର ହେବାକୁ ଛାଡ଼ିଦେବେ ? ତାରି ପାଇଁ ଯଦି ମଗଧ ରାଜବଂଶ ରସାତଳକୁ ଯାଏ, ତେବେ ଯାଉ । ସେ ତ' ଆଉ ତାହା ଦେଖିବାକୁ ବସିନଥିବେ । ଭବିଷ୍ୟତ ପାଇଁ ସେ ଯଦି ବର୍ତ୍ତମାନକୁ ଉପେକ୍ଷା କରନ୍ତି, ତେବେ ଦୁନିଆ ତାଙ୍କୁ କ'ଣ କହିବ ? ସେ କ୍ଷତ୍ରିୟ । ଅସହାୟକୁ ରକ୍ଷା କରିବା ହେଉଛି ତାଙ୍କର ପ୍ରଥମ କର୍ତ୍ତବ୍ୟ । କୁଳର ନିରାପତ୍ତା ଦେଖିବା ତାଙ୍କର ଦାୟିତ୍ୱ ହୋଇପାରେ । ମାତ୍ର ବର୍ତ୍ତମାନକୁ ସେ ଏଡ଼ାଇ ଯାଇ ପାରିବେ ନାହିଁ ।

ଦାୟିତ୍ୱ ଏବଂ ମମତାର ଦ୍ୱନ୍ଦରେ ଶେଷରେ ମମତା ହିଁ ଜୟୀ ହେଲା । ବୃହଦ୍ରଥ ସେ ଦିନର ଶିଶୁ ଜରାସନ୍ଧଙ୍କୁ କୋଳକୁ ଟେକି ନେଇଥିଲେ ।

ଏଇ ହେଉଛି ଆଜିର ପ୍ରତ୍ୟେକ ବୀରର ହୃଦୟରେ ତ୍ରାସ ସୃଷ୍ଟିକାରୀ ଜରାସନ୍ଧର ଅତୀତ । କୃଷ୍ଣ ଜାଣନ୍ତି, ଜରାସନ୍ଧଙ୍କୁ ପରାଜିତ କରିନପାରିଲେ ଯୁଧିଷ୍ଠିରଙ୍କର ରାଜସୂୟଯଜ୍ଞ ଏକ ଅଳୀକ କଳ୍ପନା ହୋଇ ରହିଯିବ ।

ବାରୁଣାବନ୍ତ ପୁରରେ ଆଲୋଚନା ସଭା ବସିଥିଲା । ଦିଗ୍‌ବିଜୟ ହେଉଛି ରାଜସୂୟ ଯଜ୍ଞର ଉଦ୍‌ଯୋଗ ପର୍ବ । କୌଣସି କ୍ଷତ୍ରିୟ ସ୍ୱେଚ୍ଛାରେ ପରପତାକାଶ୍ରୟୀ ହେବାକୁ ଆଗେଇ ଆସେ ନାହିଁ । ଆନୁଗତ୍ୟର ଶୃଙ୍ଖଳ ପିନ୍ଧାଇ ଦେବାକୁ ପଡ଼େ ବଳପ୍ରୟୋଗ କରି । ନିଜଶକ୍ତିର ପରିଚୟ ଦେବା ପାଇଁ ପାଣ୍ଡବମାନେ ଏହା ଅପେକ୍ଷା ସୁନ୍ଦର ଅବସର ଆଉ ପାଇବେନାହିଁ ।

ପାଣ୍ଡବମାନଙ୍କୁ ଏହା ବୁଝାଇ ଦେବାପରେ ଯୁଧିଷ୍ଠିର ସେଦିନ ପ୍ରଶ୍ନ କରିଥିଲେ, ‘‘ଅକାରଣ ରକ୍ତପାତକୁ ତେବେ କ’ଣ ବୀରତ୍ୱର ଏକମାତ୍ର ପରିଚୟ ବୋଲି ଗ୍ରହଣ କରିନେବା ବାସୁଦେବ ?’’

ଶ୍ରୀକୃଷ୍ଣ ତାଙ୍କୁ ବୁଝାଇଥିଲେ, ‘‘ପାଣ୍ଡବମାନେ କେବଳ ତାହାହିଁ କରିବାକୁ ଯାଉଛନ୍ତି, ଯାହା ଯୁଗେ ଯୁଗେ ପରପ୍ରଭାବ ଅସହଣୀବୀର୍ଯ୍ୟ ଦୃପ୍ତ କ୍ଷତ୍ରିୟମାନେ କରି ଆସିଛନ୍ତି । କ୍ଷତ୍ରିୟର ଧର୍ମ ହିଁ ଦିଗ୍‌ବିଜୟ ।’’

ଧର୍ମରାଜ କହିଲେ, ‘‘ପାଣ୍ଡବମାନେ ଅନେକ ଦୁଃଖ ଭୋଗିବା ପରେ ପିତାମହଙ୍କ ଅନୁକମ୍ପାରୁ ଚେନାଏ ଭୂଖଣ୍ଡର ମାଲିକ ହୋଇ ଟିକିଏ ସୁଖର ମୁଖ ଦେଖୁଛନ୍ତି । ଏଥିରେ ରାଜସୂୟ ଯଜ୍ଞ ଭଳି ଏକ ରାଜସିକ ଆୟୋଜନ କରି ଅଯଥାରେ ଗୁଡ଼ିଏ ଶତ୍ରୁ ସୃଷ୍ଟି କରିବା କ’ଣ ରାଜନୀତି ସମ୍ମତ ହେବ ? ପୁଣି ଦୁର୍ଯ୍ୟୋଧନ ...

ଯୁଧିଷ୍ଠିର ନିଜର ବକ୍ତବ୍ୟ ଅନୁକ୍ତ ରଖିଲେହେଁ ତାଙ୍କର କଥାର ମର୍ମ ବୁଝିବାକୁ କାହାର ଅସୁବିଧା ହେଲାନାହିଁ । ପାଣ୍ଡବମାନଙ୍କର ଯଶକୀର୍ତ୍ତି ପ୍ରତି ସଦା ଈର୍ଷାକାତର କୁରୁପତି ଦୁର୍ଯ୍ୟୋଧନ ଯେ ପୁଣି କ’ଣ ଗୋଟିଏ ସମସ୍ୟା ଠିଆ କରିଦେବ କିଏ ଜାଣେ ?

ଅଳ୍ପ ହସି ଶ୍ରୀକୃଷ୍ଣ କହିଲେ - ଆପଣ କ’ଣ ଦୁର୍ଯ୍ୟୋଧନଙ୍କୁ ଭୟ କରୁଛନ୍ତି ଜ୍ୟେଷ୍ଠଭ୍ରାତ ?’’

ଯୁଧିଷ୍ଠିର କହିଲେ, ‘‘ମୋର ଭୟ ଅଶାନ୍ତିକୁ । ଦୁର୍ଯ୍ୟୋଧନ ଉପଲକ୍ଷ ମାତ୍ର ।’’

ଦୁର୍ଯ୍ୟୋଧନ ସମ୍ପର୍କରେ ଶ୍ରୀକୃଷ୍ଣଙ୍କର ଯାହା ଚିନ୍ତା ତାହା ସେ ପାଣ୍ଡବମାନଙ୍କୁ କହିଲେ ନାହିଁ । ଦୁର୍ଯ୍ୟୋଧନମାନେ କେବେ ଅଭ୍ୟୁଦୟର ପଥକୁ ଦେଖିପାରନ୍ତିନାହିଁ । ପତନର ପଥ ହିଁ ହେଉଛି ସେମାନଙ୍କର ଚିରାଚରିତ ପଥ । ଏହାକୁ ସେମାନେ ପ୍ରଗତିର ପଥ ବୋଲି ବିଶ୍ୱାସ କରି ଧୀରେ ଧୀରେ ସର୍ବନାଶ ଆଡ଼କୁ ଆଗେଇ ଚାଲିଥାନ୍ତି । ଏହି କ୍ରିୟା ଯେତେ ତ୍ୱରାନ୍ୱିତ ହେବ; ଦେଶ ଆଉ ଦଶ ପାଇଁ ତାହା ସେତେ ମଙ୍ଗଳପ୍ରଦ । ଏ କଥା ବାସୁଦେବ ପାଣ୍ଡବମାନଙ୍କୁ କହି ପାରନ୍ତେ ନାହିଁ ।

ତଥାପି ସେ ଯୁଧିଷ୍ଠିରଙ୍କ ଆଡ଼କୁ ଅନାଇ କହିଲେ, ଯାହାକୁ ଆପଣ ଅଶାନ୍ତି ବୋଲି କହୁଛନ୍ତି ତାହାହିଁ ହେଉଛି କ୍ଷତ୍ରିୟର ଧର୍ମ । ଏଥିରୁ ବିରତ ରହି ଆପଣ ପ୍ରଗତିର ରଥକୁ ସ୍ଥାଣୁ କରିଦେଇ ପାରିବେ ନାହିଁ । ଆଗେଇ ଯିବାର ଅନ୍ୟ ନାମ ହିଁ ହେଉଛି ଜୀବନ ।

ଶ୍ରୀକୃଷ୍ଣଙ୍କର ପ୍ରସ୍ତାବ ପାଣ୍ଡବମାନେ ମଗଧ ଆକ୍ରମଣ କରି ଜରାସନ୍ଧକୁ ପରାସ୍ତ କରନ୍ତୁ । ତା' ସହିତ ଯେଉଁ ରାଜା ବା ରାଜପୁତ୍ରମାନେ ମଗଧର ବନ୍ଦୀଶାଳାରେ ଦୀର୍ଘକାଳ ଧରି ଆବଦ୍ଧ ହୋଇ ରହିଛନ୍ତି, ସେମାନଙ୍କୁ ମୁକ୍ତ କରନ୍ତୁ । ଗୋଟିଏ ଅସ୍ତ୍ରରେ ଦୁଇଟି ପକ୍ଷୀ ଶିକାରର ଏଭଳି ସୁଯୋଗ ଆଉ ମିଳିବ ନାହିଁ ।

ଯୁଧିଷ୍ଠିରଙ୍କର ତଥାପି ପ୍ରତ୍ୟୟ ଆସୁ ନ ଥିଲା । ଦିଗ୍‌ବିଜୟ ବ୍ୟାପାରରେ ସହଦେବ ଦକ୍ଷିଣକୁ, ପଶ୍ଚିମକୁ ନକୁଳ ଏବଂ ପୂର୍ବଦିଗକୁ ଭୀମସେନ ଯିବେ । ବାକି ରହୁଛନ୍ତି ସେ ନିଜେ ଏବଂ ତୃତୀୟପାଣ୍ଡବ ଅର୍ଜୁନ । ରାଜଧାନୀର ସୁରକ୍ଷା ନିମନ୍ତେ ତାଙ୍କୁ ବାରୁଣାବତରେ ରହିବାକୁ ପଡ଼ିବ । ଅର୍ଜୁନ ଏକାକୀ ଜରାସନ୍ଧର ସମକକ୍ଷ ହୋଇ ପାରିବେ କି ?

ଏ ସମସ୍ୟାର ସମାଧାନ ମଧ୍ୟ ବାସୁଦେବ କରିଦେଲେ । ଦ୍ୱିତୀୟ ଏବଂ ତୃତୀୟ ପାଣ୍ଡବଙ୍କ ସହିତ ସେ ସ୍ୱୟଂ ମଗଧ ଯିବେ । ସେଠାରେ କ୍ଷେତ୍ରୋଚିତ କାର୍ଯ୍ୟ କରି ଜରାସନ୍ଧକୁ ପରାସ୍ତ କରିବେ । ଧର୍ମରାଜ ଏ ବ୍ୟାପାରରେ ନିଶ୍ଚିତ ରହିପାରନ୍ତି ।

ସମ୍ପୂର୍ଣ୍ଣ ନିଶ୍ଚିତ ହୋଇ ନ ପାରିଲେ ମଧ୍ୟ ଯୁଧିଷ୍ଠିରଙ୍କୁ କେତେ ପରିମାଣରେ ସ୍ୱସ୍ତି ମିଳିଲା । ଶ୍ରୀକୃଷ୍ଣଙ୍କର କୂଟ ବୁଦ୍ଧି ଉପରେ ତାଙ୍କର ଆସ୍ଥା ଅଛି । ସେ ସାଙ୍ଗରେ ଥିଲେ ଭୀମ ଅର୍ଜୁନଙ୍କର କୌଣସି କ୍ଷତି ହେବନାହିଁ । ଅର୍ଜୁନ ଚପଳ ହେଲେ ମଧ୍ୟ ସ୍ଥିର ବୁଦ୍ଧି । ତାଙ୍କର ଯେତେକ ଚିନ୍ତା ଦ୍ୱିତୀୟ ପାଣ୍ଡବଙ୍କ ପାଇଁ । ସମସ୍ୟା ସମାଧାନ କରିବାକୁ ଯାଇ ସେ ନିଜେ ହିଁ ଏକ ସମସ୍ୟା ହୋଇ ଠିଆ ହୁଅନ୍ତି ।

ଶ୍ରୀକୃଷ୍ଣ ଏହା ଉପରେ ଶେଷ ନିଷ୍ପତ୍ତି ଦେଇ କହିଲେ, ''ଆପଣ ମନରେ ଦ୍ୱିଧା ରଖନ୍ତୁ ନାହିଁ । ପରାଜୟ ପାଣ୍ଡବମାନଙ୍କର ଲଲାଟରେ ଲେଖାନାହିଁ । ସଂହତି ହିଁ ହେଉଛି ସେମାନଙ୍କର ଶକ୍ତି । ଜରାସନ୍ଧର ପରାଜୟ ଅବଧାରିତ ।''

ଯୁଧିଷ୍ଠିର ନୀରବ ରହିଲେ ।

ଶତଶତ ନିପୀଡ଼ିତ ଆତ୍ମାର ଆର୍ତ୍ତନାଦ ସତେ ଯେମିତି ତାଙ୍କର କାନରେ ବାଜୁଥିଲା । କ୍ଷମତାର ପଥ ଚିରକାଳ ରକ୍ତ ରଞ୍ଜିତ । ରକ୍ତର ସ୍ରୋତରେ ଭାସି ଭାସି ରାଜନୀତିର ଯେଉଁ ଚରମ ଲକ୍ଷ୍ୟରେ ପହଞ୍ଚିବାକୁ ହୁଏ ତାଙ୍କର ଅନ୍ତରାତ୍ମା କେବେ ତାକୁ ସମର୍ଥନ କରିନାହିଁ । କ୍ଷମତାର ହଟଗୋଳ ମଧ୍ୟରେ ସେ ଚିରକାଳ ଶୁଣିବାକୁ ପାଇଛନ୍ତି ବେଦମନ୍ତ୍ରର ପବିତ୍ର ଗମ୍ଭୀର ଧ୍ୱନି । ରକ୍ତର ଜୁଗୁପ୍‌ସିତ ଦୁର୍ଗନ୍ଧକୁ ଡୁବାଇ ଦେଇ ବାରମ୍ବାର ତାଙ୍କ ନାକରେ ଆସି ବାଜିଛି ହୋମଧୂମର ସୁଗନ୍ଧ । ଅଥଚ ରକ୍ତପାତର ରାଜନୀତି ହିଁ ସତେ ଯେମିତି ହୋଇଛି ତାଙ୍କର ଲଲାଟ ଲିଖନ । ଏହାକୁ ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଅନ୍ୟ କ'ଣ କୁହାଯିବ ?

ଯୁଧିଷ୍ଠିର ଦୀର୍ଘଶ୍ୱାସ ଛାଡ଼ିଲେ ।

ଅର୍ଜୁନ ନିଜର ଅସ୍ୱସ୍ତି କଟାଇବାକୁ କହିଲେ, ''ଜ୍ୟେଷ୍ଠଭ୍ରାତା ଅସନ୍ତୁଷ୍ଟ ହୋଇଛନ୍ତି । ବର୍ତ୍ତମାନ ପାଇଁ ବରଂ ରାଜସୂୟ ଯଜ୍ଞ ପ୍ରସ୍ତାବ ସ୍ଥଗିତ ଥାଉ ।''

ଶ୍ରୀକୃଷ୍ଣ ଅନ୍ତର୍ଭେଦୀ ଦୃଷ୍ଟିରେ ଅର୍ଜୁନଙ୍କ ଆଡ଼କୁ ଅନାଇଲେ । ପାଣ୍ଡବମାନେ ଚିରକାଳ ନିର୍ବୋଧ । ନଚେତ୍ ଶକ୍ତି ଆଉ ସାମର୍ଥ୍ୟ ଥାଇ ମଧ୍ୟ ସେମାନେ ଧୃତରାଷ୍ଟ୍ର ପୁତ୍ରମାନଙ୍କ ହାତରେ କଣ୍ଢେଇ ଭଳି ନାଚୁ ନ ଥାନ୍ତେ । କ୍ଷମତାର କେନ୍ଦ୍ରବିନ୍ଦୁରେ ରହିବାକୁ ହେଲେ, ଏଇଭଳି ଅନେକ ବ୍ୟାପାର ଯେ କରିବାକୁ ହୁଏ, ଏମାନେ ତାହା ବୁଝି ମଧ୍ୟ ବୁଝନ୍ତି ନାହିଁ । କ୍ଷତ୍ରିୟ ହୋଇ ଯଦି ରକ୍ତର ନାମରେ ମୂର୍ଚ୍ଛା ଆସିବାର ଉପକ୍ରମ ହୁଏ, ତେବେ-ଜଟାଜୁଟ ଧାରଣ କରି ଅରଣ୍ୟଚାରୀ ହେବାକୁ କିଏ ମନା କରୁଛି ? ଏକଥା ଏମାନେ ବୁଝିବେ ନାହିଁ । ଶ୍ରୀକୃଷ୍ଣ କହିଲେ, ''ସମୟ ଅନନ୍ତ ହୋଇପାରେ, ଜୀବନ କିନ୍ତୁ ସାନ୍ତ । ପ୍ରତ୍ୟେକ କାର୍ଯ୍ୟପାଇଁ ସମୟ ସୁନିର୍ଦ୍ଦିଷ୍ଟ । ଜରାସନ୍ଧର ପାପର ଘଡ଼ା ପୂର୍ଣ୍ଣ ହୋଇଛି ।''

ଅର୍ଜୁନ ଜାଣନ୍ତି, ବାସୁଦେବଙ୍କର ନିଷ୍ପତ୍ତି ଅପରିବର୍ତ୍ତନୀୟ । ଯାହା ସେ କରିବାକୁ ଥରେ ଠିକ୍ କରି ନିଅନ୍ତି, ତହିଁରେ ଶେଷ ପର୍ଯ୍ୟନ୍ତ ଅଟଳ ରହନ୍ତି । ସେମାନଙ୍କୁ ମଧ୍ୟ ତାଙ୍କର ଇଙ୍ଗିତରେ ପରିଚାଳିତ ହେବାକୁ ପଡ଼ିବ । ପ୍ରତିବାଦ ନିରର୍ଥକ ।

ଶ୍ରୀକୃଷ୍ଣ କହିଲେ, ''ନିଷ୍ପତ୍ତିରୁ ପଶ୍ଚାଦପସରଣ ଭୀରୁତାର ପରିଚାୟକ । ଜରାସନ୍ଧ ବଧ ହେଉଛି, ଏହି ମହାଯଜ୍ଞର ମୂଳ ଲକ୍ଷ୍ୟ । ରାଜସୂୟ ଉପଲକ୍ଷ୍ୟ ମାତ୍ର । ଶୁଣ ପାର୍ଥ, କୁତ୍ରାପି ଜରାସନ୍ଧକୁ ହତ୍ୟା କରିବା କଥା ମୁଁ କେବେ କହି ନାହିଁ । ତାକୁ ହତ୍ୟା କରିବାକୁ ହେବ, ସଂଗ୍ରାମରେ ପରାଜିତ କରି । ଏଥିରେ ତ କୌଣସି ଅପରାଧ ନାହିଁ । ଦୁଷ୍ଟର ଦମନ ହେଉଛି ପ୍ରତ୍ୟେକ ସମର୍ଥ କ୍ଷତ୍ରିୟର ଧର୍ମ ।''

ଭୀମସେନ, ଏସବୁ ତତ୍ତ୍ୱ ବା ଦର୍ଶନ ବୁଝନ୍ତି ନାହିଁ । ଦେହ ଆଉ ମନକୁ ଉଷ୍ଣମ୍ କଲାଭଳି କିଛି ତାତ୍କାଳୀକ ଉପାଦାନ ମିଳିଗଲେ ତାଙ୍କର ସନ୍ତୋଷ । ଦେହ ପାଇଁ ଦ୍ରୁପଦ ରାଜକନ୍ୟା ପାଞ୍ଚାଳୀ କିମ୍ବା ହିଡ଼ିମ୍ବ ଭଗ୍ନି ହିଡ଼ିମ୍ବାଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଯେମିତି ତାଙ୍କ ପାଇଁ ତୁଚ୍ଛ, ମନ ପାଇଁ ଚିତ୍ରସେନ ଗନ୍ଧର୍ବ ହାତରେ ଦୁର୍ଯ୍ୟୋଧନର ନିଗ୍ରହ ଦର୍ଶନ କିମ୍ବା ବକାସୁରର ନିଧନ ବୃତ୍ତାନ୍ତ ମଧ୍ୟ ସମାନ ଭାବରେ ଉଲ୍ଲାସ ଦାୟକ । ଘଟଣା ହିଁ ଘଟଣା । ତା'ର ପୁଣି ଛୋଟ ବଡ଼ କ'ଣ ?

ଜରାସନ୍ଧ ଜମ୍ବୁଦ୍ୱୀପ ଖ୍ୟାତ ବୀର । ତା'ର ନିଧନରେ ଯେତିକି ଉତ୍ତେଜନା ମିଳିବ, ତାହାରି କଳ୍ପନାରେ ଭୀମସେନ ଉଲ୍ଲସିତ । ବାସୁଦେବକୃଷ୍ଣ ମହାକୁଚକ୍ରୀ । ସିଧାଘଟଣାକୁ ଜଟିଳ କରି ଦେଖିବାରେ ହିଁ ସେ ଅଭ୍ୟସ୍ତ । ସେଇଥିପାଇଁ ଜରାସନ୍ଧର ଦୁର୍ଗରେ ବ୍ରାହ୍ମଣ ବେଶ ଧରି ପଶିବା କଥା ଯେତେବେଳେ ସେ କହିଲେ, ଭୀମସେନ ମନେ ମନେ ବଡ଼ ଅସନ୍ତୁଷ୍ଟ ହେଲେ ।

ତାଙ୍କର ଇଚ୍ଛା ଦୁମ୍‌ଦୁମ୍ ପଦପାତରେ ମେଦିନୀ କମ୍ପାଇ ସେ ଜରାସନ୍ଧର ଦୁର୍ଗରେ ପ୍ରବେଶ କରନ୍ତେ । ରେରେକାର - ପଦ୍ମତୋଳାର ଧ୍ୱନିରେ ଗର୍ତ୍ତର ସର୍ପକୁ ବାହାରକୁ ବାହାର କରି ଆଣନ୍ତେ । ତା'ର ବୀରକେଶ ଧରି ଘିଡ଼ଘାଡ଼ୁ ଘୋଷାରି ଆଣି ଦୁଇଚାରୋଟି ଚରମ ମୁଷ୍ଟିଯୋଗ ପ୍ରୟୋଗ କରନ୍ତେ । ତା'ପରେ ପ୍ରୟୋଜନ ହେଲେ 'କ୍ଷେତ୍ରେ କର୍ମ ବିଧୀୟତେ ।'

ସେ ଜାଣନ୍ତି, ମନ କଥା ଫିଟାଇ କହିଲେ, କୃଷ୍ଣ-ବାସୁଦେବ ତାଙ୍କର ସେଇ ଚିର ପରିଚିତ ହାସ୍ୟ-ରେଖାରେ ମୁଖ ମଣ୍ଡାଇ ପକାଇବେ । ନିଜର ଭାଇମାନେ ମଧ୍ୟ ତାଙ୍କର ଅନ୍ଧଭାବକ । ଏଇଟା ଭୀମସେନଙ୍କର ଦୁଃଖ ।

ସେ ମୁହଁ ଭାରି କରି କୃଷ୍ଣ-ଅର୍ଜୁନଙ୍କର ଆଲୋଚନା ଶୁଣିଯାଉଥିଲେ । ଜରାସନ୍ଧ ମାନ୍ୟଗଣ୍ୟ ବ୍ୟକ୍ତି । ଜମ୍ବୁଦ୍ୱୀପର ଅନେକ ରାଜପରିବାରର ଆଖି ମଗଧ ରାଜବଂଶ ଉପରେ । ମଗଧ ରାଜପ୍ରାସାଦର ନିରାପତ୍ତା ବ୍ୟବସ୍ଥା ମଧ୍ୟ ସେଇଭଳି ଦୃଢ଼ । ଚାରୋଟି ମୁଖ୍ୟ ଦ୍ୱାର ଅତିକ୍ରମ କରି ସାରିଲେ ଯାଇ ରାଜ ଦର୍ଶନ ।

ଯାହାଙ୍କର ଦର୍ଶନ ପାଇଁ ଯେତେ କଷ୍ଟ ସାଧାରଣ ଲୋକ ଚକ୍ଷୁରେ ତାଙ୍କର ସ୍ଥାନ ସେତେ ଉଚ୍ଚରେ । ଦୁର୍ଲଭତା ଆଉ ଦୂରତ୍ୱ ହିଁ ହେଉଛି ରାଜତନ୍ତ୍ରର ପ୍ରଥମ ନୀତି । ମଗଧ ରାଜ ଶତ୍ରୁମାନଙ୍କୁ ନିରସ୍ତ୍ର କରିବା ପାଇଁ ଚାରି ଦ୍ୱାରରେ ଅତି କଡ଼ାକଡ଼ି ବ୍ୟବସ୍ଥା କରିଛନ୍ତି । ସେଇଠି ହିଁ ମିତ୍ର ଶତ୍ରୁ ଚିହ୍ନା ପଡ଼ିଯାଆନ୍ତି ।

ଶ୍ରୀକୃଷ୍ଣ ଏହା ଜାଣନ୍ତି ଏବଂ ଜାଣନ୍ତି ବୋଲି ସେ ବ୍ରାହ୍ମଣ ବେଶ ଧରିବାର ବିଧାନ ଦେଇଥିଲେ । ଶତ୍ରୁ ହେଲେ ମଧ୍ୟ ରାଜ ଦ୍ୱାରରେ ବ୍ରାହ୍ମଣର ସମ୍ମାନ ସ୍ୱତନ୍ତ୍ର ରୀତିର । ତାଙ୍କ ପାଇଁ ନିରାପତ୍ତାର ଆଇନ୍‌କାନୁନ୍ ଲାଗୁ ହୁଏ ନାହିଁ ।

ଛଦ୍ମବେଶୀ ବ୍ରାହ୍ମଣ ତ୍ରୟ ଚାରିଦ୍ୱାର ଅତିକ୍ରମ କରି ଉଦାତ୍ତ କଣ୍ଠରେ ଯେତେବେଳେ ସାମବେଦ ଗାନ କରିବାକୁ ଲାଗିଲେ, ସେତେବେଳେ ଜରାସନ୍ଧଙ୍କୁ ଅଗତ୍ୟା ତାଙ୍କ ନିକଟକୁ ଆସିବାକୁ ପଡ଼ିଲା ।

ଜରାସନ୍ଧ ବହୁଦର୍ଶୀ । ଲୋକ ଚରିତ୍ରରେ ତାଙ୍କର ଜ୍ଞାନ ଅମାପ । ପ୍ରଥମ ଦର୍ଶନରୁ ହିଁ ସେ ବ୍ରାହ୍ମଣମାନଙ୍କୁ ସନ୍ଦେହ କରି ବସିଲେ । ଉତ୍ତରୀୟ ଭେଦ କରି ଯାହାଙ୍କ ଦେହରେ ଅସ୍ତ୍ରଶସ୍ତ୍ରର ଏତେ କ୍ଷତ ଚିହ୍ନ ଦେଖାଯାଉଛି, ସେମାନେ କିଭଳି ବ୍ରାହ୍ମଣ ?

ଯିଏ ହୁଅନ୍ତୁ, ଯେଉଁଥିପାଇଁ ଆସି ଥାଆନ୍ତୁ, ସେମାନେ ଆସିଛନ୍ତି ପ୍ରାର୍ଥୀ ଭାବରେ । କୌଣସି ପ୍ରାର୍ଥୀକୁ ଶୂନ୍ୟ ହସ୍ତରେ ଫେରାଇ ଦେବା ଆଦୌ କ୍ଷତ୍ରିୟୋଚିତ ନୁହେଁ ।

ଜରାସନ୍ଧ ଜିଜ୍ଞାସୁ ଦୃଷ୍ଟିରେ ବ୍ରାହ୍ମଣମାନଙ୍କ ଆଡ଼କୁ ଅନାଇଲେ । ତାଙ୍କ ଆଗରେ ତିନିମୂର୍ତ୍ତି ଉଭା । ସେମାନଙ୍କ ଚେହେରାରେ ବ୍ରାହ୍ମଣୋଚିତ ସାତ୍ତ୍ୱିକତା ଅପେକ୍ଷା କ୍ଷତ୍ରିୟୋଚିତ ରାଜସିକତା ଫୁଟି ଦିଶୁଚି । ମୁଖମଣ୍ଡଳରେ ପ୍ରାର୍ଥିତ୍ୱର ଦୀନତା ବଦଳରେ ଅଭିଜାତ-ସୁଲଭ ଅଭିମାନ ଝଲସି ଉଠୁଛି । ଏମାନଙ୍କ ମଧ୍ୟମଣି ରୂପରେ ବିରାଜୁଛନ୍ତି ଯେଉଁ ବ୍ରାହ୍ମଣ ତାଙ୍କର ବର୍ଣ୍ଣ ଶ୍ୟାମଳ । ମୁଖମଣ୍ଡଳରେ କିଶୋର ସୁଲଭ ଚପଳତା ଏବେ ମଧ୍ୟ ଝଟକି ଦିଶୁଛି । ଚେହେରାର ସୌକୁମାର୍ଯ୍ୟ ଆଖିରେ ପଡ଼ିଲା ଭଳି । ତାଙ୍କର ରଙ୍ଗ ଅଧରରେ ରହସ୍ୟମୟ ହସ ପ୍ରକଟିତ । ତାଙ୍କ ପାଖରେ ଯେଉଁ ବ୍ୟକ୍ତି ଠିଆ ହୋଇଛନ୍ତି, ତାଙ୍କର ରୂପ କ୍ଷତ୍ରିୟୋଚିତ ହେଲେ ମଧ୍ୟ ଲାଳିତ୍ୟ ବିରହିତ ନୁହେଁ । ଜଣାଯାଉଛି, ନିଜର ରୂପ ସମ୍ପର୍କରେ ସେ ଅତ୍ୟନ୍ତ ସଚେତନ ଏବଂ ନିୟମିତ ରୂପ ଚର୍ଚ୍ଚା କରିଥାଆନ୍ତି । ସେ ନିଶ୍ଚୟ ଜଣେ ରସିକ ହୋଇଥିବେ । ବାମପାର୍ଶ୍ୱରେ ଯେଉଁ ବ୍ୟକ୍ତି ଦଣ୍ଡାୟମାନ ତାଙ୍କର ପେଶୀବହୁଳ ଶରୀର । ଆଖିରେ ଚଞ୍ଚଳ ଏବଂ ଅସହଣି ଦୃଷ୍ଟି । ସିଂହଠାଣିରୁ ଔଦ୍ଧତ୍ୟ ପ୍ରକାଶ ପାଉଛି । ସେ ନିଶ୍ଚୟ ନିୟମିତ ସ୍ୱାସ୍ଥ୍ୟ ଚର୍ଚ୍ଚା କରୁଥିବେ ।

ଯିଏ ହୁଅନ୍ତୁ, ଯାହା ହୁଅନ୍ତୁ, ଆସିଛନ୍ତି ଯେତେବେଳେ ସେମାନେ ନିଶ୍ଚୟ ନିଜ କଥା କହିବେ । ଜରାସନ୍ଧ ବ୍ରାହ୍ମଣମାନଙ୍କୁ ଯଥାବିଧି ସମ୍ମାନ ଜଣାଇବା ପରେ ଅପେକ୍ଷା କଲେ ।

ସ୍ୱସ୍ତିବଚନ ଉଚ୍ଚାରଣ କରି ଜଳଦଗମ୍ଭୀର କଣ୍ଠରେ ମଧ୍ୟମଣି କହିଲେ, "ବହୁଦୂରରୁ ଆପଣଙ୍କ ନାମ ଶୁଣି ଆମ୍ଭେମାନେ ଏଠାକୁ ଆସିଛୁ ମହାରାଜ । ଆପଣ ମହାଦାତା ଏବଂ କ୍ଷତ୍ରିୟ । ହରିଶ୍ଚନ୍ଦ୍ରଙ୍କ ଭଳି ରାଜା ବ୍ରାହ୍ମଣ ପାଦରେ ସର୍ବସ୍ୱ ଉତ୍ସର୍ଗ କରି ନିଜକୁ ଧନ୍ୟ ମଣିଥିଲେ । ଏ ଯୁଗରେ କର୍ଣ୍ଣଙ୍କ କଥା ତ ଆପଣ ଶୁଣିଥିବେ । ବ୍ରାହ୍ମଣ ସନ୍ତୁଷ୍ଟ ହେଲେ କୁଳଉଦ୍ଧାର ହୁଏ । ଆପଣ ଆମର ମନସ୍କାମନା ପୂର୍ଣ୍ଣ କରନ୍ତୁ ।"

ଜରାସନ୍ଧ କହିଲେ, "ଆପଣ ପ୍ରକାଶ କରନ୍ତୁ । ସାଧ୍ୟମତେ ମୁଁ ତାହା ପୂରଣ କରିବାପାଇଁ ଚେଷ୍ଟା କରିବି ।"

ମଧ୍ୟମଣି ଈଷତ୍ ହସି କହିଲେ, "ପ୍ରତିଶ୍ରୁତି ଦେବା ପରେ ଆପଣ ତାକୁ ରକ୍ଷା ନ କରିବାର ଆଶଙ୍କା ରହିଛି ମହାରାଜ । ପ୍ରଥମେ ସତ୍ୟ କରନ୍ତୁ ।"

ଜରାସନ୍ଧଙ୍କର ଆଶଙ୍କା ଦୃଢ଼ ହେଲା । ଏମାନେ ନିଶ୍ଚୟ ବ୍ରାହ୍ମଣ ନୁହଁନ୍ତି । ଛଦ୍ମବେଶୀ କେହି । କୌଣସି ଅଭିସନ୍ଧି ପୋଷଣ କରି ଏଠାକୁ ଆସିଛନ୍ତି । ଯାହା ହେଉ, ସେ ପ୍ରତିଶ୍ରୁତି ଦେଇ ସାରିଛନ୍ତି । ନାରାୟଣ ବାମନ ବେଶରେ ବଳିଙ୍କୁ ଛଳନା କଲେ । ବଳିଙ୍କୁ ପାତାଳଗାମୀ ହେବାକୁ ପଡ଼ିଲା । ମାତ୍ର ସେ ଇତିହାସରେ ସ୍ଥାନ ପାଇଲେ ତ । ଗୁରୁ ଶୁକ୍ରାଚାର୍ଯ୍ୟ ତାଙ୍କୁ ସେତେବେଳେ କେତେ ବାରଣ କରିଥିଲେ, ତାଙ୍କ କଥା ଶୁଣିଥିଲେ, ବଳିଙ୍କୁ ପାତାଳଗାମୀ ହେବାକୁ ପଡ଼ି ନ ଥାନ୍ତା । ମାତ୍ର ଏବେ ତ୍ରିଲୋକରେ ସେ ଯେଉଁ ଅକ୍ଷୟକୀର୍ତ୍ତିର ଅଧିକାରୀ ହୋଇଛନ୍ତି, ସେତକ ତାଙ୍କୁ ମିଳିଥାଆନ୍ତା କେଉଁଠୁ ?

ପରିଣାମ ଯାହା ହେଉ, ତାଙ୍କୁ ଆଉ ଥରେ ରସାତଳଗାମୀ ହେବାକୁ ପଡୁ, ସେ ନିଜର ପ୍ରତିଶ୍ରୁତିରୁ ଓହରିବେ ନାହିଁ । ନିଶ୍ଚୟ ସତ୍ୟ କରିବେ ।

ମଧ୍ୟମଣି ଏହା ପରେ ନିଜର ସାଥୀ ଦୁହିଁଙ୍କର ପରିଚୟ ପ୍ରକାଶ କରିଥିଲେ । ଜରାସନ୍ଧ ନିଜର ଜନ୍ମସିଦ୍ଧ ଶତ୍ରୁକୁ ନିକଟରେ ପାଇ ଚମକୃତ ହୋଇଥିଲେ । ଯାହାକୁ ଆୟତ୍ତ କରିବା ପାଇଁ ସେ ମଥୁରାରୁ ଦ୍ୱାରକା ପର୍ଯ୍ୟନ୍ତ ଧାଇଁ ବୁଲୁଛନ୍ତି, ସେଇ ଶତ୍ରୁ ଏବେ ଆପେ ଆପେ ଆସି ତାଙ୍କ ନିକଟରେ ଧରା ଦେଇଛି । ଜମ୍ବୁଦୀପର ଏ ପୁଣି ଜଣେ ଶ୍ରେଷ୍ଠବୀର । ବୀରତ୍ୱ ଯେ କେତେ ତାହା ତାଙ୍କ ଛଡ଼ା ଆଉ କିଏ ଅଧିକ ଜାଣେ ? ଏତେ ଦିନର ଅଭିପ୍ସା ତାଙ୍କର ଆଜି ପୂରଣ ହୋଇଯିବ ।

ବାସୁଦେବ କହିଲେ, "ଆମର ଏକମାତ୍ର କାମନା ଆପଣଙ୍କ ସହିତ ଯୁଦ୍ଧ । ଆମ ତିନିଜଣଙ୍କ ମଧ୍ୟରୁ ଆପଣ ଯାହାକୁ ହେଲେ ଜଣକୁ ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ରୂପରେ ବାଛି ନେଇ ପାରନ୍ତି ।"

ଜରାସନ୍ଧ ଦୃଷ୍ଟିରେ ତାଚ୍ଛଲ୍ୟ ଫୁଟି ଉଠିଲା । ତାଙ୍କ ସହିତ ଯୁଦ୍ଧ କରିବେ - ଏଇ ତିନୋଟି ଅପୋଗଣ୍ଡଙ୍କ ଭିତରୁ ଜଣେ । ସେଥିମଧ୍ୟରୁ ଦୁଇଜଣ ତ ମୂର୍ତ୍ତିମାନ ଦୁର୍ଭିକ୍ଷ । ତୃତୀୟ ଜଣକ ଟିକିଏ ନଜର କାଢ଼ିଲା ଭଳି ହେଲେ ମଧ୍ୟ କେତେବେଳଯାଏ ତାଙ୍କ ଗଦା ଆଗରେ ଠିଆ ହୋଇ ପାରିବ, ତା' ଭାବିବାର କଥା । ତେବେ ଅନ୍ୟାୟ ସେ କରିବେ ନାହିଁ । ତାକୁହିଁ ସେ ନିଜର ପ୍ରତିସ୍ପର୍ଦ୍ଧୀ ରୂପରେ ଗ୍ରହଣ କରିବେ, ଯାହାକୁ କୁହାଯାଉଛି ଦ୍ୱିତୀୟ ପାଣ୍ଡବ ।

ଭୀମସେନଙ୍କୁ ଦୂରକୁ ନେଇଯାଇ ବାସୁଦେବ ତାଙ୍କୁ ବୁଝାଉଥିଲେ,- ''ପ୍ରତିପକ୍ଷର ଦୁର୍ବଳତା ହିଁ ହେଉଛି ଜିଗୀଷୁର ଏକମାତ୍ର ଶକ୍ତି - ଏକଥା ଯେମିତି ନ ଭୁଲ ମଧ୍ୟମ ଭ୍ରାତ ।

ନିଜର ଶକ୍ତି ଉପରେ ଦ୍ୱିତୀୟ ପାଣ୍ଡବଙ୍କର ପ୍ରଚଣ୍ଡ ଆସ୍ଥା । ଜରାସନ୍ଧ ହୋଇପାରେ ଭାରତ-ଖଣ୍ଡର ଏକ ବିଶ୍ରୁତ ବୀର । ତେବେ ସେ ବି ଭୀମସେନ । ଶତ୍ରୁକୁ କେବେ ସେ ନିଜର ପୃଷ୍ଠ ଦେଖିବାର ସୁଯୋଗ ଦେଇ ନାହାନ୍ତି । ଆଜି ଜରାସନ୍ଧ ତାଙ୍କର ପ୍ରକୃତ ପରିଚୟ ପାଇବ ।

ରଙ୍ଗଭୂମିର ଆକାଶ ଯୁଯୁତ୍ସୁ ଦୁଇବୀରଙ୍କର ପଦୋତ୍‌ଥିତ ଧୂଳିପଟଳରେ ଆଚ୍ଛାଦିତ ହୋଇଯାଇଥିଲା । ମନେ ହେଉଥିଲା ଏକ ସୂକ୍ଷ୍ମନପର୍ଦ୍ଦା ସତେ ଯେମିତି କିଏ ପୃଥିବୀ ପୃଷ୍ଠରେ ଝୁଲାଇ ରଖିଛି । ତା'ରି ଭିତରୁ ଦେଖାଯାଉଥିଲା, ଯୁଦ୍ଧମାନ ଦୁଇ ବୀରଙ୍କର ଅସ୍ପଷ୍ଟ ଛାୟାମୂର୍ତ୍ତି । ଗଦାରେ ଗଦାରେ ଆଘାତ ଦ୍ୱାରା ତହିଁରୁ ବିଦ୍ୟୁତ୍ ଶିଖା ଝଲସି ଉଠୁଥିଲା । ଧାତବ ଟଙ୍କାରରେ ଦିଗ୍‌ବିଦିଗ ଧ୍ୱନିତ ହେଉଥିଲା । ସଂଗ୍ରାମ ଚାଲିଥିଲା ।

ଅନ୍ୟ ଦର୍ଶକମାନଙ୍କ ପରି ବାସୁଦେବ ଏବଂ ଅର୍ଜୁନ ମଧ୍ୟ ନୀରବରେ ଯୁଦ୍ଧର ଗତି ପ୍ରତି ଲକ୍ଷ୍ୟ ରଖି ଠିଆ ହୋଇଥିଲେ । ସେମାନଙ୍କର କିଛି କରିବାର ନ ଥିଲା । ଭୀମସେନଙ୍କର ଗଦାର ଆଘାତରେ ଜରାସନ୍ଧର ଗଦା ହସ୍ତଚ୍ୟୁତ୍ ହେବାରୁ ଯୋଦ୍ଧା ଦୁଇଜଣ ଏଥର ମଲ୍ଲ ଯୁଦ୍ଧରେ ପ୍ରବୃତ୍ତ ହେଲେ ।

କେତେବେଳେ ତଡ଼ିତ୍ ଗତିରେ ମଲ୍ଲଭୂମି ପରିକ୍ରମା କରୁ କରୁ ପରସ୍ପର ମୁଣ୍ଡରେ ଆଘାତ କରୁଛନ୍ତି ତ କେତେବେଳେ ବାହୁରେ ବାହୁ ଛନ୍ଦି, ବକ୍ଷରେ ବକ୍ଷ ଭିଡ଼ି ମଣ୍ଡଳାକାରରେ ଘୁରିବୁଲୁଛନ୍ତି । ବର୍ଦ୍ଧିତ ହୁଙ୍କାରରେ ରଣଭୂମି ମୁଖରିତ ହେଉଛି । କେତେବେଳେ ତଳେ ପଡ଼ି ଗଡ଼ାଗଡ଼ି ହେଉଛନ୍ତି ତ କେତେବେଳେ ପିଠିରେ ପିଠି ଲଗାଇ ଜଣେ ଜଣକୁ ମାଟିରେ ପକାଇବାକୁ ଚେଷ୍ଟାକରୁଛନ୍ତି । ରକ୍ତଧାର ବହି ଦୁଇ ଜଣ ଦେଖାଯାଉଛନ୍ତି ଦୁଇଟି ବସନ୍ତକାଳୀନ ପୁଷ୍ପିତ ପଳାସ ବୃକ୍ଷ ଭଳି ।

ରଣଭୂମିର ଆଖ ପାଖରେ ଯେତେ ବଡ଼ ବଡ଼ ବୃକ୍ଷଥିଲା ଦୁଇବୀର ଗୋଟିଏ ପରେ ଗୋଟିଏ ଉପାଡ଼ି ପରସ୍ପରକୁ ପ୍ରହାର କରୁଛନ୍ତି । ଦୁଇଟି ମତ୍ତକରୀ - ଯେମିତି ପରସ୍ପରକୁ ଆଘାତ କରିବା ନିମନ୍ତେ ବଦ୍ଧପରିକର ହୋଇ ବଜ୍ରତୁଲ୍ୟ ବୃଂହଣରେ ଗଗନ ପବନ ମୁଖରିତ କରି ଦିଅନ୍ତି, ଜରାସନ୍ଧ ଓ ଭୀମସେନଙ୍କ ସମ୍ମିତ ଆହ୍ବାନରେ ସେମିତି ମେଦିନୀ ଥରହର ହୋଇ କମ୍ପୁଚି ।

ଅନେକ ସମୟ ଅତିକ୍ରାନ୍ତ ହେଲା ପରେ ମଧ୍ୟ ଉଭୟ ରହିଛନ୍ତି ଅପରାଜେୟ । ଏଭଳି ଯଦି ଆଉ କିଛିକ୍ଷଣ ଚାଲେ, ତେବେ ଫଳାଫଳ କ'ଣ ହେବ, ସେ ବିଷୟରେ ବାସୁଦେବଙ୍କର ସନ୍ଦେହ ଆସୁଛି । ଯୁଦ୍ଧରେ ପ୍ରବୃତ୍ତ ହେବା ପୂର୍ବରୁ ସେ ଭୀମସେନଙ୍କୁ ଯାହା କହିଥିଲେ, ତାହା ସେ ନିଶ୍ଚୟ ଭୁଲିଯାଉଛନ୍ତି । ଅତି-ଆତ୍ମ-ପ୍ରତ୍ୟୟର ଏହାହିଁ ହେଉଛି ଶେଷ ପରିଣାମ ।

ବର୍ତ୍ତମାନ କୌଣସି ଉପାୟରେ ଭୀମସେନଙ୍କୁ ସଚେତନ କରାଇ ଦେବାକୁ ପଡ଼ିବ । ପ୍ରତ୍ୟେକର କୌଣସି ନା କୌଣସି ଦୁର୍ବଳତା ଥାଏ । ଜରାସନ୍ଧର ମଧ୍ୟ ଅଛି । ଭୀମସେନ ତାହା ଜାଣନ୍ତି । ମାତ୍ର ସଂଗ୍ରାମର ଅତି ଉତ୍ସାହରେ ତାହା ସେ ସ୍ମରଣକୁ ଆଣିପାରୁ ନାହାନ୍ତି ।

ଅବସ୍ଥା ଧୀରେ ଧୀରେ ଆୟତ୍ତର ବାହାରକୁ ଚାଲିଯାଉଛି । ରକ୍ତ ଏବଂ ସ୍ୱେଦରେ ଏକାକାର ହୋଇ ଭୀମସେନ ଆଷାଢ଼ର ପ୍ରଥମ ବାରିପାତରେ ଗିରିଗାତ୍ରରୁ ବାଷ୍ପ ଉଠିଲା ଭଳି ଘନ ଘନ ନିଃଶ୍ୱାସ ଛାଡ଼ୁଛନ୍ତି ଏବଂ ବାରମ୍ବାର ବାସୁଦେବଙ୍କ ଆଡ଼କୁ ଅନାଉଛନ୍ତି ।

ଏହି ସୁଯୋଗ । ବାସୁଦେବ ପାଖରେ ପଡ଼ିଥିବା ବୃକ୍ଷର କୋମଳ ଶିଖାଟିଏ ଧରି ଅନ୍ୟମନସ୍କ ଭାବରେ ଦୁଇଫାଳ କରି ଚିରିପକାଇଲେ ।

ଭୀମସେନଙ୍କ ମସ୍ତିଷ୍କରେ ବିଦ୍ୟୁତ୍‌ର ଚମକ ଭଳି ଜରା-ରାକ୍ଷସୀର ବୃତ୍ତାନ୍ତ ଖେଳିଗଲା । ବାସୁଦେବଙ୍କର ଦାୟିତ୍ୱ ଶେଷ ହେଲା ।

ଦ୍ୱିତୀୟ ପାଣ୍ଡବ ସଙ୍କେତ ଠିକ୍ ଧରିପାରିଛନ୍ତି ।

ଏଥର ଆରମ୍ଭ ହେଲା ଶେଷ ସଂଗ୍ରାମ ।

ରୁଦ୍ରମୂର୍ତ୍ତି ଧାରଣ କରି ଭୀମସେନ ଜରାସନ୍ଧଙ୍କୁ ଉତ୍ତାନଶାୟୀ କରି ପକାଇଲେ । ଜରାସନ୍ଧର ବାମପାଦ ଉପରେ ନିଜର ବିଶାଳ ପାଦ ସ୍ଥାପନ କରି ଡାହାଣପାଦ ଧରି ସବଳେ ଆକର୍ଷଣ କଲେ । ଜରାସନ୍ଧ ନିଜର ବିପଦ ବୁଝିପାରିଲା । ତେବେ ପ୍ରତିରୋଧର ସମସ୍ତ କ୍ଷମତା ତାହାର ଶେଷ ହୋଇଯାଇଥିଲା ।



# ଅଭିଶପ୍ତ ଗାନ୍ଧାର

ଦ୍ୱାରକାର ଆକାଶରେ ସୂର୍ଯ୍ୟ ଅସ୍ତ ଯାଉଥିଲେ । ଦିଗ୍‌ବଳୟ ତଳୁ ଧୂଳିଆ ମେଘ ଖଣ୍ଡେ କାହିଁ ବାହାରି ପଡ଼ି କାୟା ବିସ୍ତାର ଦ୍ୱାରା ସମଗ୍ର ଆକାଶରେ ଏକ ବିଷଣ୍ଣ ପରିବେଶ ସୃଷ୍ଟି କରିଥିଲା । ନୀଡ଼ବାହୁଡ଼ା ପକ୍ଷୀ କୂଳର ଉଦାସ କାକଳି ମଧ୍ୟରେ ଦ୍ୱାରକାର ରାଜପଥରେ ଛୁଟି ଚାଲିଥିଲା, ଗୋଟିଏ ରଥ । ଆରୋହୀ ମାତ୍ର ଦୁଇଜଣ । କେହି ରାଜପୁରୁଷ ହେବେ ପରା !

ରାଜଧାନୀକୁ ଏଭଳି ରାଜପୁରୁଷମାନଙ୍କର ଆଗମନ ଏକ ସାଧାରଣ ବ୍ୟାପାର । ସମଗ୍ର ଜମ୍ବୁଦ୍ୱୀପର ଦୃଷ୍ଟି ଆଜି ଏହି ସାଗରମେଖଳସମୃଦ୍ଧ ନଗରଟି ଉପରେ କେନ୍ଦ୍ରୀଭୂତ, ଯାହା ଏକଦା ଯାଦବମାନଙ୍କର ଆତ୍ମରକ୍ଷାର ଶେଷ ପ୍ରୟାସ ରୂପରେ ଗଢ଼ି ଉଠିଥିଲା । ଏହି ନଗରୀ ଆଜି ଅମରାବତୀକୁ ମଧ୍ୟ ନିନ୍ଦା କରିବାର ସାହସ ରଖେ ।

ସିଂହଦ୍ୱାରରେ ଅଶ୍ୱର ବଲ୍‌ଗା ସଂଯତ କରି ତରୁଣ ଆରୋହୀ ଲମ୍ଫ ପ୍ରଦାନପୂର୍ବକ ରଥରୁ ଅବତରଣ କରି ପ୍ରବୀଣ ରାଜପୁରୁଷଙ୍କୁ କହିଲେ, ଏଥର ଅବତରଣ କରନ୍ତୁ ମାତୁଳ ।''

ପ୍ରବୀଣ ରଥାରୋହୀ ନିଜର ବେଶବାସ ଉପରେ ଥରେ ସତର୍କ ଦୃଷ୍ଟିପାତ କରି ଓହ୍ଲାଇ ଆସୁ ଆସୁ ଚତୁର୍ଦ୍ଦିଗକୁ ବିରକ୍ତିପୂର୍ଣ୍ଣ ଦୃଷ୍ଟିରେ ଅବଲୋକନ କରି କହିଲେ, ''ଏ ମୁଁ କ'ଣ ଦେଖୁଛି ? ହସ୍ତିନାର ମଉଡ଼ମଣି ମାନଚକ୍ରବର୍ତ୍ତୀ ଦୁର୍ଯ୍ୟୋଧନଙ୍କ ନିମନ୍ତେ ଯାଦବରାଜ କୌଣସି ସମ୍ବର୍ଦ୍ଧନାର ଆୟୋଜନ କରିବାର ଶିଷ୍ଟତା ସୁଦ୍ଧା ରକ୍ଷାକରି ନାହାନ୍ତି ?''

ଦୁର୍ଯ୍ୟୋଧନ କହିଲେ, ''ଆମେ କିନ୍ତୁ ଏଠାକୁ ପ୍ରାର୍ଥୀ ଭାବରେ ଆସିଛେ, ମାତୁଳ ।''

ଯାଦବ-ମନ୍ତ୍ରୀ ଉଦ୍ଧବ ଦଳେ ରାଜକର୍ମଚାରୀଙ୍କୁ ନେଇ ହସ୍ତିନା ରାଜପୁତ୍ର ଦୁର୍ଯ୍ୟୋଧନ ଏବଂ ମନ୍ତ୍ରୀ ଶକୁନିଙ୍କୁ ପାଛୋଟି ନେବା ପାଇଁ ଆସୁଥିଲେ । ଶକୁନିଙ୍କର ଭ୍ରୂକୁଟି କୁଟିଳ ବିରକ୍ତିବ୍ୟଞ୍ଜକ ମୁଖମୁଦ୍ରା ଆଡକୁ ଅନାଇ ନମ୍ର କଣ୍ଠରେ ସେ କହିଲେ, ''ଯଦୁକୁଳ ତିଳକ ବଳରାମ ଏବଂ କୃଷ୍ଣ ବାସୁଦେବ-ଆପଣଙ୍କୁ ସ୍ୱାଗତ ଜଣାଉଛନ୍ତି ।''

ଗାନ୍ଧାର ଶକୁନି ରୁଷ୍ଟ କଣ୍ଠରେ ଉତ୍ତର ଦେଲେ- ''ସ୍ୱାଗତ ଜଣାଇବାର ଏଇ ଗୋପାଳୀୟ ରୀତିଟି କିନ୍ତୁ ଭାରି ଚମତ୍କାର !''

ଉଦ୍ଧବଙ୍କ ଭ୍ରୂକୁଟି ମଧ୍ୟ କୁଟିଳ ହୋଇ ଆସୁଥିଲା । ମାତ୍ର ସେ ସ୍ୱଭାବ ବିନୟ ମଧ୍ୟରେ ସମସ୍ତ ବିରକ୍ତିକୁ ଗୋପନ କରି କହିଲେ ଯଦୁପତି ବହୁକ୍ଷଣ ଧରି ଆପଣମାନଙ୍କୁ ଅପେକ୍ଷା କରି ବସିଛନ୍ତି । ମାର୍ଗରେ କୌଣସି ଅସୁବିଧା ହୋଇ ନାହିଁ ତ !

ଉଦ୍ଧବ, ଶକୁନି ଏବଂ ଦୁର୍ଯ୍ୟୋଧନଙ୍କୁ ନେଇ ମନ୍ତ୍ରଣା କକ୍ଷରେ ପହଞ୍ଚାଇ ଦେଲେ । ଯାଦବ ରାଜପୁରୁଷମାନେ ନିରାପଦ ଦୂରତ୍ୱରେ ରହିଯିବା ପରେ ଏଥର କେବଳ ଉଦ୍ଧବ ହିଁ ଉଭୟଙ୍କୁ ବାଟ ଦେଖାଇ ନେଇ ଆସୁଥିଲେ ।

ଦୁର୍ଯ୍ୟୋଧନ କହିଲେ, ''ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ଆସନ୍ନ ମହାଭାରତ ଯୁଦ୍ଧ ପୂର୍ବରୁ ମହାଲକ୍ଷ୍ମୀଙ୍କୁ ନିମନ୍ତ୍ରଣ ଜଣାଇବା ନିମନ୍ତେ ହିଁ ଆମର ଦ୍ୱାରକା ଆଗମନ । ଏହାଛଡ଼ା ଯଦୁପତିଙ୍କ ସହିତ ଯୁଦ୍ଧ ସମ୍ପର୍କୀୟ କେତେକ ପ୍ରୟୋଜନୀୟ ଆଲୋଚନା ମଧ୍ୟ କରିବାକୁ ହେବ । ମାତ୍ର ମୁଁ ଆଜି ଭୀଷଣ କ୍ଲାନ୍ତ ।''

ଶକୁନି ଦୁର୍ଯ୍ୟୋଧନଙ୍କ ଆଡ଼କୁ ଅନାଇଲେ । ତା'ପରେ ଧୀରେ ଧୀରେ କହିଲେ, ''ଆସନ୍ନ ମହାହବର ପ୍ରାକ୍-ମୁହୂର୍ତ୍ତରେ ଏସବୁ ଦୁର୍ବଳତା ଅବଶ୍ୟ ନିନ୍ଦନୀୟ । ତେବେ ତମେ ଆଜିପାଇଁ ବିଶ୍ରାମ କର ।''

ଉଦ୍ଧବ ଉଭୟଙ୍କୁ ମନ୍ତ୍ରଣା କକ୍ଷରେ ନେଇ ଉପସ୍ଥିତ କରାଇଦେଲେ । ବିଶାଳ କକ୍ଷର ସ୍ଥାନେ ସ୍ଥାନେ ସୁବର୍ଣ୍ଣର ଦୀପାବଳୀମାନ ଜଳି ଉଠିଥିଲା । ଗୋଟିଏ ସ୍ୱର୍ଣ୍ଣଖଚିତ ଉଚ୍ଚ ଆସନରେ ସୁଖାସନରେ ବସି ରହିଥିଲେ ଯାଦବଶ୍ରେଷ୍ଠ ବାସୁଦେବ । ଆସନର ପଶ୍ଚାତ ଦେଶରେ ଲଗାଯାଇଥିଲା ଗୋଟିଏ ନାତିବୃହତ୍ ଦର୍ପଣ, ତା'ର ଉଭୟ ପାର୍ଶ୍ୱରେ ରହିଛନ୍ତି ଦୁଇଟି ଶ୍ୱେତପ୍ରସ୍ତର ନିର୍ମିତ ପରୀ, ଯେଉଁମାନଙ୍କ ହାତରେ ଚାମର । ଆସନର ଗୋଟିଏ ପାର୍ଶ୍ୱରେ ଦଣ୍ଡାୟମାନା ସୁକ୍ଷୀନବସ୍ତ୍ରାବୃତା ଯବନୀ ଅଳସ ହସ୍ତରେ ଚାମର ବ୍ୟଜନ କରୁଥିଲା; ଯାହାର ମନ୍ଦ ପବନପାତରେ ବାସୁଦେବଙ୍କ ମୁକୁଟଶୀର୍ଷସ୍ଥ ମୟୂରଚନ୍ଦ୍ରିକା ଧୀରେ ଧୀରେ ହଲୁଥିଲା । ଅଦୂରରେ ଏକ ଅନୁଚ୍ଚ କାରୁକାର୍ଯ୍ୟମଣ୍ଡିତ କାଷ୍ଠାଧାର ଉପରେ ରଖାଥିଲା, ସ୍ୱଚ୍ଛ ସ୍ଫଟିକ ପାତ୍ରରେ ଶୀତଳ ଜଳ ।

ବାସୁଦେବ ଆଗନ୍ତୁକମାନଙ୍କ ଆଡ଼କୁ ଅନାଇ ଆସନ ତ୍ୟାଗ କଲେ ଏବଂ ପାହୁଣ୍ଡେ ଆଗେଇଯାଇ କହିଲେ, ''ବସୁଦେବନନ୍ଦନ କୃଷ୍ଣ କୌରବ ଚୂଡ଼ାମଣି ଦୁର୍ଯ୍ୟୋଧନ ଏବଂ ମନ୍ତ୍ରୀ ଗାନ୍ଧାରପୁତ୍ର ଶକୁନିଙ୍କୁ ସ୍ୱାଗତ ଜଣାଉଛି । ଆସନ୍ତୁ, ଆସନ ଗ୍ରହଣ କରନ୍ତୁ ।''

ଦୁର୍ଯ୍ୟୋଧନ ଯାଦବମାନଙ୍କର ଐଶ୍ୱର୍ଯ୍ୟକୁ ଈର୍ଷାତୁର ଦୃଷ୍ଟିରେ ନିରୀକ୍ଷଣ କରୁ କରୁ କହିଲେ- ''ମୁଁ କିନ୍ତୁ ଜଣାଇ ଦେଉଛି ଯେ, ଆଜି କୌଣସି ଆଲୋଚନାରେ ଭାଗ ନେବା ମୋ ପକ୍ଷରେ ସମ୍ଭବପର ନୁହେଁ ।''

ଶ୍ରୀକୃଷ୍ଣ ଉଦ୍ଧବଙ୍କ ଆଡ଼କୁ ଅନାଇଲେ । ଉଦ୍ଧବ କହିଲେ, ''ବିଶ୍ରାମର ବ୍ୟବସ୍ଥା ସମ୍ପୂର୍ଣ୍ଣ ହୋଇଛି । ଆପଣ ଅତିଥିଶାଳାକୁ ଆସନ୍ତୁ ।''

ଔପଚାରିକତା ପରେ ଦୁର୍ଯ୍ୟୋଧନ ଉଦ୍ଧବଙ୍କ ସହିତ ଚାଲିଗଲେ । କକ୍ଷରେ ରହିଗଲେ ଏକାକୀ ଶକୁନି । ଶ୍ରୀକୃଷ୍ଣ ତାଙ୍କ ଆଡ଼କୁ ଅନାଇ କହିଲେ- ''ଆପଣ କଣ କ୍ଳାନ୍ତ ହୋଇ ନାହାନ୍ତି, ମାତୁଳ !''

ଶକୁନି ତାଙ୍କ ଆଡ଼େ ଅନାଇଲେ । ତାଙ୍କର ଚକ୍ଷୁ ଗୋଲକ ଦପ୍ ଦପ୍ ହୋଇ ଜଳି ଉଠୁଥିଲା । ଦୁଇ ଗହଳ ଭ୍ରୂଲତା ତଳୁ ସର୍ପସୁଲଭ କ୍ରୂରଦୃଷ୍ଟିରେ ଶ୍ରୀକୃଷ୍ଣଙ୍କ ଆଡ଼କୁ ଅନାଇ ସେ କହିଲେ-

''କ୍ଳାନ୍ତି ! ଗାନ୍ଧାର ରାଜବଂଶର ଧ୍ୱଂସ ନିମନ୍ତେ ଏକଦା ଜଳି ଉଠିଥିଲା, ଯେଉଁ ସର୍ବନାଶୀ ଅଗ୍ନିଶିଖା, ତାହା ପ୍ରଶମନ ନ ହେବା ପର୍ଯ୍ୟନ୍ତ, ଏ ଜୀବନରେ ଶାନ୍ତି କାହିଁ ବାସୁଦେବ ? ତୁମେ ତ ସବୁ ଜାଣ ।''

କୁରୁମହିଷୀ ଗାନ୍ଧାରୀଙ୍କର ପିତୃକୁଳର କରୁଣ ପରିଣତିର ବିବରଣୀ ଆଜି ଜମ୍ବୁଦ୍ୱୀପର କାହାକୁ ଅଜଣା ? ମାନଧନ ଦୁର୍ଯ୍ୟୋଧନର ଏକ ଅଜବ୍ ଖିଆଲର ପୂର୍ତ୍ତି ନିମନ୍ତେ ଗାନ୍ଧାର-ରାଜବଂଶର ପ୍ରତ୍ୟେକ ପୁରୁଷ କିଭଳି ଗୋଟିଏ ପରେ ଗୋଟିଏ ଅକାଳରେ ଝଡ଼ିପଡ଼ିଥିଲେ, ସେ କଥା ତଏବେ ବି ଇତିହାସ ହୋଇଯାଇ ନାହିଁ । ନିଷ୍ଠୁରତାର ସେହି ଜଘନ୍ୟ ବ୍ୟାପାରକୁ ଭୁଲିଥିଲେ ଅବା ଭୁଲିଥିବେ ସ୍ୱୟଂ ଦୁର୍ଯ୍ୟୋଧନ-ଏହାର ନାୟକ । କିମ୍ବା ବିଷବୈଦ୍ୟର ତୀବ୍ର ଔଷଧି ବିଷଧର ସର୍ପକୁ ମନ୍ତ୍ରମୁଗ୍ଧ କଲାଭଳି ଶକୁନି ବୁଦ୍ଧିର ଯାଦୁରେ ତାହାତୁ ଉଦ୍ଧ କରି ଦେଇଛନ୍ତି !

ବାସୁଦେବ ଅବା ଏହାକୁ ଭୁଲିବେ କିପରି ?

ଶକୁନି କହୁଥିଲେ; ''ପିତା ଭ୍ରାତା ବନ୍ଧୁ ସ୍ୱଜନ ଯାହାର ମୁଠାଏ ଅନ୍ନ ନିମନ୍ତେ ତିଳ ତିଳ ହୋଇ ପ୍ରାଣ ହାରନ୍ତି; ତାର ଜୀବନରେ କ୍ଳାନ୍ତି ତ ଶୋଭାପାଏ ନା । ଯେ ପର୍ଯ୍ୟନ୍ତ ସେ ଏହି ନାରକୀୟ ଘଟଣାର ପ୍ରତିଶୋଧ ନ ନେଇଛି, ତାକୁ ସ୍ୱସ୍ତି ମିଳିବ କୁଆଡୁ ?

ଶ୍ରୀକୃଷ୍ଣ ଶକୁନିଙ୍କ ସ୍ୱଭାବ ଭଲଭାବରେ ଜାଣନ୍ତି । ତାଙ୍କର ମାନସିକ ଅବସ୍ଥା ମଧ୍ୟ ତାଙ୍କୁ ଅଜ୍ଞାତ ନୁହେଁ । ତଥାପି ସେ କହିଲେ, 'ପ୍ରତିଶୋଧ କେବଳ ଜିଘାଂସା ବଢ଼ାଏ ମହାମନ୍ତ୍ରୀ ।''

ଶକୁନି ଅନ୍ୟମନସ୍କ ଭାବେ ଉତ୍ତର ଦେଲେ- ''ତମେ କହିପାରିବ ବାସୁଦେବ, କି ଦୋଷ କରିଥିଲା ଗାନ୍ଧାରସେନ ? କୁରୁକୁଳର ଏକ ଅନ୍ଧ ଅସମର୍ଥ ବ୍ୟକ୍ତିକୁ କନ୍ୟା ଦେବା କ'ଣ ତା'ର ଏତେବଡ଼ ଅପରାଧ ? କନ୍ୟାର ଅମାବାସ୍ୟାରେ ଜନ୍ମ କ'ଣ ତା'ର ସ୍ୱକୃତ ?''

ବାସୁଦେବ ଏହା ଜାଣନ୍ତି । ବିବାଦ ତ ଆରମ୍ଭ ହୋଇଥିଲା ସେଇ ଝିମାଣି ଖେଳରୁ । ବଳଦର୍ପୀ ଭୀମସେନ ଗୋଟିଏ ପରେ ଗୋଟିଏ କୁରୁ ନନ୍ଦନଙ୍କୁ ଭୂମିରେ କଚାଡ଼ି ଅସ୍ତବ୍ୟସ୍ତ କରି ପକାଉଥିଲା । ବଳରେ ନପାରି ଦୁର୍ଯ୍ୟୋଧନ ଭୀମସେନର ଜନ୍ମକୁ ଲାଞ୍ଛିତ କରିବାକୁ ଚାହିଁଥିଲା, ତାକୁ ପବନ ପୁତ୍ର ବୋଲି ସମ୍ବୋଧନ କରି । ତା'ପରେ ତ ତାଙ୍କରି ପରାମର୍ଶରେ ଦୁର୍ଯ୍ୟୋଧନ ସମ୍ବୋଧିତ ହୋଇଥିଲା ଭୀମସେନ ଦ୍ୱାରା 'ଗୋଳକ-ପୁତ୍ର' ରୂପେ ।

କନ୍ୟାର ବୈଧବ୍ୟ ଦୋଷ ଦୂର କରିବା ନିମନ୍ତେ ସ୍ନେହଶୀଳ ପିତା ଗାନ୍ଧାରୀଙ୍କୁ ବିବାହ ଦେଇଥିଲେ ଗୋଟିଏ ସାହାଡ଼ା ବୃକ୍ଷ ସହିତ । ତାହା ପୁଣି ଧୃତରାଷ୍ଟ୍ରଙ୍କ ସହ ବିବାହର ପୂର୍ବରୁ । ଏଥିରେ ଗାନ୍ଧାରୀଙ୍କର ଚରିତ୍ର ଦୋଷ କିଭଳି ହେଲା, ତାହା ସେ ବୁଝିପାରି ନଥିଲେ ।

ଦୁର୍ଯ୍ୟୋଧନର ଅହଙ୍କାର ଆହତ ହୋଇଥିଲା । ଗୋଳକପୁତ୍ରର ପ୍ରତିବାଦ ତା'ର ସମସ୍ତ ସମ୍ମାନକୁ ଧୂଳିରେ ଲୋଟାଇ ଦେଇଥିଲା । ଗାନ୍ଧାରସେନର ଚକ୍ରାନ୍ତ ଯେ କୁରୁବଂଶର ଶୁଭ୍ର ଯଶରେ ଲାଗି କାଳକୁ ଏହି କଳଙ୍କର କାଳିମା ବୋଳି ଦେଇଥିଲା, ଏଥିରୁ ମୁକ୍ତି ମିଳିବ କେବଳ ଗାନ୍ଧାର ରାଜବଂଶର ଅବଲୁପ୍ତିରେ, ଏଥିରେ ତା'ର ସନ୍ଦେହ ନଥିଲା । ପ୍ରତିହିଂସାର ଅନଳ ହୁ ହୁ ହୋଇ ତାହାର ମନରେ ଜଳି ଉଠିଥିଲା ।

ଦୁର୍ଯ୍ୟୋଧନର ନିର୍ଦ୍ଦେଶରେ ତା'ପରେ ଲୌହଗିରିରେ ନିର୍ମିତ ହୋଇଥିଲା ଏକ ନିଶ୍ଛିଦ୍ର ପାଷାଣ କାରା, ସୂର୍ଯ୍ୟକିରଣ ତ ଦୂରର କଥା ସାମାନ୍ୟ ବାୟୁ ଟିକିଏ ମଧ୍ୟ ଯାହା ଭିତରକୁ ଯିବାର କୌଣସି ଉପାୟ ନଥିଲା । ଗାନ୍ଧାର ରାଜବଂଶର ସମସ୍ତ ପୁରୁଷଙ୍କର ତାହାହିଁ ହୋଇଥିଲା ଉପଯୁକ୍ତ ବାସସ୍ଥାନ ।

ଜମ୍ବୁଦ୍ୱୀପର ପରାକ୍ରମଶାଳୀ ଚକ୍ରବର୍ତ୍ତୀ ଶାସକ ଦୁର୍ଯ୍ୟୋଧନ ବିରୁଦ୍ଧରେ କିଏ ବା ସ୍ୱର ଉତ୍ତୋଳନ କରନ୍ତା ? ଭଗିନୀ ଗାନ୍ଧାରୀ ? ଅନ୍ଧ ଅକର୍ମଣ୍ୟ ରାଜା ଧୃତରାଷ୍ଟ୍ର, ଯେ

କି ଗୋଟିଏ ସଖୀ ଜଣେଇ ହୋଇ ହସ୍ତିନାର ସିଂହାସନ ମଣ୍ଡନ କରିଥିଲେ ? ନା ପିତାମହ ଭୀଷ୍ମ ? ନା କେହି ପାରି ନଥିଲେ । ହୁଏତ ଅନ୍ଧକୂପ ମଧ୍ୟରେ ଏହିପରି ତିଳ ତିଳକରି ଯନ୍ତ୍ରଣାୟିତ ଜୀବନ ଯାପନ କରିବାହିଁ ଥିଲା ଗାନ୍ଧାର ରାଜକୁଳର ଭାଗ୍ୟ-ଭବିତବ୍ୟ ।

ଶକୁନି ବାରମ୍ବାର ଏହାର କାରଣ ଅନ୍ୱେଷଣ କରିବାକୁ ଯାଇ ନିଜକୁ ଅଭିସମ୍ପାତ ଦେଇଛନ୍ତି । ନିଜର ବିଡ଼ମ୍ବିତ ନିୟତିକୁ ଭର୍ତ୍ସନା କରିବାକୁ ଯାଇ ସେ ତା'ର ଭୟଙ୍କର ରୂପରେ ଦେଖିବାକୁ ପାଇଛନ୍ତିପ୍ରିୟତମ ଭାଗିନେୟ ଦୁର୍ଯ୍ୟୋଧନକୁ, ଯାହାର କୂଟ କୌଶଳ ରାହୁଭଳି ଗାନ୍ଧାର ରାଜକୁଳର ସୌଭାଗ୍ୟ-ରବିକୁ ଗ୍ରାସ କରିଥିଲା ।

ଶକୁନିଙ୍କର ମନେପଡ଼େ ଶାସ୍ତ୍ରବାକ୍ୟ । ଅଭିଶପ୍ତ ଦେବତାମାନେ ହିଁ ରାଜକୁଳରେ ଜନ୍ମଗ୍ରହଣ କରନ୍ତି, ସୁଖ ସ୍ୱାଚ୍ଛନ୍ଦ୍ୟର ମାନବୀୟ ରୂପ ସହିତ ପରିଚିତ ହେବାକୁ । ଅଥଚ ଦୁଃଖ ଏବଂ ଯନ୍ତ୍ରଣାର ଏଭଳି ଦୟନୀୟ ଜୀବନ ଯେ କେଉଁ ବିଧାତା ସେମାନଙ୍କର ଲଲାଟରେ ଲେଖିଦେଲେ, ସେ କଥା କିଏ କହିବ ? ଏହା ଅପେକ୍ଷା ଯେ, ଜଣେ ଭିକ୍ଷାଶୀର ଜୀବନ କେତେ ଲୋଭନୀୟ, ସେକଥା କିଏ ନ ଜାଣେ ?

କିଏ ବୁଝିଲା ଅସହାୟ ମାନବାତ୍ମାର କରୁଣ ବିଳାପର କଥା ? ଶକ୍ତି ଆଉ ସାମର୍ଥ୍ୟର ଲେଖନୀରେତ ଲେଖାହୁଏ ଇତିହାସରେ ବିଜେତାପୁରୁଷମାନଙ୍କର ଜୟଯାତ୍ରାର କାହାଣୀ । ବିଜୀତର କଥା କିଏ ଚିନ୍ତାକରେ ?

ବାସୁଦେବ ନୀରବ ହୋଇ ବସି ଶକୁନିଙ୍କର ଅସ୍ଥିରତାକୁ ଲକ୍ଷ୍ୟ କରୁଥିଲେ । କ'ଣ କହି ସେ ତାଙ୍କୁ ସାନ୍ତ୍ୱନା ଦେବେ, ଏହା ସେ ଭାବିପାରୁ ନ ଥିଲେ ।

ହଠାତ୍ ଶକୁନି ଆସନ ତ୍ୟାଗକରି ଠିଆହେଲେ । ବିଶାଳ କକ୍ଷରେ ଇତସ୍ତତଃ ପଦଚାରଣ କରୁ କରୁ ନିଜ ମନକୁ ଯେପରି କହୁଥିଲେ, ''ସ୍ଥିର ହୁଅ ପିତା । ଆଉ ବେଶି କାଳ ତମକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ । କୁରୁକୁଳର ରକ୍ତାଞ୍ଜଳିରେ ମୁଁ ତୁମକୁ ତର୍ପଣ କରିବି ।''

ବାସୁଦେବ ଅଗତ୍ୟା ଡ଼ାକିଲେ, ''ମାତୁଳ ! ଗାନ୍ଧାର ରାଜପୁତ୍ର !''

ଶକୁନି ତଡ଼ିତ୍ ବେଗରେ ପଛକୁ ଫେରି ଚାହିଁଲେ । କ୍ରୁଦ୍ଧକଣ୍ଠରେ କହିଲେ, ''ତମେ କ'ଣ ଜାଣ ନାହିଁ ବାସୁଦେବ, ଗାନ୍ଧାର ରାଜବଂଶ ଧରାପୃଷ୍ଠରୁ ବହୁ କାଳରୁ ବିଲୁପ୍ତ ହୋଇଛି ବୋଲି ? ତମ ସମ୍ମୁଖରେ ଆଜି ଯେ ଦଣ୍ଡାୟମାନ, ସେ ଏକ ପ୍ରତିହିଂସାପରାୟଣ ପ୍ରେତାତ୍ମା, ଗାନ୍ଧାର ରାଜକୁଳର ପ୍ରତିନିଧି ସ୍ୱରୂପ ସେ ଆସିଛି

ଅନ୍ୟାୟର ପ୍ରତିକାର କରିବାକୁ । ଯେଉଁମାନେ ତା'ର ଭାଇ ବନ୍ଧୁ ସୋଦରଙ୍କୁ ଲାଞ୍ଛିତ କରିଛନ୍ତି ସେଇମାନଙ୍କ ରକ୍ତରେ ପିତୃପୁରୁଷଙ୍କର ତର୍ପଣ କରିବାକୁ ।''

ଶକୁନିଙ୍କ ହୃଦୟରେ ଯେଉଁ ତୀବ୍ର ପ୍ରତିହିଂସାର ଅନଳ ଦାଉ ଦାଉ ହୋଇ ଜଳୁଛି କୌଣସି ପ୍ରକାରର ଶାନ୍ତି-ବାରି ତାକୁ ପ୍ରଶମନ କରି ପାରିବ ନାହିଁ । ହୁଏତ ତୀବ୍ର ଭାବାବେଗକୁ ପ୍ରକାଶ କରିଦେଲେ ହିଁ ସେ ଆପେ ଆପେ ଶାନ୍ତ ହେବେ । ବାସୁଦେବ ତେଣୁ ଅପେକ୍ଷା କରୁଥିଲେ ।

ଏବେ ତ ମହାଭାରତ ସମର ଆରମ୍ଭ ହେବା ନିଶ୍ଚିତ ହୋଇ ସାରିଛି । କିଛି ଦିନ ପୂର୍ବରୁ ଅଗ୍ରପାଣ୍ଡବ ଯୁଧିଷ୍ଠିର ଯୁଦ୍ଧ ଏଡ଼ାଇବା ନିମନ୍ତେ ମାତ୍ର ପାଞ୍ଚଖଣ୍ଡ ପଡ଼ା ମାଗି ବାସୁଦେବଙ୍କୁ କୌରବ-ରାଜସଭାକୁ ପଠାଇଥିଲେ । ଦୁର୍ଯ୍ୟୋଧନ ରାଜି ଥିଲେ ଦୁଇଖଣ୍ଡ ପଡ଼ା ଦେବା ନିମନ୍ତେ । ତାହା ହେଲେ ହୁଏତ ଯୁଧିଷ୍ଠିର ସେତିକିରେ ସନ୍ତୁଷ୍ଟ ରହି ଥାଆନ୍ତେ ।

ମାତ୍ର ଶକୁନି ତା' କୋଉ କରାଇଦେଲେ ? ତାଙ୍କରି ପରାମର୍ଶରେ ତ ଦୁର୍ଯ୍ୟୋଧନ ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଦେବେ ନାହିଁ ବୋଲି ନିଷ୍ପତ୍ତି ଗ୍ରହଣ କଲେ ।

ଶକୁନି ତାଙ୍କୁ ସ୍ପଷ୍ଟ ଭାବରେ ଜଣାଇ ଦେଇଥିଲେ, ଶ୍ରୀକୃଷ୍ଣଙ୍କ ଭଳି ମାୟାବୀ ଏବଂ ଚରିତ୍ରହୀନ ବ୍ୟକ୍ତିର ପ୍ରସ୍ତାବ ଉପରେ ଭରସା କରି କୌଣସି ରାଜକୀୟ ନିଷ୍ପତ୍ତି ନିଆଗଲେ, ତାହା କୁରୁକୁଳର ପତନକୁ ଡାକି ଆଣିବ । ଗୋପନରେ ଶ୍ରୀକୃଷ୍ଣଙ୍କୁ ମଧ କହିଥିଲେ, ''ଧର୍ମସଂସ୍ଥାପନାର ଇଏ ତୁମର କେଉଁ ନୂତନ କୌଶଳ ଚକ୍ରୀ ?''

ଆଲୋଚନା ବ୍ୟର୍ଥ ହୋଇ ଯାଇଥିଲା । ଶ୍ରୀକୃଷ୍ଣ ଶୂନ୍ୟହାତରେ ଫେରି ଆସିବା ପରେ ଯୁଦ୍ଧ ବ୍ୟତୀତ ଆଉ କୌଣସି ଉପାୟ ମଧ ନ ଥିଲା ।

ବାସୁଦେବ ସମୟ ସମୟରେ ଦୁର୍ଯ୍ୟୋଧନଙ୍କ ଉପରେ ଶକୁନିଙ୍କର ଅଖଣ୍ଡ ପ୍ରଭାବ ସମ୍ପର୍କରେ ଚିନ୍ତାକରି ବିସ୍ମିତ ହୁଅନ୍ତି । ଶକୁନି ଯେ ଅତ୍ୟନ୍ତ ପ୍ରତ୍ୟୁତ୍ପନ୍ନମତି ଏବଂ ପଣ୍ଡିତ, ଜ୍ଞାନୀ ବ୍ୟକ୍ତି, ଏହା ତାଙ୍କର ଅତି ବଡ଼ ଶତ୍ରୁ ମଧ ସ୍ୱୀକାର କରିବ । ନଚେତ୍ ଗାନ୍ଧାର ରାଜକୁଳର ଶେଷ ଦୀପଶିଖା ହୁଏତ ସେଇ ପାଷାଣ କାରା ମଧରେ ଅସହାୟ ଭାବରେ ଲିଭିଯାଇ ଥାଆନ୍ତା ।

ସାମାନ୍ୟ ଗୋଟିଏ ଘଟଣାରୁ ହିଁ ଶକୁନିଙ୍କର ଭାଗ୍ୟାକାଶରୁ ସମସ୍ତ ଅନ୍ଧକାର ଘୁଞ୍ଚି ଯାଇଥିଲା । ବିଶାଳ ଏକ ବଟବୃକ୍ଷ ତଳେ ଦୁର୍ଯ୍ୟୋଧନ ସେଦିନ ପ୍ରାକୃତିକ କ୍ରିୟା ସମାପନ କରୁଥିଲେ । ବଟବୃକ୍ଷର ବିଶାଳତା ଏବଂ ଏହାର ବୀଜର କ୍ଷୁଦ୍ରତାର ଏକ ତୁଳନାତ୍ମକ ବିଚାର ତାଙ୍କୁ ସ୍ମେରମୁଖ କରି ପକାଇଥିଲା । ରାଜାଙ୍କୁ ହସିବାର ଦେଖି ଅଦୂରବର୍ତ୍ତିନୀ ପରିଚାରିକା ମଧ ହସି ପକାଇଥିଲା ।

ସେଇହେଲା କାଳ । ଦୁର୍ଯ୍ୟୋଧନ ତାହାର ହସିବାର କାରଣ ପଚାରିଲେ । ପରିଚାରିକା ଚତୁର୍ଦ୍ଦିଗରେ ଅନ୍ଧକାର ଦେଖୁଥିଲା ବେଳେ ରାଜରୋଷରୁ ଉଦ୍ଧାର ପାଇବାର ଉପାୟ ଅପ୍ରତ୍ୟାଶିତ ଭାବରେ ତାକୁ ଦେଖାଇ ଦେଇଥିଲେ ଶକୁନି ।

ଶକୁନିଙ୍କର ଭାଗ୍ୟାକାଶ ଆଶାର ଅରୁଣ କିରଣରେ ଝଲମଲ କରି ଉଠୁଥିବା ବେଳେ ଦୁର୍ଯ୍ୟୋଧନର ଭାଗ୍ୟାକାଶ କ୍ରୂର ଶନିଙ୍କର ପିଙ୍ଗଳ ଦୃଷ୍ଟିଦ୍ୱାରା ଅନ୍ଧକାରାଚ୍ଛନ୍ନ ହେବାକୁ ଆରମ୍ଭ କରିଥିଲା, ସେଇ ଦିନଠାରୁ । ଶକୁନି ମୁକ୍ତି ପାଇଥିଲେ ଏବଂ ବୁଦ୍ଧିର ଚମତ୍କାର ଖେଳ ଦେଖାଇ ଦୁର୍ଯ୍ୟୋଧନଙ୍କର ପ୍ରଧାନ ପରାମର୍ଶଦାତାର ଆସନ ଅଧିକାର କରି ବସିଥିଲେ ।

ହୃଦୟରେ କିନ୍ତୁ ତାଙ୍କର ସଂଗୁପ୍ତ ହୋଇ ରହିଥିଲା, କୁରୁବଂଶର ଧ୍ୱଂସ କାମନା । ତା' ପରେ ତ ବାସୁଦେବଙ୍କ ସହିତ ଶକୁନିର ବାରମ୍ବାର ସାକ୍ଷାତ୍ ହୋଇଛି । ଶକୁନି ତାଙ୍କୁ ଭଲ ଭାବରେ ବୁଝାଇ ଦେଇଛନ୍ତି, ବାସୁଦେବ ଧର୍ମସ୍ଥାପନ ନିମନ୍ତେ ଯେଉଁ ମହାଯଜ୍ଞ ଆରମ୍ଭ କରିବାକୁ ଯାଉଛନ୍ତି, ଶକୁନି ନିଜେ ହେବେ ସେହି ଯଜ୍ଞର ହୋତା । କୌତୁକ ଛଳରେ ଦିନେ ତାଙ୍କୁ ପଚାରିଥିଲେ ଶ୍ରୀକୃଷ୍ଣ- "ଆପଣଙ୍କର ଏହି ବିଚିତ୍ର ଆଚରଣ କେଉଁ ଶାସ୍ତ୍ରାନୁମୋଦିତ ମାତୁଳ ?"

ବକ୍ର ହସ ହସି ପ୍ରତ୍ୟୁତ୍ପନ୍ନମତି ଶକୁନି ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ, "ଯେଉଁ ଶାସ୍ତ୍ରର ନିର୍ଦ୍ଦେଶରେ କଂସର ନିଧନ ହୋଇଛି, ଠିକ୍ ସେଇ ଶାସ୍ତ୍ର । ତମେ ମୋତେ ଆଉ ଶାସ୍ତ୍ରର କଥା କୁହ ନାହିଁ ଗୋବିନ୍ଦ ।"

ବାସୁଦେବ ତଥାପି କହିଥିଲେ, "କିନ୍ତୁ କୌରବମାନେ ତମର ଏକାନ୍ତ ଆପଣାର ।" ଶକୁନି ଉତ୍ତର ଦେଲେ, "ଆଉ ପାଣ୍ଡବମାନେ କ'ଣ ମୋର ପର ? ପୁଣି ପର ଆପଣା ବିଚାର ତ ଲଘୁଚିତ୍ତ ବ୍ୟକ୍ତିର କାର୍ଯ୍ୟ, ଏ ଶାସ୍ତ୍ରୀୟ ନିର୍ଦ୍ଦେଶ କ'ଣ ତମେ ବିସ୍ମୃତ ହେଉଛ ?"

ଶ୍ରୀକୃଷ୍ଣ ନୀରବ ରହିଥିଲେ । ବସ୍ତୁତଃ ଶକୁନି ଯେ ତାଙ୍କର କାର୍ଯ୍ୟକୁ କେତେ ସରଳ କରି ଦେଉଛନ୍ତି, ଏହା ସମୟ ସମୟରେ ତାଙ୍କୁ ଭାରି ବିସ୍ମିତ କରୁଥିଲା ।

ମନ୍ତ୍ରୀତ୍ୱର ସୁଯୋଗ ନେଇ ଶକୁନି ଯେମିତି ପଦେ ପଦେ ଅଭିମାନୀ ଦୁର୍ଯ୍ୟୋଧନର ଅହଙ୍କାରକୁ ଦେଜିବାରେ ଲାଗିଥିଲେ, ପାଣ୍ଡବମାନେ ହିଁ ହେଲେ ଏହାର ପ୍ରଥମ ଶିକାର । ଶୁଭାକାଂକ୍ଷୀ ମାତୁଳ ସ୍ନେହାସ୍ପଦ ଭାଗିନେୟଙ୍କୁ ଭଲ ଭାବରେ ବୁଝାଇ ଦେଇଥିଲେ, ବଳବାନ୍ ଶତ୍ରୁ ଆଉ ସସର୍ପ ଗୃହ ମଧ୍ୟରେ ଆଦୌ କୌଣସି ପାର୍ଥକ୍ୟ ନାହିଁ । ଯଶପ୍ରାର୍ଥୀ ରାଜା ତେଣୁ ଏମାନଙ୍କୁ ଛଳେ ବଳେ କୌଶଳେ ବିନାଶ କରିବା ଆବଶ୍ୟକ ।

ଦୁର୍ଯ୍ୟୋଧନର ଉଚ୍ଚାକାଂକ୍ଷା ତ ଶୁଖିଲା ପାଳଗଦାଭଳି କେବଳ ସାମାନ୍ୟ ଅଗ୍ନି ସଂଯୋଗର ଅପେକ୍ଷାରେ ରହିଥିଲା । ଶକୁନି ତାହା ସୁଚାରୁରୂପେ ଶେଷ କରିବା ଫଳରେ ଏହାର ପ୍ରଥମ ବଳି ହେଲା ଭୀମସେନ ।

ଶକୁନିର ପରାମର୍ଶରେ ତାକୁ ବିଷ ଲଡୁ ଖୁଆଇ ଶେଷକରି ଦେବାର ଚକ୍ରାନ୍ତ ହେଲା । କଥା ସେତିକିରେ ଶେଷ ହେଲା ନାହିଁ । ପାଣ୍ଡବମାନଙ୍କୁ ସମୂଳେ ବିନାଶ କରିବାର ଯୋଜନାବଦ୍ଧ ରୂପ ନିଆଗଲା, ଏକ ସୁଦୃଶ୍ୟ ଝିମାଣିଶାଳ ନିର୍ମାଣ କରାଯାଇ । ଧୃତରାଷ୍ଟ୍ରଙ୍କ ପରାମର୍ଶରେ ପାଣ୍ଡବମାନେ ସେଠାରେ ଯାଇ ବସବାସ କରୁଥିବା ସମୟରେ ତହିଁରେ ଅଗ୍ନି ସଂଯୋଗ କରି ଦିଆଗଲା । ପାଣ୍ଡବମାନେ ଯେ ତଥାପି ବଞ୍ଚି ରହିଲେ; ଏହାକୁ ଭାଗ୍ୟ ଦେବତାର ଅକୃପଣ ହାତର ଦାନ ବ୍ୟତୀତ ଆଉ କ'ଣ କୁହାଯିବ ?

ପାଣ୍ଡବମାନେ ଯେତେବେଳେ ଭାଗ୍ୟର ଚକ୍ରାନ୍ତରେ ଯାଯାବର ଭଳି ଏଠୁ ସେଠିକି, ଅରଣ୍ୟ ଜନପଦ ପରିକ୍ରମା କରି ବୁଲୁଥିଲେ, ଇନ୍ଦ୍ରପ୍ରସ୍ଥ ଯେତେବେଳେ ସେମାନଙ୍କର ତିରୋଧାନରେ ଉତ୍ସବମୁଖର ହୋଇ ଉଠିଥିଲା, ସେତିକିବେଳେ ଶକୁନି ସହିତ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍ ହୋଇଥିଲା । ଶକୁନି ଗଭୀର ଜଳର ମାଛ । ସବୁ ସେ କରୁଥିଲେ ପାଣ୍ଡବ ବିନାଶର ଯେଉଁ ମହାହବ ସେଦିନ ଇନ୍ଦ୍ରପ୍ରସ୍ଥରେ ଆରମ୍ଭ ହୋଇଥିଲା, ଦୁର୍ଯ୍ୟୋଧନ ମାତ୍ରକ ସେଇ ଯୁଦ୍ଧର ସେନାପତିର ଆସନରେ ବସିଥିଲେ, ମାତୁଳ ଶକୁନିଙ୍କର ନିର୍ଦ୍ଦେଶରେ । ବାହାରକୁ ଅନ୍ତତଃ ତାହା ହିଁ ଦେଖା ଯାଉଥିଲା ।

ମାତ୍ର ନେପଥ୍ୟ ନାୟକଙ୍କୁ ଚିହ୍ନିବା ନିମନ୍ତେ ଶ୍ରୀକୃଷ୍ଣଙ୍କୁ କୌଣସି ଅସୁବିଧା ହୋଇ ନ ଥିଲା । ତେଣୁ ତାଙ୍କ ସହିତ ସାକ୍ଷାତ୍ ହେବାମାତ୍ରେ ଶ୍ରୀକୃଷ୍ଣ ସେଇ ପ୍ରଶ୍ନ ହିଁ ଉଠାଇଥିଲେ । ଶକୁନିଙ୍କ ପ୍ରଶ୍ନ କଲେ- "ଏ ପୁଣି ତୁମେ କ'ଣ କରିବାକୁ ଯାଉଛ ମାତୁଳ ? ଶକୁନି ଚିରଦିନ ରହସ୍ୟମୟ । ଶାଣଦିଆ ବାଙ୍କ ଛୁରିଭଳି ତେନାଏଁ ହସରେ ନିଜର ସ୍ୱଭାବ ଗମ୍ଭୀର ମୁଖମଣ୍ଡଳକୁ ମଣ୍ଡାଇ ଦେଇ ସେ କହିଥିଲେ, ଇଏ ତ ଆରମ୍ଭ ମାତ୍ର । ତମେ ନୀରବରେ ଶକୁନିର ବୁଦ୍ଧିର ଖେଳକୁ ଦେଖିଯାଅ ବାସୁଦେବ ।"

ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ହୋଇଥିଲେ । ପାଣ୍ଡବମାନଙ୍କୁ ଗୃହହରା, ରାଜ୍ୟହରା କରି ଯେଉଁ ଚକ୍ରାନ୍ତର ଶେଷ ହୋଇନାହିଁ, ତାର ପରିସମାପ୍ତି ହେବ ସେମାନଙ୍କର ଚିର ବିଦାୟରେ । ତଥାପି ସେ ଶକୁନିଙ୍କୁ କହିଥିଲେ, "ପାଣ୍ଡବମାନେ ଅସ୍ତମିତ ହୋଇଗଲା ପରେ ଆଉ ବା ଏସବୁର ପ୍ରୟୋଜନ କ'ଣ ? କୁରୁକୁଳ ତ ଏଥର ନିଷ୍କଣ୍ଟକ ।

ଶକୁନି ମର୍ମଭେଦୀ ଦୃଷ୍ଟିରେ ଶ୍ରୀକୃଷ୍ଣଙ୍କ ଆଡକୁ ଦଣ୍ଡେ ଅନାଇଲେ । ତା' ପରେ ଭାବଲେଶ ହୀନ ନିର୍ଲିପ୍ତ ସ୍ୱରରେ କହିଲେ, "ଅସ୍ତ ଏବଂ ଉଦୟ ତ ସଂସାରର ଏକ

ସାଧାରଣ ନିୟମ । ପାଣ୍ଡବମାନଙ୍କ ବିଷୟ ମୋ ଅପେକ୍ଷା ତମର ଅଧିକ ଜାଣିବାର କଥା ।''

ଶ୍ରୀକୃଷ୍ଣ ଉତ୍ତର ଦେଲେ, ''ଏ ଖେଳ ଏଥର ଶେଷ କରନ୍ତୁ ଗାନ୍ଧାର ରାଜପୁତ୍ର ।''

ଶକୁନିଙ୍କର ମୁଖମଣ୍ଡଳ ବିଷଣ୍ଣତାରେ ଭରିଗଲା । ସେ ଦଣ୍ଡେ ଅନ୍ୟମନସ୍କ ହୋଇଗଲେ, ତା'ପରେ କହିଲେ, ''ପାଣ୍ଡବମାନେ ମୋର କିଭଳି ସ୍ନେହର ପାତ୍ର, ସେ କଥା ତ ତମକୁ ଅଜଣା ନାହିଁ ବାସୁଦେବ । ସେମାନଙ୍କୁ କେହି ସାମାନ୍ୟ ଆଘାତ ଦେଲେ, ତାହା ଶତଗୁଣରେ କିଭଳି ମୋତେ ଆହତ କରେ, ଏ କଥା ମୁଁ କାହାକୁ କହିବି ? କିଏ ବା ବିଶ୍ୱାସ କରିବ । ଲୌହକାର ଲୌହପିଣ୍ଡକୁ ଆଘାତ ଦିଏ, କେବଳ ଗଢ଼ିବାକୁ, ଭାଙ୍ଗିବାକୁ ନୁହେଁ- ଏ କଥା ତ ତମେ ଅନ୍ତତଃ ସ୍ୱୀକାର କରିବ ।''

ଶ୍ରୀକୃଷ୍ଣ ସେଦିନ ବିସ୍ମୟରେ କେବଳ ଏଇ ରହସ୍ୟମୟ ପୁରୁଷଟିକୁ ଅନାଇ ରହିଥିଲେ । ଶକୁନି ତାଙ୍କୁ ବୁଝାଇ କହିଥିଲେ ଆର୍ଯ୍ୟାବର୍ତ୍ତରେ ଧର୍ମ ସ୍ଥାପନର ଏକ ମହାନ୍ ଲକ୍ଷ୍ୟ ନେଇ ତମେ କାମ କରୁଛ । ମୋର ଉଦ୍ଦେଶ୍ୟ ମଧ ଏଥିରୁ ଭିନ୍ନ ନୁହେଁ । ଅବଶ୍ୟ ଏଥିରେ ମୋର କିଛିଟା ସ୍ୱାର୍ଥ ରହିଛି । ମାତ୍ର ତମେ ତ ଜାଣ ବସୁଦେବ ! ସ୍ୱାର୍ଥ ହିଁ ହେଉଛି ମଣିଷର ପ୍ରେରଣାର ଉତ୍ସ ।''

ଶ୍ରୀକୃଷ୍ଣ ସେଦିନ ବିଦାୟ ନେଇ ଆସିବା ପୂର୍ବରୁ ଆବେଗପ୍ରବଣ କଣ୍ଠରେ ଶକୁନି ତାଙ୍କୁ କହିଥିଲେ- ତମେ ମନ ଖରାପ କର ନାହିଁ । ଛଳନା ଆଉ ପ୍ରତାରଣାର ଏଇ ଗୋଲକଧନ୍ଦା ମଧରେ ବୁଲି ମୁଁ ମଧ ଏଥର କ୍ଲାନ୍ତ ହୋଇ ପଡ଼ିଲିଣି । ଆଶା କରୁଛି, ମୋର ଲକ୍ଷ୍ୟ ଅଚିରେ ପୂରଣ ହୋଇଯିବ । ଆର୍ଯ୍ୟାବର୍ତ୍ତ ପାଇଁ ମୁଁ ଯେଉଁ ନୂତନ ରୂପର ପରିକଳ୍ପନା କରିଛି, ପାଣ୍ଡବମାନେ ତାହାର ଆବରଣ ମାତ୍ର । ତମର ବର୍ତ୍ତମାନରେ ସେମାନଙ୍କର କିଏ କ୍ଷତି କରିପାରିବ ? ଏଇଥର ଆରମ୍ଭ ହେବ ମୋର ଶେଷ ଖେଳ । ସମଗ୍ର ଆର୍ଯ୍ୟାବର୍ତ୍ତ ସେଥିରେ ସ୍ତବ୍‌ଧହୋଇଯିବ । ରକ୍ତର ଲହଡ଼ି ଭାଙ୍ଗିବ । ଆର୍ଯ୍ୟାବର୍ତ୍ତର ଆକାଶ ଛାଇଯିବ ପଲ ପଲ ଶିବା ଶକୁନି ର ଉଲ୍ଲାସପୂର୍ଣ୍ଣ ଚିତ୍କାରରେ । ତେବେ ଯାଇ ଶକୁନି ଅନ୍ତରରେ ଦିବାରାତି ଯେଉଁ ପ୍ରତିହିଂସାର ଲେଲିହାନ୍ ଶିଖା ଜଳୁଛି, ତାହା ଶାନ୍ତ ହେବ ।''

ଶକୁନିଙ୍କର ମୁଖମଣ୍ଡଳ ଅବ୍ୟକ୍ତ ଯନ୍ତ୍ରଣାରେ ଥମ୍ ଥମ୍ କରୁଥିଲା । ଶ୍ରୀକୃଷ୍ଣ ସେଠାରୁ ଚାଲି ଆସିଲାବେଳେ ଶୁଣିଲେ ଶକୁନିଙ୍କର ବିଦାୟ ଅଭିନନ୍ଦନ-''ଧର୍ମର ଜୟ ହେଉ ।''

ତ୍ରିକାଳଦର୍ଶୀ ସହଦେବ ମଧ ଗୋପନରେ ଶ୍ରୀକୃଷ୍ଣଙ୍କୁ ତାହା ହିଁ ବୁଝାଇ ଦେଇଥିଲେ । ସେ କହିଥିଲେ, ''ପୃଥିବୀ କ୍ରମଶଃ ଅତି ଦୁଃଖିନୀ ହୋଇଯାଉଛି

ଜନାର୍ଦ୍ଦନ । ଗୋଟାଏ ବିରାଟ ପରିବର୍ତ୍ତନ ଆସୁଥିବାର ସ୍ପଷ୍ଟ ଦେଖାଯାଉଛି । ମାତ୍ରକ ଶକୁନି ହିଁ ହେବେ ଏହାର ପ୍ରଧାନ ଉଦ୍ୟୋକ୍ତା । ଆପଣ ତାଙ୍କୁ ସନ୍ଦେହ କରନ୍ତୁ ନାହିଁ ।''

ସେପଟେ ଶକୁନିଙ୍କର ଆୟୋଜନରେ ତାଙ୍କର ତଥାକଥିତ ଶେଷ ଖେଳ ଆରମ୍ଭ ହୋଇ ଯାଇଥିଲା । ପାଣ୍ଡବମାନେ ଫେରି ଆସି ବାରୁଣାବନ୍ତରେ ନୂତନ ରାଜଧାନୀ ସ୍ଥାପନ କରି ରହିସାରିବା ପରେ ଶକୁନିଙ୍କ ନିର୍ଦ୍ଦେଶରେ ଆୟୋଜିତ ହୋଇଥିଲା ଦ୍ୟୁତକ୍ରୀଡ଼ା । ତାହାର ପରିଣାମ ତ ଆଜି ଆଖି ଆଗରେ ।

ଶ୍ରୀକୃଷ୍ଣଙ୍କର ମନେ ପଡ଼ିଥିଲା, ଅଗ୍ରପାଣ୍ଡବ ଯୁଧିଷ୍ଠିରଙ୍କ କଥା । କିଛିଦିନ ପୂର୍ବରୁ ସେ ସନ୍ଧିପ୍ରସ୍ତାବ ସମ୍ପର୍କରେ ଆଲୋଚନା କରିବା ଅବସରରେ ଶକୁନିଙ୍କ ସହିତ ତାଙ୍କର ହୋଇଥିବା ଗୋପନ ଆଲୋଚନା ଶ୍ରୀକୃଷ୍ଣଙ୍କୁ କହୁଥିଲେ ।

ଧର୍ମରାଜଙ୍କୁ ସନ୍ଧିର ଅସାରତା ସମ୍ପର୍କରେ ସୂଚନା ଦେଇ ଶକୁନି କୁଆଡ଼େ ତାଙ୍କୁ କହିଥିଲେ, ''କୌରବ କୁଳର ସମୂଳ ବିନାଶରେ ହିଁ ଆର୍ଯ୍ୟାବର୍ତ୍ତର ମଙ୍ଗଳ । ମହୀଭାର ନିବାରଣ ନିମନ୍ତେ ଧର୍ମ ପ୍ରତିଷ୍ଠା ନିମନ୍ତେ ଏହି ଅପ୍ରିୟ କାର୍ଯ୍ୟଟି ବର୍ତ୍ତମାନ କରିବାକୁ ପଡ଼ିବ । ପାଣ୍ଡବମାନେ ହେବେ ଏହାର ନିମିତ୍ତ ମାତ୍ର ।''

ଯୁଧିଷ୍ଠିର ବଳଶାଳୀ ଶତ୍ରୁ ବିରୋଧରେ ସ୍ୱର ଉତ୍ତୋଳନ କରିବାର ଯୌକ୍ତିକତା ସମ୍ପର୍କରେ ପ୍ରଶ୍ନ ଉଠାଇଥିଲେ । ଶକୁନି ଗମ୍ଭୀର ସ୍ୱରରେ ତାଙ୍କୁ ଜଣାଇଥିଲେ, ''ବତ୍ସ !! ଜଗତରେ ଶାରିରୀକ ବଳ ହିଁ ଶେଷ କଥା ନୁହେଁ । ଯୁଦ୍ଧରେ ବିଜୟ ଲାଭ କରିବା ନିମନ୍ତେ ସାହସ ଏବଂ କୌଶଳର ଯେଉଁ ପ୍ରୟୋଜନ, ତାହା ପାଣ୍ଡବମାନଙ୍କର ଅଛି ବୋଲି ମୋର ଦୃଢ଼ ବିଶ୍ୱାସ ।''

ଯୁଧିଷ୍ଠିର ଏହାପରେ କୌରବ ପକ୍ଷର ଭୀଷ୍ମ, ଦ୍ରୋଣ, ଶଲ୍ୟ, ଭୂରିଶ୍ରବା ପ୍ରଭୃତି ଅଜେୟ ମହାବୀରମାନଙ୍କର ନାମ ଉଲ୍ଲେଖ କରି, ସଂଗ୍ରାମରେ ଏମାନଙ୍କୁ ଜିଣିବା ଯେ କେତେ ଦୁଃସାଧ ବ୍ୟାପାର ତାହା ଜଣାଇ ଦେଇଥିଲେ ।

ଶକୁନିଙ୍କର ଗାମ୍ଭୀର୍ଯ୍ୟର ମୁଖା ଖସି ପଡ଼ିଥିଲା ! ସେ ରହସ୍ୟମୟ ହସ ହସି କହିଥିଲେ, ''କହିଛି ତ ବତ୍ସ ! କାର୍ଯ୍ୟଟି ଦୁଃସାଧ ହୋଇପାରେ । ମାତ୍ର ଅସାଧ ନୁହେଁ । କୌରବମାନଙ୍କର ଦୁର୍ବଳତା ହିଁ ହେବ ଏ ମହାସମରରେ ପାଣ୍ଡବମାନଙ୍କ ଶକ୍ତି ।''

ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଥିଲେ । ଶକୁନି ତାଙ୍କ ପାଖକୁ ଉଠି ଆସି, ତାଙ୍କୁ କୌରବପକ୍ଷର ପ୍ରତ୍ୟେକ ଯୋଦ୍ଧାଙ୍କର ମୃତ୍ୟୁରହସ୍ୟ ବୁଝାଇ ଦେଇଥିଲେ ।

ଏହାପରେ ଆଉ ଶକୁନିଙ୍କ କଥାରେ ପ୍ରତିବାଦ କଲାଭଳି ଶକ୍ତି ଯୁଧିଷ୍ଠିରଙ୍କ ପାଖରେ ନ ଥିଲା ।

ଶକୁନି ଚାହାନ୍ତି ଧର୍ମର ପ୍ରତିଷ୍ଠା । ଧର୍ମଦ୍ରୋହୀର ବିଲୋପରେ ହିଁ ତାହା ସମ୍ଭବ । ଆଜି କୌରବମାନେ ସ୍ୱ ଆଚରଣ ବିଧିରେ ଧର୍ମଚ୍ୟୁତିର ଯେଉଁ ଖୋଲା ସୂଚନା ଦେଉଛନ୍ତି ତହିଁରେ, ସେମାନଙ୍କୁ ଧର୍ମଦ୍ରୋହୀ ବୋଲି କହିବାରେ ଅସୁବିଧା କିଛି ନାହିଁ । ତେବେ ଦୁର୍ଯ୍ୟୋଧନର ଲୁଣଖାଇ ପାଣ୍ଡବମାନଙ୍କର ଗୁଣ ଗାଇବାରେ ଶକୁନି ବା କେଉଁ ଧର୍ମାଚରଣ କରୁଛନ୍ତି ?

ଶକୁନି ହୁଏତ ସର୍ବଜ୍ଞ । ସେ ବୋଧହୁଏ ଯୁଧିଷ୍ଠିରଙ୍କ ମନୋଭାବକୁ ବୁଝିପାରିଲେ । ସେ କହିଲେ, ''ବତ୍ସ ! ଶକୁନି ହୁଏତ ନିଃସ୍ୱାର୍ଥପର ନୁହେଁ । ପୃଥିବୀରେ କିଏ ଅବା ପରାର୍ଥପର ? ସ୍ୱାର୍ଥସେବା ଦୋଷ ବୋଲି ମଧ୍ୟ କେହି ଶାସ୍ତ୍ରକାର କହି ନାହାନ୍ତି । ତେବେ ସ୍ୱାର୍ଥ ସହିତ ଯେଉଁଠି ଏକ ମହତ୍ ଉଦ୍ଦେଶ୍ୟ ଜଡ଼ିତ ଥାଏ, ସେଠାରେ ତାକୁ ହୀନ ମନେ କରିବା ଉଚିତ ନୁହେଁ । କାଲି ଇତିହାସରେ ଶକୁନି ସଂପର୍କରେ କ'ଣ ଲେଖା ହେବ, ତାହା ସେ ଭଲ ଭାବେ ଜାଣେ । ବତ୍ସ ଧର୍ମରାଜ ! ଏଥିପାଇଁ ମୋର ତିଳେମାତ୍ର ଅନୁଶୋଚନା ନାହିଁ । କାରଣ ମୁଁ ଜାଣେ, କେଉଁଠି କାହାକୁ କିଭଳି ପ୍ରଭାବିତ କରିପାରିଲେ, ଇତିହାସର ଗତିପଥକୁ କିଭଳି ବଦଳାଇ ଦିଆଯାଇ ପାରେ ।''

ଯୁଧିଷ୍ଠିରଙ୍କୁ ସେଦିନ କୌଣସି ପ୍ରତିବାଦର ସୁଯୋଗ ନ ଦେଇ ଶକୁନି କହିଥିଲେ- ''ମୋର ଦୁଇଟି ମାତ୍ର ଦାୟିତ୍ୱ । ଗୋଟିଏ ମୋର ବିଲୁପ୍ତ ପରିବାର ପ୍ରତି, ଆଉ ଗୋଟିଏ ସାମ୍ପ୍ରତିକ ଅବକ୍ଷୟୀ ସମାଜ ପ୍ରତି । କୌରବ କୁଳର ବିନାଶରେ ହିଁ ତାହା ଶେଷ ହେବ । ଏଥିପାଇଁ ଯଦି ମୋତେ ନର୍କଭୋଗ କରିବାକୁ ପଡ଼େ ସେଥିପାଇଁ ମୁଁ ପ୍ରସ୍ତୁତ ।''

ଶ୍ରୀକୃଷ୍ଣ ଚିନ୍ତାରାଜ୍ୟରୁ ଫେରି ଆସିଲେ । ଗାନ୍ଧାର ରାଜବଂଶର ଶେଷ ଦୀପଶିଖା ସେମିତି ଇତଃସ୍ତତଃ ପଦଚାରଣରତ । ଅଘ ବିନାଶନର ଏ ଯେଉଁ ପ୍ରଚଣ୍ଡ ବାତ୍ୟା ସମଗ୍ର ଆର୍ଯ୍ୟାବର୍ତ୍ତରେଆଜି ପ୍ରବାହିତ, ତହିଁରେ ତାହାକେତେବେଳେ ଲିଭିଯିବ କିଏ ଜାଣେ ? ଶ୍ରୀକୃଷ୍ଣ କ୍ଷଣେ ଇତସ୍ତତଃ କରି ଡ଼ାକିଲେ, ମାତୁଳ ! ଗାନ୍ଧାର ରାଜପୁତ୍ର !

ଶକୁନିଙ୍କର ଅସ୍ଥିର ପଦଚାରଣ ସ୍ଥଗିତହୋଇଗଲା । ସେ କୃଷ୍ଣଙ୍କ ଆଡ଼କୁ ଫେରି ଚାହିଁଲେ,''ଯେଉଁ ସନ୍ତାନ ନିଜ ଜନ୍ମଦାତାଙ୍କ ମୁହଁରୁ ଆହାର ଛଡ଼ାଇ ନେଇ ନିଜର ଜୀବନ ରକ୍ଷା କରେ, ନିଜେ ବଞ୍ଚି ରହିବ ବୋଲି, ଚାଉଳର ଅନ୍ନରୁ ଅର୍ଦ୍ଧାଧିକ ଗୋପନରେ ସଞ୍ଚୟ କରି ରଖେ, ତମେ ତାହାକୁ କ'ଣ କହିବ ଜନାର୍ଦ୍ଦନ ?''

ଶ୍ରୀକୃଷ୍ଣ ନୀରବ ରହିଲେ ।

ଶକୁନି କହିଲେ, ''ତୁମେ ହୁଏତ ଜାଣିନାହଁ, ଭଗିନୀ ଗାନ୍ଧାରୀଙ୍କ କରୁଣାରୁ ଗାନ୍ଧାର ବଂଶୀୟମାନେ ବନ୍ଦୀଶାଳାରେ ଯେଉଁ ଅନ୍ନ ମୁଠାଏ ପାଉଥିଲେ, ତାହା ଜଣକ ପାଇଁ ମଧ୍ୟ ପର୍ଯ୍ୟାପ୍ତ ନୁହେଁ । ଗାନ୍ଧାରସେନଙ୍କ ନିର୍ଦ୍ଦେଶରେ ତାହା କେବଳ ମୋରି ଭୋଗରେ ଲାଗୁଥିଲା । ମୋତେ ବଞ୍ଚି ରହିବାକୁ ପଡ଼ିଲା, ଏ ଅନ୍ୟାୟର ପ୍ରତିକାର କରିବା ନିମନ୍ତେ, ପ୍ରୟୋଜନ ହେଲେ ରକ୍ତ ଦେଇ । ସେତେବେଳେ ଏହାକୁ ମୁଁ ଭାବିଥିଲି, ପିତାଙ୍କର ଆଶୀର୍ବାଦ । ସନ୍ତାନ ପ୍ରତି ପକ୍ଷପାତିତା । ମାତ୍ର ଏହା ଯେ ମୋ ପ୍ରତି, ମାନବିକତା ପ୍ରତି କେତେବଡ଼ ଅଭିଶାପ, ଆଜି ଏହା ମୋ ବ୍ୟତୀତ କିଏ ଜାଣେ ?''

ଶ୍ରୀକୃଷ୍ଣ ନୀରବରେ କେବଳ ଅନାଇ ରହିଲେ । ଉତ୍ତେଜିତ ଶକୁନି କହୁଥିଲେ, ''ତମେ କାହୁଁ ଜାଣିବ, ସନ୍ତାନ ଆଗରେ କ୍ଷୁଧାର୍ତ୍ତ, ତୃଷାର୍ତ୍ତ ପିତାର ତିଳତିଳ ମୃତ୍ୟୁବରଣ କେଉଁ ଭଳି ମର୍ମନ୍ତୁଦ । ତମେ କିଭଳି ବୁଝିବ ଶୀତଳ ମୃତ୍ୟୁର ନିର୍ମମ ଜ୍ୱାଳା ? ଅନ୍ନ ପାଇଁ, ଜଳ ପାଇଁ ଆତ୍ମୀୟସ୍ୱଜନ ବନ୍ଧୁସୋଦରଙ୍କର ସେଇ କରୁଣ ନିବେଦନ ଏବେ ମଧ ସ୍ୱପ୍ନରେ, ଜାଗରଣରେ ମୋତେ ମୁହ୍ୟମାନ କରେ । ତମେ ଜାଣ?''

ଶ୍ରୀକୃଷ୍ଣ ଏତେ କଥା ଜାଣି ନ ଥିଲେ । ବନ୍ଦୀଶାଳାରେ ଗାନ୍ଧାର ବଂଶୀୟମାନଙ୍କୁ ବଞ୍ଚି ରହିବା ନିମନ୍ତେ ଯେ ଏଭଳି ପ୍ରାଣମୂର୍ଚ୍ଛା ସଂଗ୍ରାମରେ ଲିପ୍ତ ରହିବାକୁ ପଡୁଥିଲା, ଏହା ତାଙ୍କର ଜାଣିବା କଥା ମଧ୍ୟ ନୁହେଁ । ତଥାପି ସେ ଶକୁନିଙ୍କୁ କହିଲେ,'' ଯେଉଁ ଅଧ୍ୟାୟ ପରିସମାପ୍ତ ହୋଇଛି, ଆଉ ସେ ବିଷୟରେ ମୁଣ୍ଡଖେଳାଇ ଲାଭ ନାହିଁ ମାତୁଳ । ବର୍ତ୍ତମାନ ବିଷୟ ଚିନ୍ତା କରନ୍ତୁ । ଅତୀତକୁ ଅତୀତରେ ମିଶିଯିବାକୁ ଦିଅନ୍ତୁ ।''

ଶକୁନି କ୍ରୁଦ୍ଧ ହେଲେ । କହିଲେ,'' ଅତୀତର ଭିତ୍ତି ଉପରେ ହିଁ ମୋର ବର୍ତ୍ତମାନ ଦଣ୍ଡାୟମାନ । ବିନା ଦୋଷରେ ଯେ ମୋର ଆତ୍ମୀୟମାନଙ୍କୁ ବନ୍ଦୀଶାଳାରେ ଭରି ବିନାଶ କଲା, ସବଂଶେ ତାହାର ବିନାଶ ସାଧନ ହିଁ ହେଉଛି ମୋର ଏକମାତ୍ର ପିତୃରଣ- ସେତକ ପରିଶୋଧ କରି ନ ପାରିବା ପର୍ଯ୍ୟନ୍ତ ମୋର ସ୍ୱସ୍ତି ନାହିଁ ।''

ଶ୍ରୀକୃଷ୍ଣ କହିଲେ, ''ଏହାହିଁ ତେବେ ଆପଣଙ୍କର ଶେଷ କଥା ମାତୁଳ ?''

ଶକୁନି କହିଲେ, ''ମୋର ଦୃଢ଼ବିଶ୍ୱାସ ଯେ, ତମେ ମୋତେ ଅନ୍ତତଃ ଭଲ ଭାବେ ବୁଝିପାରିବ । ଶକୁନିର ଉଦ୍ଦେଶ୍ୟ କାହାରି ବୋଧଗମ୍ୟ ନହେଲେ ସୁଦ୍ଧା ବାସୁଦେବ ଶ୍ରୀକୃଷ୍ଣଙ୍କ ପକ୍ଷରେ ତାହା ଦୁର୍ବୋଧ ରହିବନାହିଁ । ଶୁଣ ମଧୁସୂଦନ ! କାଲି

ପ୍ରାତଃରେ ଦୁର୍ଯ୍ୟୋଧନ ସହିତ ତମର ଆଲୋଚନା ହେବ । ଅନେକ କାଳକ୍ଷେପଣ ହୋଇଛି । ଆଉ କୌଣସି ଦ୍ୱିଧା ନାହିଁ । ଯୁଦ୍ଧ ସମ୍ପର୍କରେ ତମର ନିର୍ଦ୍ଦିଷ୍ଟ ମତାମତ ତମେ ତାକୁ ଜଣାଇ ଦେବ ।''

ଶ୍ରୀକୃଷ୍ଣ ଉତ୍ତର ଦେଲେ, ''ମୁଁତ ତୃତୀୟ ପକ୍ଷ; ପୁଣି ନିରପେକ୍ଷ । ଏ ବିଷୟରେ ମୋର ମତାମତର ବା ମୂଲ୍ୟ କେତେ ?''

ଶକୁନି ବ୍ୟଙ୍ଗ ହସ ହସି କହିଲେ, ''ମୋର ଧାରଣା ଥିଲା, ମୁଁ ତମକୁ ବୁଝି ପାରିଛି ବୋଲି ତମର ବିଶ୍ୱାସ ହୋଇଥିବ । ସେ ଯାହା ହେଉ; ମୋ କଥା ମୁଁ କହି ସାରିଛି । ବାକି ଦୁଇଟି ନିବେଦନ ।'''

ଶ୍ରୀକୃଷ୍ଣ ଜିଜ୍ଞାସୁ ଦୃଷ୍ଟିରେ ତାଙ୍କ ଆଡ଼େ ଅନାଇଲେ । ଶକୁନି କହିଲେ, '' ଏ ଯୁଦ୍ଧରେ ପାଣ୍ଡବମାନେ ଯେ ବିଜୟୀ ହେବେ, ଏଥିରେ ମୋର ତିଳାର୍ଦ୍ଧ ସନ୍ଦେହ ନାହିଁ । ତଥାପି ଯୁଦ୍ଧଭୂମିର ପୂର୍ବଭାଗ ଯେଉଁଭଳି ସେମାନେ ପାଆନ୍ତି, ଏହାର ବ୍ୟବସ୍ଥା ତମେ କରିବ ।''

ଶ୍ରୀକୃଷ୍ଣ ପ୍ରତିବାଦ ଜଣାଇ କହିଲେ-'' ଏହାର ନିଷ୍ପତ୍ତି ମଧ ମୋ ଉପରେ ନିର୍ଭର କରୁନାହିଁ । ତା' ଛଡ଼ା ଦୁର୍ଯ୍ୟୋଧନ ଶାସକ । ତା'ର ଯେମିତି ଇଚ୍ଛା... ।''

ବାଧାଦେଇ ଶକୁନି କହିଲେ- '' ତମେ ଜାଣ ବାସୁଦେବ । ଯୁଧିଷ୍ଠିର ଚନ୍ଦ୍ରବଂଶର ଜ୍ୟେଷ୍ଠ ସନ୍ତାନ । ଜ୍ୟେଷ୍ଠ ହିସାବରେ ପୂର୍ବ ଭାଗ ହିଁ ତାଙ୍କର ନ୍ୟାଯ୍ୟ ପ୍ରାପ୍ୟ ।''

ଶ୍ରୀକୃଷ୍ଣ ପଚାରିଲେ, 'ଆଉ ତମର ଦ୍ୱିତୀୟ ପ୍ରସ୍ତାବ ?''

ଶକୁନି ଉତ୍ତର ଦେଲେ,'' ପାଣ୍ଡବମାନଙ୍କ ହୃଦୟରେ ମୋ ପ୍ରତି ଏବେ ମଧ ସନ୍ଦେହ ରହିଛି । ଯୁଦ୍ଧଯାତ୍ରାର ଶୁଭ ମୁହୂର୍ତ୍ତ ମୁଁ ଯଦି ନିର୍ଣ୍ଣୟ କରେ, ତେବେ ଏହାକୁ ସେମାନେ ଗ୍ରହଣ କରିବେ ନାହିଁ । ମାତ୍ର ଏଥିରେ ହିଁ ସେମାନଙ୍କର ମଙ୍ଗଳ । ଏହା ତମେ ସେମାନଙ୍କୁ ବୁଝାଇ ଦିଅ ।''

ଶକୁନିଙ୍କର ନୀରବତାରେ ମନ୍ତ୍ରଣା କକ୍ଷରେ ଗଭୀର ପ୍ରଶାନ୍ତିର ବାତାବରଣ ଖେଳିଗଲା । ନିର୍ଜନ ରାତ୍ରିର ବକ୍ଷ ଚିରିଭାସି ଆସିଲାକୌଣସି ଏକ ଅଜଣା ରାତ୍ରିଚର ପକ୍ଷୀର ଚିତ୍କାର । କାହିଁ କେଉଁ ଦୂରରୁ ଶୁଣାଯାଉଥିଲା, ରାତ୍ରିକାଳୀନ ଶାନ୍ତି ରକ୍ଷକର ଧୀର ଗମ୍ଭୀର କଣ୍ଠସ୍ୱର ।

ଦୀପାଲୋକ କ୍ରମଶଃ ମ୍ଳାନ ହୋଇ ଆସୁଥିଲା । ରାତ୍ରି ହୁଏତ ଶେଷ ପ୍ରାୟ । ଶ୍ରୀକୃଷ୍ଣ ନିଜ ଆସନରୁ ଶକୁନିଙ୍କ ଆଡ଼େ ଅନାଇଲେ । ସ୍ତିମିତ ଆଲୋକରେ ତାଙ୍କର

ଛାୟା ଏକ ଭୟଙ୍କର ପ୍ରେତର ଭ୍ରମ ସୃଷ୍ଟି କରୁଥିଲା । ଦ୍ୱାରକାଧିପତି ନୀରବରେ କେବଳ ତାଙ୍କୁ ଲକ୍ଷ୍ୟ କରୁଥିଲେ ।

ଶକୁନି ଏକ ଗଭୀର ଦୀର୍ଘଶ୍ୱାସ ପକାଇଲେ । ତାହାପରେ କହିଲେ,"ଶକୁନି ହୁଏତ ଏକ ଅଭିଶପ୍ତ ବଂଶର ଶେଷ ପ୍ରତିନିଧି । ଜୀବନସାରା କେବଳ ଅୟୁତ ଯନ୍ତ୍ରଣାର ବୋଝ ବୋହି ବୋହି ତା'ର ଦିନ କଟିଗଲା । କେହି ନ ଜାଣନ୍ତୁ, ତୁମେ ତ ଜାଣ, ଜଣେ ସାଧାରଣ ମଣିଷ ଭାବରେ ବଞ୍ଚିବା ବ୍ୟତୀତ ତା'ର ବିଶେଷ କୌଣସି କାମନା ନ ଥିଲା । ମାତ୍ର ଭାଗ୍ୟ ତାକୁ ପରିଣତ କରିଦେଲା ଏକ ମାୟା ମମତାହୀନ ରାକ୍ଷସରେ । ଯେଉଁ ପ୍ରିୟ ଭାଗିନେୟମାନଙ୍କୁ ସେ ବାଲ୍ୟକାଳରେ ବକ୍ଷରେ ଉସଙ୍ଗରେ ଅତି ସ୍ନେହରେ ଲାଳନ କରୁଥିଲା, ଆଜି ରାତ୍ରି ଜାଗି ସେଇମାନଙ୍କ ସର୍ବନାଶ ସମ୍ପର୍କରେ ଚିନ୍ତା କରୁଛି । ସେମାନଙ୍କ ପତନ ବ୍ୟତୀତ ଆଉ ଶକୁନିର କୌଣସି କାମନା ନାହିଁ ।କେଉଁ ପାପରେ ଶକୁନିର ସ୍ରଷ୍ଟା ତାକୁ ଏତେବଡ଼ ଦଣ୍ଡ ଦେଲେ, ତମେ କହିପାରିବ ମାୟାଧର ?"

ଶକୁନି ଅସହ୍ୟ ଶୋକର ତୀବ୍ର ଯନ୍ତ୍ରଣାରେ ଭାଙ୍ଗି ପଡ଼ିଲେ ।

ଦ୍ୱାରକାଧିପତି କେବଳ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଅନାଇ ରହିଥିଲେ ।

ଅହଙ୍କାର ଏବଂ ଉଚ୍ଚାକାଂକ୍ଷାର ତୋରଣ ଦ୍ୱାରରେ ଏହା ସତେ ଯେପରି ଥିଲା ପୀଡ଼ିତ ମାନବ ଆତ୍ମାର ବ୍ୟଥାତୁର ଆର୍ତ୍ତନାଦ ।



# ଶେଷ ପରୀକ୍ଷା

ରାତ୍ରିର ମଧ୍ୟମ ପ୍ରହର ଅତିକ୍ରାନ୍ତ ହୋଇଯାଇଥିଲା । କୁରୁକ୍ଷେତ୍ର ପ୍ରାଙ୍ଗଣରେ ପ୍ରେତାୟିତ ମୃତ୍ୟୁର ତୁହିନ ଶୀତଳତା ମଧ୍ୟରେ ତଥାପି ଶୁଣାଯାଉଥିଲା ନରମାଂସଲୋଲୁପ ଗୋମାୟୁ ଶିବାଙ୍କର ହିଂସ୍ର ଜାନ୍ତବ ଚିତ୍କାର ।

ପଚାମାଂସର ପୂତିଗନ୍ଧମୟ ବାୟୁ କାଟି ଆଗେଇ ଚାଲିଥିଲେ ଦୁଇଜଣ ରହସ୍ୟମୟ ଯାତ୍ରୀ । ଅଳ୍ପ ସମୟ ଆଗରୁ ଶୋକାଭିଭୂତ ପାଣ୍ଡବ ଶିବିରରୁ ଯାତ୍ରା ଆରମ୍ଭ କରିବା ପୂର୍ବରୁ ଅଗ୍ରପାଣ୍ଡବ ଯୁଧିଷ୍ଠିର ଯଦୁପତି ଶ୍ରୀକୃଷ୍ଣଙ୍କ ଆଡ଼େ ଅନାଇ କହିଥିଲେ "ପ୍ରତାରଣା ଏବଂ ଛଳନାକୁ ନେଇ ଯେଉଁ ରାଜନୀତି ତହିଁରେ ମୋର କିନ୍ତୁ ତିଳାର୍ଦ୍ଧ ସମର୍ଥନ ନାହିଁ ଚକ୍ରୀ ।"

ଶ୍ରୀକୃଷ୍ଣ ନିରବ ରହିଥିଲେ । ତାଙ୍କର ରହସ୍ୟମୟ ଅଧରରେ ଧୀରେ ହସ ଫୁଟି ଉଠିଥିଲା ।

କୁରୁସେନାପତି ଭୀଷ୍ମ ସେଦିନ ଦଶ ସହସ୍ର ରଥୀ ନିପାତ କରି ଆସନ୍ତା କାଲି ଯୁଦ୍ଧରେ ଧରାକୁ ଅପାଣ୍ଡବା କରିବାର ଘୋଷଣା କରିସାରିଥିଲେ । ଆଜି ପୁଣି ପିତାମହ ଯେଉଁ ପ୍ରମତ୍ତ ପରାକ୍ରମରେ ପାଣ୍ଡବ ସୈନ୍ୟ ସଂହାର କରି ଚାଲିଥିଲେ, ତହିଁରେ ହସ୍ତକ୍ଷେପ କରି ନଥିଲେ, ଯୁଦ୍ଧର ପରିଣତି କଣ ହୋଇ ଥାଆନ୍ତା, କିଏ କହିବ ?

ତଥାପି ଅଗ୍ରପାଣ୍ଡବ ଶାନ୍ତିର କଥା ହିଁ କହିବେ । କୋଟିଏ ଲୋକର କାନ୍ଧରେ ଭରା ଦେଇ ଗୋଟିଏ ଲୋକର ଉପରକୁ ଉଠିବା କାର୍ଯ୍ୟ ଯେ ଆପାତଃ ରମଣୀୟ ମଧୁସ୍ରାବୀ ବାକ୍‌ଜାଲଛନ୍ଦିତ ପ୍ରତାରଣା ବ୍ୟତୀତ ଅନ୍ୟ କିଛି ନୁହେଁ, ଏକଥା ଯୁଧିଷ୍ଠିର ବୁଝି ମଧ୍ୟ ବୁଝନ୍ତି ନାହିଁ ।

ସହଦେବ ଦୁର୍ବଳ କଣ୍ଠରେ କହିଲେ, "କିନ୍ତୁ ନୀଳବାଣ ଭୁଜବାଣ..."

ଯୁଧିଷ୍ଠିର ପ୍ରଶାନ୍ତ କଣ୍ଠରେ ଉତ୍ତର ଦେଇଥିଲେ, "ଯଦି ତାହାହିଁ ହୁଏ ପାଣ୍ଡବମାନଙ୍କର ନିୟତି, ତେବେ ତାହାକୁ ନିଜ ଇଚ୍ଛା ପଥରେ ଚାଳନା କରିବାକୁ ଉଦ୍ୟମ କରିବା ମୂର୍ଖତା ବ୍ୟତୀତ ଅନ୍ୟକିଛି ନୁହେଁ ବତ୍ସ ।" •

ଶ୍ରୀକୃଷ୍ଣ ଅଗତ୍ୟା କହିଲେ, "ମାତ୍ର ଉଦ୍ୟମହୀନ ଜୀବନ ଏବଂ ଆତ୍ମହନନ ମଧ୍ୟରେ କୌଣସି ପାର୍ଥକ୍ୟ ଥିବାର ଆପଣ କ'ଣ ସ୍ୱୀକାର କରିବେ ଅଗ୍ର ପାଣ୍ଡବ ? ପାଣ୍ଡବକୁଳଙ୍କୁ ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା କରିବା ନିମନ୍ତେ ଏହା ବ୍ୟତୀତ ଅନ୍ୟ କୌଣସି ଉପାୟ ବି ତ ନାହିଁ ।"

ଯୁଧିଷ୍ଠିର କର୍ମର ମହତ୍ତ୍ୱ ବୁଝନ୍ତି । ତେଣୁ ଏ କ୍ଷେତ୍ରରେ ତାଙ୍କର ନୀରବ ରହିବା ବ୍ୟତୀତ ଅନ୍ୟ କୌଣସି ଉପାୟ ନଥିଲା ।

ତାହାର କିଛି ପୂର୍ବରୁ ଶୋକାଭିଭୂତ ପାଣ୍ଡବ ଶିବିରରେ ଗୋପନ ପରାମର୍ଶ ଚାଲିଥିଲା । ଭୀଷ୍ମଙ୍କର ଅଟଳ ପ୍ରତିଜ୍ଞା ସତେଯେପରି ଆସନ୍ନ ମୃତ୍ୟୁର ନିରନ୍ଧ୍ର ଯବନିକାଟିଏ ହୋଇ ପାଣ୍ଡବ ଶିବିର ଉପରେ ଝୁଲି ରହିଥିଲା । ଖୁବ୍ ନିକଟରେ ଶୁଣାଯାଉଥିଲା, ମୃତ୍ୟୁଦୂତର ଆତଙ୍କଜନିତ ଚିତ୍କାର । ବହୁ ନିଷ୍ଫଳ ବିଚାର ବିମର୍ଶ ପରେ ଶ୍ରୀକୃଷ୍ଣଙ୍କର ଗୋପନ କଟାକ୍ଷ ନିର୍ଦ୍ଦେଶିତ ସହଦେବ ମନ୍ତ୍ରୀ ଅଗତ୍ୟା କିଛି କହିବାକୁ ଦଣ୍ଡାୟମାନ ହୋଇଥିଲେ ।

ତ୍ରିକାଳଦର୍ଶୀ ସହଦେବଙ୍କ ବଚନର ଗୁରୁତ୍ୱ ଅଗ୍ରପାଣ୍ଡବ ଯେ ସ୍ୱୀକାର କରନ୍ତି, ଏକଥା ଶ୍ରୀକୃଷ୍ଣଙ୍କୁ ଅଜଣା ନଥିଲା ।

ସହଦେବ କହିଲେ, "ନୀଳବାଣ ଭୁଜବାଣ ପାଣ୍ଡବମାନଙ୍କ ଉପରେ ପ୍ରଯୁକ୍ତ ହେବା ପୂର୍ବରୁ, କେବେବେ କୌଶଳେ ଭୀଷ୍ମଙ୍କୁ ବାଣମୁକ୍ତ କରିବାକୁ ପଡ଼ିବ ।"

ଯୁଧିଷ୍ଠିରଙ୍କୁ ଉପାୟ ଦେଖାଯାଉ ନଥିଲା । ସେ ଅସହାୟ ଭାବରେ କନିଷ୍ଠ ପାଣ୍ଡବଙ୍କ ଆଡ଼କୁ ଅନାଇ ରହିଲେ ।

ଶ୍ରୀକୃଷ୍ଣଙ୍କ ଦୃଷ୍ଟି ଇତିମଧ୍ୟରେ ତୃତୀୟ ପାଣ୍ଡବଙ୍କ ଉପରେ ସ୍ଥିର ହୋଇ ରହିଥିଲା । ସେଇଆଡ଼େ ଅନାଇ ସହଦେବ କହିଲେ, "ବୀର ଫାଲ୍‌ଗୁନୀ ହିଁ ହେଉଛନ୍ତି ଏକ୍ଷେତ୍ରରେ ପାଣ୍ଡବ କୁଳର ଏକମାତ୍ର ସହାୟ ।"

ଅର୍ଜୁନ ଜିଜ୍ଞାସୁ ନେତ୍ରରେ ସହଦେବଙ୍କ ଆଡ଼େ ଅନାଇ ରହିଲେ ।

ସହଦେବ ଆରମ୍ଭ କଲେ, "ମାନଗୋବିନ୍ଦଙ୍କର ଘୋଷଯାତ୍ରା ପ୍ରସଙ୍ଗନିଶ୍ଚୟ ଆପଣଙ୍କର ସ୍ମରଣ ଥିବ ମଧ୍ୟମ ପାଣ୍ଡବ । ଚିତ୍ରସେନ ଗନ୍ଧର୍ବ ଯେତେବେଳେ ମର ଦୁର୍ଯ୍ୟୋଧନଙ୍କୁ ବନ୍ଧନ କରି ଘେନି ଯାଉଥିଲେ, ସେତେବେଳେ ଆପଣହିଁ ତାଙ୍କୁ ଗନ୍ଧର୍ବଠାରୁ ଉଦ୍ଧାର କରିଥିବଲେ । କୃତଜ୍ଞ ଦୁର୍ଯ୍ୟୋଧନ କନକଗିରି ପର୍ବତ ଉପରେ ଚନ୍ଦ୍ର ସୂର୍ଯ୍ୟ ଦଶଦିଗ ପାଳ ସାକ୍ଷୀ ରଖି ଆପଣଙ୍କୁ ବର ଯାଚିଦେଇଥିଲେ ।"

ଅର୍ଜୁନ କହିଲେ,''ସେ ବର ମୁଁ ଏବେ ବି ତାଙ୍କଠାରୁ ଗ୍ରହଣ କରି ନାହିଁ । ମାତ୍ର ତା' ସହିତ ଏହାର ସମ୍ପର୍କ କଣ ?''

ଯୁଧିଷ୍ଠିରଙ୍କୁ ଯେମିତି ନିରନ୍ଧ୍ର ଅନ୍ଧକାର ମଧ୍ୟରେ ଆଶାର କ୍ଷୀଣ ଆଲୋକ ବର୍ତ୍ତିକାଟିଏ ଦେଖାଯାଉଥିଲା । ସେ ଉଲ୍ଲସିତ କଣ୍ଠରେ କହୁଥିଲେ, ''ସାଧୁ ସାଧୁ ସହଦେବ । ପାଣ୍ଡବ କୁଳକୁ ତୁମେ ଏକା କାରେଣି । ତମର ଉଦ୍ଦେଶ୍ୟ ମୁଁ ବୁଝି ପାରିଛି । ବତ୍ସ ଅର୍ଜୁନ ! ତୁମେ ଅଚିରେ କୌରବ ଶିବିରକୁ ଯାତ୍ରାକରି ଦୁର୍ଯ୍ୟୋଧନଠାରୁ ଇପ୍ସିତ ବର ଘେନି ଆସ । ଆଉ ଯୁଦ୍ଧରେ କାର୍ଯ୍ୟ ନାହିଁ ।

ବିଚଳିତ କଣ୍ଠରେ ସହଦେବ କହିଲେ, ''ଏଭଳି କଲେ କିନ୍ତୁ ପାଣ୍ଡବମାନେ କାପୁରୁଷ ବୋଲି କାଳକାଳକୁ ନିନ୍ଦିତ ହେବେ । ମୋର ଅନ୍ୟ ଏକ ପ୍ରସ୍ତାବ ଥିଲା ।''

ଯୁଧିଷ୍ଠିର ଉତ୍ତର ଦେଲେ, '' ସ୍ୱଜନ ଦୂଷଣର ଭିତ୍ତି ଉପରେ ଗଢ଼ି ଉଠିବ ଯେଉଁ ସାମ୍ରାଜ୍ୟ, ତାହା ଅପେକ୍ଷା କାପୁରୁଷ ଅପବାଦ ହିଁ ବରଂ ଶ୍ରେୟ ।

ବାଧା ଦେଇ ଶ୍ରୀକୃଷ୍ଣ କହିଲେ, ''ଆତ୍ମସମ୍ମାନକୁ ବଳୀ ଦେଇ ଆପଣ ଯେଉଁ ଜୀବନ ପାଇବେ, ତାହା କଣ ଖୁବ୍ ସ୍ପୃହଣୀୟ ହେବ ଅଗ୍ର ପାଣ୍ଡବ ? ବରଂ ମନ୍ତ୍ରୀଙ୍କର ପ୍ରସ୍ତାବଟା ଶୁଣାଯାଉ ।''

ଯୁଧିଷ୍ଠର ଚକିତ ନେତ୍ରରେ ଶ୍ରୀକୃଷ୍ଣଙ୍କ ଆଡ଼କୁ ଅନାଇ କହିଲେ,'' ଏ ପୁଣି ତୁମର କେଉଁ ନୂତନ ଚକ୍ରାନ୍ତ ଚକ୍ରୀ ?''

ଶ୍ରୀକୃଷ୍ଣ ମନ୍ଦ ମନ୍ଦ ହସି କହିଲେ, ଆପଣ ସହଦେବଙ୍କଠାରୁ ଶୁଣନ୍ତୁ ।''

ସହଦେବ କହିଲେ, ''ଅର୍ଜୁନ କୁରୁନାଥଙ୍କଠାରୁ ତାଙ୍କର ଅନର୍ଘମଣି ମୁକୁଟଟି ପ୍ରାର୍ଥନା କରି ଆଣନ୍ତୁ ।''

ଅର୍ଜୁନ କହିଲେ, ''ମାନୁଛି, କୋଟିଏ ମାଣିକ୍ୟର ଉଜ୍ଜଳ ଦୀପ୍ତିରେ ମୁକୁଟଟି ଅତ୍ୟନ୍ତ ମହାର୍ଘ । ମାତ୍ର ପାଣ୍ଡବ ମଣିମୁକ୍ତାର କାଙ୍ଗାଳ ନୁହେଁ ବତ୍ସ । ବର୍ତ୍ତମାନ ଆମ ପାଇଁ ଏହିଭଳି ମୁକୁଟର ପ୍ରୟୋଜନ କ'ଣ ?

ଭୀମ କହିଲେ, ''ଯଦି ଏହାର ଦୀପ୍ତିରେ ତୁମର ଆସକ୍ତି ଆସି ଯାଇଥାଏ, ତେବେ ମୁଁ ପ୍ରତିଶ୍ରୁତି ଦେଉଛି, ଅଚିରେ ଦୁର୍ଯ୍ୟୋଧନର ବକ୍ଷ ବିଦାରି ମୁଁ ତୁମକୁ ସେଇଟି ଉପହାର ଦେବି । ସେଥିପାଇଁ ଅର୍ଜୁନଙ୍କୁ ଭିକ୍ଷାର୍ଥୀ କରି ପଠାଇବାର ପ୍ରୟୋଜନ ନାହିଁ ।

ସହଦେବ କହିଲେ,''ମୁଁ କିନ୍ତୁ ମୋର ପ୍ରସ୍ତାବଟି ସମ୍ପୂର୍ଣ୍ଣ ପ୍ରକାଶ କରିନାହିଁ। ମୋ ବିଚାରରେ ମଧ୍ୟମ ପାଣ୍ଡବ ଅର୍ଜୁନ ହିଁ କେବଳ ଏହି ଦୁରୂହ ଦାୟିତ୍ୱଟି ତୁଲାଇ ପାରିବେ।

ପାଣ୍ଡବ ଶିବିରର ସେଇ ଗୋପନ ଆଲୋଚନାରେ ଚାପା ଗୁଞ୍ଜରଣ ଖେଳି ଯାଇଥିଲା। ଅଗ୍ରପାଣ୍ଡବ ଯୁଧିଷ୍ଠିର ସ୍ପଷ୍ଟ ଜଣାଇ ଦେଇଥିଲେ, ଏଭଳି ପ୍ରତାରଣାପୂର୍ଣ୍ଣ ହୀନ କାର୍ଯ୍ୟରେ ତାଙ୍କର କୌଣସି ପ୍ରବୃତ୍ତି ନାହିଁ। ଭୀଷ୍ମଙ୍କୁ ଗଦାଘାତରେ ଚୂର୍ଣ୍ଣ ବିଚୂର୍ଣ୍ଣ କରି ତତ୍କ୍ଷଣାତ୍ ନୀଳବାଣ ଭୁଜବାଣ ଉଦ୍ଧାର କରି ଆଣିବା ନିମନ୍ତେ ଭୀମ ପ୍ରସ୍ତୁତ ଥିଲେ। ଅର୍ଜୁନ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସି ରହିଥିଲେ।

ନୀରବତା ଭାଙ୍ଗି ଶ୍ରୀକୃଷ୍ଣ କହିଥିଲେ, ''ପ୍ରତାରକକୁ ତାର ନିଜର ଅସ୍ତ୍ରରେ ଆଘାତ କରି ପରାସ୍ତ କରିବାର ନାମ ହିଁ ରାଜନୀତି। ଭୀମକୁ ବିଷଲଡୁ ଦେବା, ଜତୁଗୃହରେ ପାଣ୍ଡବମାନଙ୍କୁ ଦାହ କରାଇବା, କପଟଦ୍ୟୂତରେ ପାଣ୍ଡବରାଜ୍ୟ ଅପହରଣ କରି ଦ୍ରୌପଦୀଙ୍କୁ ଅପମାନିତ କରାଇବା- ଏସବୁ ଘଟଣା କ'ଣ ପୁନର୍ବାର ଏଠାରେ ଉଲ୍ଲେଖ କରିବା ପ୍ରୟୋଜନ ? ଏସବୁ କେଉଁ ନୀତି ଉପରେ ପ୍ରତିଷ୍ଠିତ ?''

କ୍ଲାନ୍ତ କଣ୍ଠରେ ଯୁଧିଷ୍ଠିର ଉତ୍ତର ଦେଇଥିଲେ, ତମେ ଯେ ମୂଳରୁ ଏ ବ୍ୟାପାର ସହିତ ଜଡ଼ିତ ଏହା ପ୍ରଥମରୁ ମୋର ବୁଝିବା ଉଚିତ ଥିଲା ଚକ୍ରୀ।

କୌରବ ଶିବିରରେ ରାତ୍ରିର ଦ୍ୱିତୀୟ ପ୍ରହରରେ ଅର୍ଜୁନଙ୍କୁ ଦେଖି ପ୍ରଚଣ୍ଡ କୋଳାହଳ ସୃଷ୍ଟି ହୋଇଥିଲା। ଅର୍ଜୁନ ସିଂହାସନ ଉପବିଷ୍ଟ କୁରୁମଣିଙ୍କୁ ପ୍ରଣାମ ଦଣ୍ଡବତ କରି ଭୂମିଲଗ୍ନ ହୋଇ ରହିଥିଲେ। ପ୍ରସନ୍ନ ମାନବଚକ୍ରବର୍ତ୍ତୀ ସିଂହାସନରୁ ଓହ୍ଲାଇ ଆସି ଅର୍ଜୁନଙ୍କୁ ସସ୍ନେହ ଆଶୀର୍ବାଦ କରି ପାଖରେ ବସାଇଥିଲେ। ମାତାକୁନ୍ତୀ, ଅଗ୍ରଜ ଯୁଧିଷ୍ଠିର, ଅନ୍ୟ ପାଣ୍ଡବ ସମେତ ପାଣ୍ଡବ ଶିବିରର ଅନ୍ୟମାନଙ୍କର କୁଶଳ ପ୍ରଶ୍ନ କରିଥିଲେ ଏବଂ ସମୁଚିତ ଉତ୍ତର ପାଇବା ପରେ ଅସମୟରେ ଆଗମନର କାରଣ ଜିଜ୍ଞାସା କରିଥିଲେ।

ଅର୍ଜୁନ ତାଙ୍କୁ ତାଙ୍କର ପୂର୍ବ ପ୍ରତିଶ୍ରୁତି ସ୍ମରଣ କରାଇ ଦେଇ, ମାତ୍ର ରାତିକ ପାଇଁ ତାଙ୍କର ଅନର୍ଘ ମଣିଖଚିତ ମୁକୁଟଟିକୁ ପ୍ରାର୍ଥନା କରିଥିଲେ।

ଶଲ୍ୟ, କର୍ଣ୍ଣ, ଅଶ୍ୱତ୍ଥମା ସମେତ କୁରୁଭ୍ରାତାବୃନ୍ଦ ଅର୍ଜୁନର ଏହି ବାଳଚପଳତାରେ ଅଟ୍ଟହାସରେ ଭାଙ୍ଗି ପଡ଼ିଥିଲେ।

ସଦାସନ୍ଦେହୀ ଶକୁନି ମାତ୍ର ଭ୍ରୂକୁଞ୍ଚିତ କରି ଅର୍ଜୁନ ଆଡକୁ ବାରମ୍ବାର ଅନାଇ ତାହାର ଅନ୍ତଃସ୍ଥଳକୁ ସ୍ପଷ୍ଟ ଦେଖି ନେବା ନିମନ୍ତେ ଉଦ୍ୟମ କରୁଥିଲେ ଯେମିତି।

ଶେଷରେ କହିଲେ, "ଅର୍ଜ୍ଜୁନର ପ୍ରସ୍ତାବକୁ ବିଚାର କରି ଦେଖି ସେ ବିଷୟରେ ଯାହା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ମୁଁ ନିବେଦନ କରୁଛି ।"

ଅଳ୍ପ ସମୟ ପରେ ରାତ୍ରିର ଦ୍ୱିପ୍ରହର ଶେଷ ହୋଇଯିବ । ତାହା ପୂର୍ବରୁ କୌଣସିମତେ ଏଠାକାର କାର୍ଯ୍ୟଶେଷ କରି ଫେରି ନ ଗଲେ, ତୃତୀୟ ପ୍ରହରରେ ଭୀଷ୍ମଙ୍କୁ ସାକ୍ଷାତ କରି ହେବ ନାହିଁ । ପରେ ସେ ସନ୍ଦେହ କରିପାରନ୍ତି । ବାହାରେ ଦ୍ରୁତଗାମୀ ଅଶ୍ୱଯୁକ୍ତ ରଥ ପ୍ରସ୍ତୁତ ରହିଛି । ଗୋପନରେ ସଖା ଶ୍ରୀକୃଷ୍ଣ ମଧ୍ୟ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରୁଛନ୍ତି । ଏଠାରେ କାର୍ଯ୍ୟ ଭଲରେ ଭଲରେ ଉଦ୍ଧାର ହୋଇଗଲେ ହେଲା ।

ଅର୍ଜ୍ଜୁନ ବିଚଳିତ ଦୃଷ୍ଟିରେ ଶକୁନିଙ୍କ ଆଡ଼କୁ ଅନାଇଲେ । ମଦ୍ରପତି ଶଲ୍ୟ ଅସହିଷ୍ଣୁ ଭାବରେ ଶକୁନିଙ୍କ ଆଡ଼କୁ ଅନାଇ କହିଲେ, ବଚନ ଭ୍ରଷ୍ଟ ପୁରୁଷ ଏବଂ କୁଳଗୋତ୍ରହୀନ ଜାରଜ ମଧ୍ୟରେ ମୁଁ କୌଣସି ପାର୍ଥକ୍ୟ ଦେଖେ ନାହିଁ । ଇକ୍ଷେ ରାଜାର ମଉଡ଼ମଣି ମାନଚକ୍ରବର୍ତ୍ତୀ ଦୁର୍ଯ୍ୟୋଧନ ନିଶ୍ଚୟ ନିଜର ପ୍ରତିଶ୍ରୁତି ଭଙ୍ଗ କରିବେ ନାହିଁ ।

ଅହଙ୍କାରରେ ମାନଗୋବିନ୍ଦଙ୍କର ବକ୍ଷ ସ୍ଫୀତ ହୋଇଥିଲା । ସେ ଶଲ୍ୟଙ୍କୁ ଅଭୟ ଦେଇ କହିଲେ, "ଆପଣ ନିଶ୍ଚିତ ରହନ୍ତୁ ମାତୁଳ । ଅର୍ଜ୍ଜୁନ ମୋର ଅନୁଜ, ସ୍ନେହର ପାତ୍ର, ପୁଣି ତା' ନିକଟରେ ମୁଁ ପ୍ରତିଶ୍ରୁତିବଦ୍ଧ । ତା' ପାଇଁ ମୋର ଅଦେୟ କିଛି ନାହିଁ ।"

ପରମ ସ୍ନେହରେ କୁରୁମଣି ଅର୍ଜ୍ଜୁନଙ୍କର କେଶ ଆଘ୍ରାଣ କରି ତାଙ୍କର ଶରୀରରେ ନିଜର ସ୍ନେହପୂର୍ଣ୍ଣ ହସ୍ତ ବୁଲାଉ ବୁଲାଉ ଭାବପ୍ରବଣ କଣ୍ଠରେ କହିଥିଲେ," ଆଜି କୌରବ ପାଣ୍ଡବ କୁରୁକ୍ଷେତ୍ର ପ୍ରାଙ୍ଗଣରେ ମୁହାଁମୁହିଁ ହୋଇ ଠିଆ ହୋଇଥିଲେ ମଧ୍ୟ ସେମାନଙ୍କ ଭିତରେ ଥିବା ରକ୍ତର ସମ୍ପର୍କକୁ ମୁଁ ମୁହୂର୍ତ୍ତକ ପାଇଁ ଭୁଲିନାହିଁ କିରୀଟି । କିଏ କହେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ଶତ୍ରୁ ? ତେବେ ସେ ଦିନ ଚିତ୍ରସେନ ଗନ୍ଧର୍ବ ହାତରୁ ଦୁର୍ଯ୍ୟୋଧନଙ୍କୁ ରକ୍ଷା କରିବା ପାଇଁ ଅର୍ଜ୍ଜୁନ ନିଜ ଜୀବନକୁ ବିପନ୍ନ କରି ଡେଇଁ ପଡ଼ିଥିଲା କାହିଁକି ?

ଅର୍ଜ୍ଜୁନ କହିଲେ, "ରାତ୍ରି ଅଧିକ ହେଉଛି ଏବଂ ଆପଣଙ୍କର ବିଶ୍ରାମର ସମୟ ମଧ୍ୟ ଅତିକ୍ରାନ୍ତ ହେଉଛି କୁରୁମଣି ।"

ତାସଲ୍ୟରେ ଦୁର୍ଯ୍ୟୋଧନ କହୁଥିଲେ, "ହେଉ ଅତିକ୍ରାନ୍ତ । ଏଭଳି ରାତ୍ରି ଦୁର୍ଯ୍ୟୋଧନ କେତେ ଦେଖିଛି ? ଏଇ ଗୋଟିଏ ରାତ୍ରି ପାଇଁ ଦୁର୍ଯ୍ୟୋଧନ ତାହାର ସମସ୍ତ ଐଶ୍ୱର୍ଯ୍ୟ ଦାନ କରିପାରେ ।

ଶକୁନି ପୁନର୍ବାର ସାବଧାନ କରାଇ ଦେଇ କହିଥିଲେ, ''ଏ ଭାବପ୍ରବଣତାର ମୁହୂର୍ତ୍ତ ନୁହେଁ ବସ୍ତ।''

ଦୁର୍ଯ୍ୟୋଧନ ତାଙ୍କ ଆଡ଼କୁ ଅନାଇ କହିଥିଲେ ''ଥୁଣ୍ଟାଗଛ କାହୁଁ ବୁଝିବ, ପଲ୍ଲବଘନଛାୟାର ଶୀତଳତା ? ଆପଣଙ୍କୁ ଅନୁରୋଧ କରୁଛି ମାତୁଳ, ସ୍ୱାର୍ଥର କାଳିମାରେ ଆପଣ ଏହି ମୁହୂର୍ତ୍ତର ପବିତ୍ରତାକୁ ନଷ୍ଟ କରି ଦିଅନ୍ତୁ ନାହିଁ।''

ତା ପରେ ପନ୍ନଗ ନାରାୟଣ ମାନଗୋବିନ୍ଦ ନିଷ୍ପଲକ ନେତ୍ରରେ ଅର୍ଜୁନ ଆଡ଼କୁ ଚାହିଁଲେ। ତହିଁରୁ ଅଟଳ ବିଶ୍ୱାସର ସ୍ଥିର ଦୀପ୍ତି ଝଲସି ଉଠୁଥିଲା।

ଅର୍ଜୁନ ଅସ୍ୱସ୍ତି ଅନୁଭବ କରୁଥିଲେ। ନିଜ ଅଜ୍ଞାତସାରରେ ତାଙ୍କର ଦୃଷ୍ଟି ନତ ହୋଇ ଯାଉଥିଲା।

ଚିବୁକରେ ଅଙ୍ଗୁଳି ନ୍ୟସ୍ତ କରି ଅର୍ଜୁନଙ୍କର ମୁଖ ସସ୍ନେହରେ ଟେକି ଧରି ଦୁର୍ଯ୍ୟୋଧନ କହୁଥିଲେ, ''ଏଥିରେ ସଙ୍କୋଚ କରିବାର କିଛି ନାହିଁ ବତ୍ସ। ମଣିମୁକ୍ତା ନେଇ ଭାଇମୋର କିଛିକ୍ଷଣ ଖେଳିବାକୁ ଚାହିଁଛି। ଅଗ୍ରଜହୋଇମୁଁ ତାର ସେଇ ଇଚ୍ଛା ପୂରଣ କରିବି ନାହିଁ ତ କରିବ କିଏ ?' ତା'ରେ ଦୃଢ଼ ହସ୍ତରେ ନିଜ ଶିରରୁ ମୁକୁଟଟି କାଢ଼ି ଅର୍ଜୁନଙ୍କର ଶୂନ୍ୟ ଶିରରେ ସ୍ଥାପନ କରିଦେଇ କୁରୁମଣି ପୁନର୍ବାର କରୁଥିଲେ, ''ଏହାକୁ ଆଉ ଫେରାଇବାର ପ୍ରୟୋଜନ ନାହିଁ। ମନେ ରଖିବୁ ବାବୁ, ମୁକୁଟତ ଛାର କଥା। ଜୀବନ ମାଗିଥିଲେ, ତା' ମଧ ତୋତେ ମୁଁ ହସି ହସି ଦେଇଥାନ୍ତି। ଏବେ ମଧ ତୁ ଯୁଦ୍ଧବିରତି ନିମନ୍ତେ ବର ପ୍ରାର୍ଥନା କରିପାରୁ।''

ଅର୍ଜୁନ ଉଠି ଠିଆହେଲେ। ପୁନର୍ବାର ଦୁର୍ଯ୍ୟୋଧନ ତଥା ସଭାସ୍ଥ ଗୁରୁଜନମାନଙ୍କୁ ପ୍ରଲମ୍ବ ପ୍ରଣାମ କରିସାରି ବିଦାୟ ପ୍ରାର୍ଥନା କଲେ।

ଦୁର୍ଯ୍ୟୋଧନ ତାଙ୍କୁ ବଳାଇ ଦେବାପାଇଁ ରଥ ପର୍ଯ୍ୟନ୍ତ ଆସିଲେ। କହିଲେ, ''ମାତାକୁନ୍ତୀ ଏବଂଭ୍ରାତା ଯୁଧିଷ୍ଠିରଙ୍କୁ ମୋର ସମ୍ମାନ ଜଣାଇ ଦେବୁ। ଭବିଷ୍ୟତରେ କେବେ ପ୍ରୟୋଜନ ହେଲେପୁଣି ନିଃସଙ୍କୋଚରେମୋ ପାଖକୁ ଚାଲି ଆସିବୁ ବାବୁ।

ଅର୍ଜୁନ ନତ ନେତ୍ରରେ କେବଳ କହିଲେ, ''ନା, ତା'ର ଆଉ ପ୍ରୟୋଜନ ହେବ ନାହିଁ।''

ରଥ ଘନ ଅନ୍ଧକାର ମଧରେ ମିଳାଇଗଲା।

ଶ୍ରୀକୃଷ୍ଣଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଅନାଇ ଫାଲ୍‌ଗୁନୀ କହୁଥିଲେ, ''ଏବେ ବି କ'ଣ ତମର ପରୀକ୍ଷା ଶେଷ ହୋଇ ନାହିଁ ସଖା ?

ଚାପା କଣ୍ଠରେ ଶ୍ରୀକୃଷ୍ଣ କହୁଥିଲେ, ''ମୂର୍ଖ ! ରାଜନୀତିରେ ପାପ ପୁଣ୍ୟ ବୋଲି କିଛି ନାହିଁ । ପାପ ହେଉ ପୁଣ୍ୟ ହେଉ, ଯାହା ଯେତେବେଳେ ସ୍ୱାର୍ଥ ପାଇଁ କରିବାକୁ ପଡ଼େ, ରାଜନୀତିରେ ତାହାହିଁ କେବଳ କରାଯାଏ । ଏଥିରେ କେବଳ ଗୋଟିଏ 'ବାଦ' ଯାହାର ନାମ 'ସୁବିଧାବାଦ' ।''

ପ୍ରତିବାଦ ଜଣାଇ ଅର୍ଜୁନ କହୁଥିଲେ, ''କିନ୍ତୁ ଅଗ୍ରଜଙ୍କ ମନରେ କଷ୍ଟ ଦେଇ ଦୁର୍ଯ୍ୟୋଧନଙ୍କୁ ପ୍ରତାରଣା କରି ଆପଣ ଯେଉଁ ସାମ୍ରାଜ୍ୟ ପ୍ରତିଷ୍ଠାର ସ୍ୱପ୍ନ ଦେଖୁଛନ୍ତି, ତାହା ତିଷ୍ଠିପାରିବ ତ ?

ଈଷତ୍ ହାସ୍ୟ କରି ଶ୍ରୀକୃଷ୍ଣ କହୁଥିଲେ, ''ରାଜନୀତିରେ ଶ୍ମଶାନ ବୈରାଗ୍ୟ ଭଲ କାମ ଦିଏ । ଦୁର୍ଯ୍ୟୋଧନ ତମକୁ ଯେଉଁ ଔଷଧ ଦେଇଛନ୍ତି, ମୁଁ ଜାଣେ କାଲି ସକାଳ ପର୍ଯ୍ୟନ୍ତ ତାହାର ପ୍ରଭାବ ନ ଥିବ । ପାର୍ଥ, ତମେ କ'ଣ ଏତକ ଜାଣ ନାହିଁ, ସାମ୍ରାଜ୍ୟ ବିକାରଶୂନ୍ୟ ପାପ ପୁଣ୍ୟର ବହୁ ଊର୍ଦ୍ଧ୍ୱରେ ପଦ୍ମପତ୍ରରେ ବାରି ବିନ୍ଦୁତୁଲ୍ୟ ସାମ୍ରାଜ୍ୟର ଇତିହାସ ପ୍ରକୃତରେ ରକ୍ତଦେଇ ଲେଖା ହୁଏ ନାହି, ହୁଏ କାଳି କଲମରେ । ସେଇ କାଳି କଲମକୁ ପୁଣି କାଞ୍ଚନ ମୂଲ୍ୟରେ କିଣା ଯାଇପାରେ ।

ଅର୍ଜୁନ କହୁଥିଲେ, ''ଆପଣ ଇତିହାସକୁ କିଣି ନେବାର ସ୍ୱପ୍ନ ଦେଖୁଛନ୍ତି ପ୍ରଭୁ ।''

ରହସ୍ୟମୟ ହସ ହସି ଶ୍ରୀକୃଷ୍ଣ କହିଲେ, ରାଜନୀତିରେ ସ୍ୱପ୍ନଜୀବୀ-ମାନଙ୍କର ସ୍ଥାନ ନାହିଁ । ମୁଁ ଚାହେଁ ପାଣ୍ଡବମାନେ ଇତିହାସ ସୃଷ୍ଟି କରିବେ ।

ରାତ୍ରି ଦ୍ରୁତଗତିରେ ତୃତୀୟ ପ୍ରହର ଆଡ଼କୁ ଅଗ୍ରସର ହେଉଥିଲା । କାମ ଆହୁରି ଅନେକ ବାକି । ଅସଲ କାମଟି ତ ଜାଣି ସବୁଠାରୁ କଠିନ । ରଥ ତ୍ୟାଗକରି କୃଷ୍ଣ ଅର୍ଜୁନ ଏଥର ପଦବ୍ରଜରେ କୌରବ ଶିବିର ଆଡ଼କୁ ଆଗେଇ ଚାଲିଥିଲେ ।

କ୍ଳାନ୍ତ କୌରବସେନା ନିଜ ନିଜ ବିଶ୍ରାମ କକ୍ଷରେ ଘୁମାଇ ପଡ଼ିଥିଲେ । କେଉଁଠି କେମିତି ଗୋଟିଏ ଦୁଇଟି ସ୍ଥାନରେ ଆଲୋକ ଶିଖା ତଥାପି ପ୍ରଜ୍ୱଳିତ ରହି ଅନ୍ଧକାରର ଭୀଷଣତା ବଢ଼ାଇ ଦେଉଥିଲା । ରହି ରହି ଶୁଣା ଯାଉଥିଲା ଅତନ୍ଦ୍ର ପ୍ରହରୀ କଣ୍ଠର ତନ୍ଦ୍ରାକୁ ଘୋଷଣା, ତା'ସହିତ ଶ୍ୱାନକୁଳର ଐକ୍ୟତାନ ।

ସତର୍କ ଭାବରେ ଚାରିଆଡ଼କୁ ଅନାଇ ଅନାଇ ଯାଉ ଯାଉ ହଠାତ୍ ଆଲୋକିତ ହୋଇ ଯାଇଥିବା ନଭୋମଣ୍ଡଳର ଗୋଟିଏ ପ୍ରାନ୍ତକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଶ୍ରୀକୃଷ୍ଣ କହୁଥିଲେ, ''ଏହାର ତାତ୍ପର୍ଯ୍ୟ ବୁଝିଛ ସଖା ?''

ନିରୁତ୍ତାପ କଣ୍ଠରେ ଅର୍ଜ୍ଜୁନ ଉତ୍ତର ଦେଲେ, ''ଶୁଣିଚି, ଉଲ୍‌କାପାତରେ ଇନ୍ଦ୍ର ପତନ ହୁଏ ।''

ଶ୍ରୀକୃଷ୍ଣ ଉତ୍ତର ଦେଲେ, ''କୌରବକୁଳର ମୁକୁଟହୀନ ଇନ୍ଦ୍ର ଏଥର ଅସ୍ତାଚଳଗାମୀ ହେବେ, ଏହା ଆଉ ତାହାରି ସୂଚନା ତ' ନୁହେଁ ?''

ଅର୍ଜ୍ଜୁନ କେବଳ ସ୍ତବ୍ଧ ଭାବରେ ଅନାଇ ରହିଲେ ।

କୌରବ ଶିବିରର ଗୋଟିଏ ପ୍ରାନ୍ତରେ ପିତାମହ ଭୀଷ୍ମଙ୍କର ଆବାସ ସ୍ଥଳ । ସେ ପୁଣି କୌରବ ପକ୍ଷର ସେନାପତି । ଗତ ଆଠଦିନ ମଧ୍ୟରେ ପାଣ୍ଡବ ପକ୍ଷର ଯଥେଷ୍ଟ ସେନା ବିନାଶ କରି ସାରିଲେଣି । ପ୍ରତିଜ୍ଞା କରିଛନ୍ତି, ଆସନ୍ତା କାଲି ସେ ଧରଣୀକୁ ଅପାଣ୍ଡବା କରିବେ ।

ସ୍କନ୍ଧାବାର ମଧ୍ୟରେ କୁରୁ ସେନାପତି ଅସ୍ଥିର ଭାବରେ ଏପଟ ସେପଟ ହେଉଥିଲେ । ପରିଧାନରେ ଖଣ୍ଡିଏ ପଟ୍ଟବସ୍ତ୍ର । ଦକ୍ଷିଣ ସ୍କନ୍ଧରୁ ପ୍ରଲମ୍ବିତ ହୋଇଛି ସୂକ୍ଷ୍ମ ଉତ୍ତରୀୟ, ତା' ସହିତ ଶୁଭ୍ର ଉପବୀତ । ଯୁଦ୍ଧକାଳୀନ ସାଞ୍ଜୁ, ଲୌହ, ବର୍ମ, ଶିରସ୍ତ୍ରାଣାଦି ଖୋଲି ରଖି ପିତାମହ ଅନେକ ସ୍ନେହପୂର୍ଣ୍ଣ ଦେଖା ଯାଉଥିଲେ ।

ଶରୀରର ମାଂସପେଶୀ ସବୁ କିଛି କିଛି ଶିଥିଳ ହୋଇ ଆସିଥିଲେ ହେଁ, ତଥାପି ତହିଁରେ କଠିନତାର ଅଭାବ ନାହିଁ । ପୁଣି ଶରୀରର ନାନା ସ୍ଥାନରେ ଅସ୍ତ୍ରଜାତ କ୍ଷତ ପରିଦୃଶ୍ୟମାନ । ପ୍ରଶସ୍ତ କପାଳ ତଳେ ଭାବଗର୍ଭକ ଦୁଇ ଉଜ୍ଜ୍ୱଳଚକ୍ଷୁ ବୟସ ଭାରରେ ପୂର୍ଣ୍ଣ ଦୃଷ୍ଟିକ୍ଷମ ନୁହେଁ । କପୋଳ ତଳେ ଶୁଭ୍ର ସମୁଜ୍ଜ୍ୱଳ ଶ୍ମଶ୍ରୁ-ବାର୍ଦ୍ଧକ୍ୟର ମହିମାମଣ୍ଡିତ ରୂପ ।

କପୋଳ ତଳେ କରନ୍ୟସ୍ତ କରି ପିତାମହ ଏକ କାଷ୍ଠାଧାରରେ ସମ୍ମୁଖକୁ ନିଜର କ୍ଷୀଣ ଦୃଷ୍ଟି ପ୍ରସାରିତ କରି ବସି ରହିଥିଲେ । କକ୍ଷର କୋଣରେ ସ୍ୱର୍ଣ୍ଣଦୀପାଧାରରେ ଜଳୁଥିବା ଦୀପ ଶିଖା କ୍ରମଶଃ ମ୍ଳାନ ହୋଇ ଆସୁଥିଲା । ପିତାମହ ପ୍ରଥମେ ଦୀପପାଳକକୁ ଆହ୍ୱାନ କରି ଦୀପଶିଖାକୁ ଉଜ୍ଜ୍ୱଳ କରିଦେବା ନିମନ୍ତେ ଆଦେଶ ଦେବାକୁ ଭାବୁଥିଲେ ।

ତାଙ୍କ ସମ୍ମୁଖରେ ଭାସୁଥିଲା ନିଜର ଅତୀତ ଜୀବନ । କି ଅଭିଶପ୍ତ, କି କୁଣ୍ଠିତ ଜୀବନ ଏ ସତେ ! ବିଶ୍ୱବିଧାତା କ'ଣ ଟିକିଏ ହେଲେ ସାଂସାରିକ ସୁଖ ତାଙ୍କ ଲଲାଟରେ ଲେଖି ତାଙ୍କୁ ସଂସାରକୁ ପଠାଇ ନଥିଲେ ?

ତାଙ୍କ ଜନ୍ମଲଗ୍ନରେ ହିଁ ତ ପିତାମାତାଙ୍କର ବିବାହ ଭଙ୍ଗ ହୋଇ ଯାଇଥିଲା । ସାମାନ୍ୟ ଗୋଟିଏ ଶବ୍ଦ ପ୍ରୟୋଗରେ କ୍ରୁଦ୍ଧା ଜନନୀ, ଶାନ୍ତନୁଙ୍କର ପତ୍ନୀତ୍ୱ ତ୍ୟାଗ କରି ସ୍ୱସ୍ଥାନକୁ ଫେରି ଯାଇଥିଲେ ।

ପିତା ବା ମାତା କିଏ ବୁଝିଲା ଗୋଟିଏ ସ୍ନେହ କାଙ୍ଗାଳ ଅସହାୟ ବାଳକର କରୁଣ ଆକୃତିକୁ ? ଦଶ ମାସ ଗର୍ଭରେ ଧାରଣ କରି କେଉଁ ଜନନୀ ନିଜର ସନ୍ତାନକୁ ନିର୍ଦ୍ଦୟ ଭାବରେ କୋଳରୁ ଫୋପାଡ଼ି ଦେବ ? ପୁଣି ତାଚ୍ଛଲ୍ୟ କରି କହିବ, ''ଜୀଇଁଲେ ଜୀଉ ମଲେ ମରୁ ।''

ଜନ୍ମ ଲଗ୍ନରେ ଯାହାର ଏପରି ଲାଞ୍ଛନା ତାହାର ଭବିଷ୍ୟତ ଜୀବନ ଯେ କିପରି ହେବ, ତାହାତ ଆଗରୁ ଜଣା ।

ଯୌବନରେ ବିବାହ ନିମତ୍ତେ ଗନ୍ଧର୍ବ ସୋମଦାସ କନ୍ୟା ଅମ୍ବାକୁ ନିର୍ବାଚିତ କରି ମଧ କେଉଁ ଏବେ ମନକାମନା ପୂରଣ ହେଲା ?

ଜନନୀ ଅଭିଶାପରେ ତାଙ୍କର ପୁତ୍ର ହସ୍ତରେ ପୁଣି କୁଆଡ଼େ ପିତା ଶାନ୍ତନୁଙ୍କର ମୃତ୍ୟୁ ହେବ । ତେଣୁ ବରବେଶ ଫିଟା ହେଲା । ଆଉ ଗାନ୍ଧର୍ବୀ ଅମ୍ବା । ସେ ତ ଅନ୍ୟ ଏକ ପୁରାଣ ।

ତା' ପାଇଁ ପର୍ଶୁରାମ ତାଙ୍କୁ କେତେ ଅନୁରୋଧ କଲେ । ବରପୂର୍ବା କନ୍ୟାକୁ ଉଦ୍ଧାର କରିବା ନିମତ୍ତେ କେତେ କାକୁତି ଜଣାଇଲେ । ମାତ୍ର ସେ ଯେ ଭୀଷ୍ମ, ପ୍ରଚଣ୍ଡ ପ୍ରତିଜ୍ଞା ତାଙ୍କର । ସେ ପୁଣି ବିବାହ କରିବେ କିପରି ?

ବିଚାରୀ ଅମ୍ବା ପ୍ରୟାଗରେ ଝାସ ଦେଲା ।

କାହାର ପାଦ ଶବ୍ଦ ଶୁଣା ଯାଉଛି । ଏତେ ରାତ୍ରିରେ କିଏ ବା ଆଉ ଏ ଆଡ଼କୁ ଆସିବ ? ସନ୍ଧ୍ୟା ସମୟରେ ଦୁର୍ଯ୍ୟୋଧନ ଶିବିରକୁ ଆସିଥିଲା । ଯୁଦ୍ଧ ପ୍ରସଙ୍ଗରେ ବହୁ ଆଲୋଚନା ହେଲା । ଦୁର୍ଯ୍ୟୋଧନର ପ୍ରକୃତ ଉଦ୍ଦେଶ୍ୟ ବୁଝିବାକୁ କିନ୍ତୁ ଭୀଷ୍ମଙ୍କୁ ଅଧିକ ସମୟ ଲାଗି ନ ଥିଲା । ସେ ତାକୁ ସ୍ପଷ୍ଟ ଜଣାଇ ଦେଇଥିଲେ, ଆଜିର ପ୍ରତିଜ୍ଞା ସମ୍ପର୍କରେ ସେ ସଂପୂର୍ଣ୍ଣ ଅବହିତ ଅଛନ୍ତି । ପାଣ୍ଡବମାନେ କାଲିରଅସ୍ତସୂର୍ଯ୍ୟ ଦେଖିବା ନିମନ୍ତେ ଜୀବିତ ନଥିବେ । ତେବେ ଦୁର୍ଯ୍ୟୋଧନ ଏହିଭଳି ଭ୍ରାତୃରକ୍ତ ପିପାସା ଅଚିରେ ତ୍ୟାଗ କରିବ ବୋଲି ସେ ଆଶା କରନ୍ତି । ଦୁର୍ଯ୍ୟୋଧନର ନିଷ୍ପତ୍ତି ଏବେ ମଧ ବଦଳିଲେ ଧର୍ମପ୍ରାଣ ପାଣ୍ଡବମାନଙ୍କର ଜୀବନ ରକ୍ଷା ପାଇପାରନ୍ତା ବୋଲି ସେ ଭାବନ୍ତି ।

ମଥା ଝୁକାଇ ପ୍ରଣାମ ଜଣାଇ ଦୁର୍ଯ୍ୟୋଧନ ବିଦାୟ ନେଇଥିଲା । ଉଜ୍ଜ୍ୱଳ ଦୀପାଲୋକରେ ଝଟକି ଉଠିଥିଲା ତା'ର ମଥାର ଅନର୍ଘମଣି ମୁକୁଟ ।

ସତେ କ'ଣ କୁରୁପତିର ମନୋଭାବ ବଦଳିବ ? ଈଶ୍ୱରେଚ୍ଛା ବଳୀୟସୀ ।

ସ୍ତିମିତ ଦୀପାଲୋକରେ ନାତିଦୂରରେ ସଯତ୍ନରକ୍ଷିତ ଉର୍ଦ୍ଧ୍ୱସ୍ୱଳ ନୀଳବାଣ ଭୁଜବାଣ ଉପରେ ଭୀଷ୍ମଙ୍କର ଦୃଷ୍ଟି ପଡ଼ିଲା ।

ଆଃ ! ଏ ସେଇ ପାଣ୍ଡବ ଘାତକ ବାଣ । ବିଚରା ଧର୍ମନିଷ୍ଠ ପାଣ୍ଡବ । କିଏ ତାଙ୍କୁ ଏହି ଧ୍ୱଂସକାରୀ ଅସ୍ତ୍ର କବଳରୁ ରକ୍ଷା କରିବ ? ଯଦି କୌଣସିମତେ ଏ ବାଣକୁ ନଷ୍ଟ କରି ଦିଆଯାଇପାରନ୍ତା !! ମାତ୍ର ସେ ଯେ ଦୁର୍ଯ୍ୟୋଧନର ଅନ୍ନଦାସ । ଏଥିରୁ ତାଙ୍କର ମୁକ୍ତି କାହିଁ ?

ଭୀଷ୍ମ ଦୀର୍ଘଶ୍ୱାସ ପକାଇ ବାହାରକୁ ଅନାଇଲେ । ପାଦ ଶବ୍ଦ କ୍ରମଶଃ ନିକଟକୁ ଆସୁଛି । କିଏ ଆସୁଛି ଏତେ ରାତିରେ ?

ପିତାମହ ପରିପୂର୍ଣ୍ଣ ଦୃଷ୍ଟିମେଲି ସ୍ତିମିତ ଦୀପାଲୋକରେ ଆଗେଇ ଆସୁଥିବା ଛାୟାମୂର୍ତ୍ତି ଆଡ଼େ ଅନାଇ ରହିଲେ ।

ନାଃ ଦୃଷ୍ଟିଶକ୍ତି ସତରେ କ୍ଷୀଣ ହୋଇଗଲାଣି ।

ଛାୟାମୂର୍ତ୍ତି ପିତାମହଙ୍କ ପାଦମୂଳରେ ପ୍ରଲମ୍ବିତ ହେଲେ । ଏ କିଏ ତେବେ ? ପ୍ରଣତ ମୂର୍ତ୍ତିକୁ ହଠାତ୍ ଉଠାଇ ଉଠାଉ ଦୀପାଲୋକରେ ମୁକୁଟରେ ଅଜସ୍ର ମଣି ମାଣିକ୍ୟ ଝଲସି ଉଠି ପିତାମହଙ୍କୁ ପ୍ରାୟ ଅନ୍ଧ କରି ପକାଇଲେ ହେଁ ମୁକୁଟଧାରୀଙ୍କୁ ଚିହ୍ନିବାରେ ତାଙ୍କର ବିଳମ୍ବ ହେଲା ନାହିଁ । ଦୁର୍ଯ୍ୟୋଧନ ତେବେ ପୁଣି ଆସିଛି । ଈଶ୍ୱର ତାକୁ ସତେ ସଦ୍‌ବୁଦ୍ଧି ଦେଇଛନ୍ତି ! ପିତାମହ କୌଣସିମତେ କହିଲେ, ''ବସ'' ।

ଛାୟାମୂର୍ତ୍ତି ଦୀପାଧାରକୁ ପଛରେ ରଖି ବସୁ ବସୁ କହିଲା, ''ପିତାମହ'' ।

ଭୀଷ୍ମ କହିଲେ, ''କିନ୍ତୁ ମୁଁ ତ ତୁମକୁ ପ୍ରତିଶ୍ରୁତି ଦେଇଛି ଯେ, ପାଣ୍ଡବମାନେ କାଲି...''

ଛାୟାମୂର୍ତ୍ତି ଉଦାସ କଣ୍ଠରେ କହିଲା, ''ତାର କୌଣସି ପ୍ରୟୋଜନ ହେବନାହିଁ ପିତାମହ । ମୁଁ ମୋର ମତ ପରିବର୍ତ୍ତନ କରିସାରିଛି !''

ଭୀଷ୍ମଙ୍କର ତନ୍ଦ୍ରା ତୁଟିଗଲା । ସେ ସନ୍ଦିଗ୍ଧ କଣ୍ଠରେ କହିଲେ, 'ଅର୍ଥାତ୍ ?''

ଛାୟା କିଛି ସମୟ ନୀରବ ରହିଲା । ତା'ପରେ ଧୀର କଣ୍ଠରେ କହିଲା, ''ରକ୍ତର ଅତଳାନ୍ତ ସମୁଦ୍ରରେ ଭାସି ଭାସି ଯେଉଁ ପୋତାଶ୍ରୟରେ ପହଞ୍ଚିବାକୁ ହୁଏ, ତାର ଠିକଣା ମୁଁ ହଜାଇ ଦେଇଛି ପିତାମହ । ମୁଁ ଯୁଦ୍ଧ ନୁହେଁ, ଶାନ୍ତି ଚାହେଁ । ପାଣ୍ଡବମାନେ ଶାନ୍ତିରେ ରହନ୍ତୁ । ମୁଁ ବରଂ ବନବାସୀ ହେବି ।''

ଉଲ୍ଲସିତ ଭୀଷ୍ମ ଏଥର କହୁଥିଲେ, ''ମୋର ଆୟୁଷ ନେଇ ବଞ୍ଚିରହ ବାବୁ ! କେଡ଼େ ବଡ଼ ପାଷାଣର ଗୁରୁଭାର ଯେ ତୁ ମୋ ମୁଣ୍ଡରୁ ଓହ୍ଲାଇ ଦେଲୁ, ତାହା ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । କୌରବମାନଙ୍କ ପାଇଁ ରହିବା ଜାଗାର ଅଭାବ ହେବ ନାହିଁ ।

ଛାୟା କହିଲା, ''ସେ ପ୍ରଶ୍ନର ବିଚାର ପରେ ହେବ । ଆପାତତଃ, ପାଣ୍ଡବବିନାଶୀ ସେ ଯେଉଁ ସର୍ବନାଶୀ ବାଣ ଆପଣ ରଖିଛନ୍ତି, ତାକୁ ନଷ୍ଟ କରି ଦିଅନ୍ତୁ, ଏହାହିଁ ମୋର ଅନୁରୋଧ ।''

ବିମୂଢ଼ ଭୀଷ୍ମ କହିଲେ, ନଷ୍ଟ ! କିନ୍ତୁ ....

ବିନୀତ କଣ୍ଠ ଛାୟା କହିଲା, ''କିନ୍ତୁ କରନ୍ତୁ ନାହିଁ ପିତାମହ ! ଅସ୍ଥିର ମତି ମଣିଷର ମତି ବଦଳିଯିବାକୁ କେତେ କ୍ଷଣ ? କିଏ ଜାଣେ କାଲି ପ୍ରାତଃରେ କ'ଣ ହେବ ? ଆପଣ ମୋ ଆଗରେ ଏ ଅସ୍ତ୍ର ନଷ୍ଟ କରିଦିଅନ୍ତୁ ।''

ପିତାମହ କହିଲେ, ''ତୁ ଠିକ୍ କହିଛୁ ବାବୁ । ଅସ୍ତ୍ରର ପ୍ରୟୋଜନ ଆଉ କ'ଣ ? ମୁଁ ତାକୁ ଏଇ ତୋ ସମ୍ମୁଖରେ... ନା, ନା, ଦିବ୍ୟାସ୍ତ୍ରକୁ ମୁଁ ନିଜ ହାତରେ ନଷ୍ଟ କରିବାକୁ ଚାହେଁନା । ତୁ ବରଂ ନିଜେ ଏହାକୁ ନେଇ ନଷ୍ଟ କରିଦେବୁ ।''

ପିତାମହ ବାଣ ଦୁଇଟିକୁ ଅର୍ଜୁନଙ୍କର ପ୍ରସାରିତ ହସ୍ତରେ ସମର୍ପି ଦେଲେ । ଅର୍ଜୁନ ପିତାମହଙ୍କର ପାଦତଳେ ପ୍ରଣତ ହେଲେ । ତାଙ୍କୁ ଉଠାଉ ଉଠାଉ ପିତାମହ କହୁଥିଲେ, ''ଆଜିଠାରୁ ଗାଙ୍ଗେୟର ଦାୟିତ୍ୱ ଶେଷ ହେଲା । ସେ ଏଥର ନିଶ୍ଚିନ୍ତରେ ଶୋଇପାରିବ ।''

ଶିବିର ବାହାରେ ଅପେକ୍ଷମାଣ ଶ୍ରୀକୃଷ୍ଣଙ୍କ ନିକଟକୁ ଦ୍ରୁତପଦରେ ଫେରିଆସି ଅର୍ଜୁନ କହୁଥିଲେ, ''କ୍ରୀଡ଼ନକ ଭଳି ମୋତେ ବ୍ୟବହାର କରି କେତେ ଖେଳ ଆଉ ଖେଳିବ ସଖା । ପରୀକ୍ଷା କ'ଣ ତଥାପି ଶେଷ ହୋଇନାହିଁ ?''

ଶ୍ରୀକୃଷ୍ଣ ଗମ୍ଭୀର ହୋଇଗଲେ । ପାର୍ଥଙ୍କ କାନ୍ଧରେ ନିଜର ହସ୍ତ ସ୍ଥାପନ କରି କହିଲେ, ''ତୁ ମୋର ପ୍ରାଣର ବନ୍ଧୁ !! ତୋତେ ଆଘାତ ଦେଲେ ସେଇ ଆଘାତ ଯେ ସହସ୍ର ଗୁଣ ହୋଇ ଫେରିଆସି ମୋ ନିଜ ଦେହରେ ବାଜେ, ଏ କଥା କ'ଣ ତୁ ଜାଣିନାହୁଁ ?''

ଅର୍ଜୁନଙ୍କ ପଦ୍ମପଲାଶ ନୟନରୁ ବହି ଚାଲିଥିଲା ଅବିଶ୍ରାନ୍ତ ନୀରଧାରା ।

ସେଆଡ଼େ ଅନାଇ ଶ୍ରୀକୃଷ୍ଣ କହିଲେ, ''ଶତକୌରବର ଆତ୍ମଦାନରେ ଯେ ପଞ୍ଚପାଣ୍ଡବର ଅଭିଷେକ, ରାଜନୀତିରେ ଯେ ଆତ୍ମନୀତି ବ୍ୟତୀତ ନୀତି ନାହିଁ, ଏକଥା ପାଣ୍ଡବମାନେ କେଉଁକାଳରେ ବୁଝିଛନ୍ତି ଯେ, ତମେ ଏବେ ବୁଝିବ ? ଅଶ୍ରୁ ସମ୍ବରଣ କର । ରାଜନୀତିରେ ଏହାଭଳି ସହାୟକ ଆଉ ଦ୍ୱିତୀୟ ନାହିଁ ।''

ଶ୍ରୀକୃଷ୍ଣ ଏଥର ହସି ଉଠିଲେ ।

• ○○○

# ଶୋଣିତ ସମୁଦ୍ର

ଜେନାବଳୀପୁରର ଦିଗ୍‌ବଳୟରେ ରକ୍ତର ହୋରି ଖେଳି ସେଦିନ ସୂର୍ଯ୍ୟ ଅସ୍ତ ଯାଉଥିଲେ । ସାରା ଆକାଶ ନୀଡ଼ବାହୁଡ଼ା ପକ୍ଷୀକୁଳର କାକଳିରେ ପୂର୍ଣ୍ଣ । ପୂର୍ବାଶାର ପାଣ୍ଡୁର ବକ୍ଷ ଉପରେ ଭାସି ଯାଉଥିଲା ରଜତସନ୍ନିଭ ରଥାକାର ମେଘ ଖଣ୍ଡେ । ଇନ୍ଦ୍ରସାରଥି ମାତଳି ସତେ ଯେପରି ଦେବରାଜଙ୍କ ନିମନ୍ତ୍ରଣ ନେଇ ଜରୁରୀ କାର୍ଯ୍ୟରେ ବାହାରି ପଡ଼ିଛନ୍ତି । କାଲି ଏତେବେଳକୁ ଜେନାବଳୀପୁରର ଶ୍ୟେନପକ୍ଷୀ ଲାଞ୍ଛିତ ରକ୍ତପତାକରଥ-ଯୂଥ ରାଜଧାନୀଠାରୁ ବହୁ ଦୂରକୁ ଚାଲି ଯାଇଥିବ । ନେତୃତ୍ୱ ନେଉଥିବେ ଜେନାବଳୀପୁର ସମ୍ରାଟ ଦୈତ୍ୟକୁଳ ଚୂଡ଼ାମଣି ଜୟସିଂହ ।

ମହାଦେଇ ବିରୂପା ଚନ୍ଦ୍ରଶାଳାପୁରରେ ଦଣ୍ଡାୟମାନା ରହି ଅସ୍ତସୂର୍ଯ୍ୟର ବିଦାୟକାଳୀନ ମହୋତ୍ସବ ଦେଖୁ ଦେଖୁ ଦୀର୍ଘଶ୍ୱାସ ପକାଇଲେ । କି ଅସହାୟ ତାଙ୍କର ଜୀବନ ! ସାରା ସଂସାର ଜାଣେ ଚକ୍ରବର୍ତ୍ତୀ ଦୈତ୍ୟସମ୍ରାଟ ଜୟସିଂହଙ୍କର ପାଟମହିଷୀ ସେ ! ପ୍ରବଳ ପ୍ରତାପୀ ମହିଷାସୁରର ପଣନାତି ଜୟସିଂହଙ୍କର ଭ୍ରୂକୁଞ୍ଚନରେ ସୃଷ୍ଟି ପ୍ରକମ୍ପିତ ହୁଏ, ଅଙ୍ଗୁଳି ହେଳନରେ ଇନ୍ଦ୍ର ସ୍ୱର୍ଗପୁରୀ ଛାଡ଼ି ପଳାନ୍ତି । ତାଙ୍କର ଅର୍ଦ୍ଧାଙ୍ଗିନୀ ସେ ! ସଂସାରରେ କ'ଣ ତାଙ୍କର ଅପ୍ରାପ୍ୟ ? ଧନ ଜନ ସୁଖ ଐଶ୍ୱର୍ଯ୍ୟ କେଉଁଥିରେ ତାଙ୍କର ଊଣା ? ଅଥଚ ସେ ନିଜେ ଜାଣନ୍ତି, ଏ ବିପୁଳ ସଂପ୍ରାପ୍ତିର କଳ କୋଳାହଳ ମଧ୍ୟରେ ସେ କେତେ ଏକାକୀ କେଡ଼େ ନିଃସଙ୍ଗ ! ଭିକାରୁଣୀଟିଏ ମଧ୍ୟ ତାଙ୍କର ଭାଗ୍ୟକୁ ଈର୍ଷା କଲାଭଳି କିଛି ନାହିଁ ।

ଧନରେ, ପ୍ରଭୁତ୍ୱରେ ସଂସାରର ଆଖି ଝଲକା ହୋଇଯାଏ ସିନା, ସେଥିରେ ମନ ଭରେ କି ? ଟିକିଏ ସ୍ନେହ ସୋହାଗ, ଦୁଇପଦ ମିଠାକଥା ଏତକ ବା ତାଙ୍କୁ କେଉଁଠି ମିଳିଲା ?

ଦୈତ୍ୟସମ୍ରାଟ ମହାନ ପରାକ୍ରମୀ, ଦୋର୍ଦ୍ଦଣ୍ଡ-ପ୍ରତାପୀ, ତାଙ୍କର କେତେ କାମ । ଅହରହ ଯୁଦ୍ଧବିଗ୍ରହ ଲାଗି ରହିଛି । ସେ ବୁଝନ୍ତି ଶରୀରର ଭାଷା, ମନର ଭାଷା ପଢ଼ିବାକୁ ତାଙ୍କୁ ବା ସମୟ କାହିଁ ?

ଭୋଗର ଉଦ୍ଦାମ ସ୍ରୋତରେ ଭାସିଯିବା ଆଉ ନିଜ ଅହଂର ସନ୍ତୋଷ ନିମନ୍ତେ ଜୀବନ ପଣ କରିଦେବା ଦୈତ୍ୟକୁଳର ଏଇତ ଚିରନ୍ତନ ରୀତି । ମହାବୀର ମହିଷାସୁରଙ୍କ

କାଳରୁ ଏହି ଜୀବନଧାରା ଏପର୍ଯ୍ୟନ୍ତ ଗଡ଼ି ଆସିଛି । ଦୈତ୍ୟପତିମାନେ ଅହଂକାର ପରିତୃପ୍ତି ନିମନ୍ତେ ଜୀବନ ଦେଇ ଦେଇଛନ୍ତି ସିନା ନିଜର ଆନ୍ ଛାଡ଼ିନାହାନ୍ତି ।

ସମ୍ରାଟ ଜୟସିଂହ କାଲି ବାହାରିବେ ଯୁଦ୍ଧ ପାଇଁ । ଯୁଦ୍ଧ ହେବ ପାଣ୍ଡବ ସେନା ଆଉ ଦୈତ୍ୟବାହିନୀ ମଧ୍ୟରେ । ଶୁଣିଛନ୍ତି ବିରୂପା, ଚକ୍ରବର୍ତ୍ତୀ ସମ୍ରାଟ ଯୁଧିଷ୍ଠିର ରାଜସୂୟ ଯଜ୍ଞର ଆୟୋଜନ କରିଛନ୍ତି । ଜମ୍ବୁଦ୍ୱୀପର ସମସ୍ତ ରାଜନ୍ୟମଣ୍ଡଳୀ ସେଠାକୁ ନିମନ୍ତ୍ରିତ । ସାମନ୍ତରାଜ ଭାବରେ ଯଜ୍ଞର କୌଣସି ନା କୌଣସି ଦାୟିତ୍ୱ ଗ୍ରହଣ କରିନେଇ କୁରୁକୁଳ ପ୍ରତି ନିଜର ଆନୁଗତ୍ୟ ସ୍ୱୀକାର କରି ନେଇଛନ୍ତି ।

ଆଜି ଜମ୍ବୁଦ୍ୱୀପରେ ପାଣ୍ଡବମାନଙ୍କ ବୀରତ୍ୱ ପ୍ରସଙ୍ଗ ନ ଜାଣେ କିଏ ? ମହାଦେଈ ବିରୂପା ମଧ ନାରଦ ମୁନୀଙ୍କଠାରୁ କୌରବ ପାଣ୍ଡବ ବିବାଦର ବିବରଣୀ ଶୁଣିଛନ୍ତି । ଜତୁଗୃହ ମଧ୍ୟରୁ ପାଣ୍ଡବମାନଙ୍କର ପଳାୟନ ଏବଂ ଦ୍ରୌପଦୀ ସ୍ୱୟମ୍ବର ପ୍ରସଙ୍ଗ ଶୁଣି ମନେ ମନେ ସୃଷ୍ଟିକର୍ତ୍ତାଙ୍କୁ ଧନ୍ୟବାଦ ଦେଇଛନ୍ତି ।

ବିବାହ ପରେ ସ୍ୱୟଂ ମହାରାଜ ଧୃତରାଷ୍ଟ୍ର ପାଣ୍ଡବମାନଙ୍କୁ ହସ୍ତିନାପୁର ଫେରାଇ ଆଣିଥିଲେ । ପିତାମହ ଭୀଷ୍ମ, ମହାମନ୍ତ୍ରୀ ବିଦୁର ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ ଏମାନେ ସମସ୍ତେ ଚାହୁଁଥିଲେ ଯୁଧିଷ୍ଠିର ହୁଅନ୍ତୁ ହସ୍ତିନାପୁରର ଯୁବରାଜ । ମାତ୍ର ପୁତ୍ରସ୍ନେହ ହିଁ ବିଜୟୀ ହେଲା । ଦୁର୍ଯ୍ୟୋଧନର ପ୍ରଚଣ୍ଡ ଚାପରେ ଧୃତରାଷ୍ଟ୍ର ହସ୍ତିନାପୁର ବିଭାଜନ ନିମନ୍ତେ ଏକ ପ୍ରସ୍ତାବ ରଖିଲେ । ଅଗତ୍ୟା ଶାନ୍ତି ପାଇଁ ପିତାମହ ସେଥିରେ ରାଜି ହେଲେ ।

ଊଷରଭୂମି ବାରୁଣାବତ ମୟଦାନବର ଯାଦୁକରୀ ସ୍ପର୍ଶରେ ହସି ଉଠିଲା । ଅଚିରେ ବାରୁଣାବତ ହୋଇଉଠିଲା ଇନ୍ଦ୍ରପୁରୀ ତୁଲ୍ୟ ଲାବଣ୍ୟମୟୀ ଇନ୍ଦ୍ରପ୍ରସ୍ଥ । ଏଇଠି ଏବେ ରାଜସୂୟ ଯଜ୍ଞର ଆୟୋଜନ କରାଯାଇଛି ।

ଶୁଣିଛନ୍ତି ମହାଦେଈ ମଗଧରାଜ ମହାପ୍ରତାପୀ ଜରାସନ୍ଧର ଅକାଳ ମୃତ୍ୟୁର କାହାଣୀ । ଦ୍ୱିତୀୟପାଣ୍ଡବ ଭୀମ ତୃଣଖଣ୍ଡ ଭଳି ଏଡ଼େ ଶକ୍ତିଶାଳୀ ରାଜାଙ୍କୁ ଦୂରକୁ ନିକ୍ଷେପ କରି ହତ୍ୟା କରିଥିଲେ ଏବଂ ମଗଧ ବନ୍ଦୀଶାଳାରୁ ଲକ୍ଷେ ବନ୍ଦୀ ନୃପତିଙ୍କୁ ଉଦ୍ଧାର କରିଥିଲେ ।

ଆଜି ସେଇ ରାଜସୂୟ ଯଜ୍ଞ ପରିସମାପ୍ତିର ପର୍ଯ୍ୟାୟରେ । ବାସୁଦେବ ଶ୍ରୀକୃଷ୍ଣ ଚକ୍ରଧରି ଯଜ୍ଞ ରକ୍ଷା କରୁଛନ୍ତି । କୌରବମାନେ ତ କେତେ କେତେ ଫାନ୍ଦ ପାତିଲେ ପାଣ୍ଡବମାନଙ୍କୁ ସମୂଳେ ବିନାଶ କରିବାକୁ । ମାତ୍ର ସେମାନେ ଜାଲ କାଟି କୁଶଳରେ ବାହାରି ଆସିଲେ । ଚକ୍ରଧାରୀ କୃଷ୍ଣ ଯାହାର ସହାୟ ସେମାନଙ୍କର କିଏ ଅବା କି କ୍ଷତି

କରିପାରନ୍ତା ? ଦ୍ୱାଦଶବର୍ଷୀୟ କିଶୋର ଦୁର୍ଯ୍ୟୋଧନ ପରା ବିଷଲଡୁ ଦେଇ ଭୀମକୁ ମାରିବାର ଚକ୍ରାନ୍ତ କରିଥିଲା । ପରିଣାମ କ'ଣ ହେଲା ? ଭୀମ ପାତାଳପୁର ଯାଇ ସେଠାରୁ ଅମୃତ ପିଇ ହସି ହସି ଫେରି ଆସିଲା । ଆଜି ଏ କଥା ଜମ୍ବୁଦ୍ୱୀପରେ ନ ଜାଣେ କିଏ ?

ଆକାଶର ନିବିଡ଼ ତମସା ଚିରି ପ୍ରତିକୂଳ ବାୟୁର ବିରୋଧରେ ପକ୍ଷଚାଳନା କରି ଭାସି ଚାଲିଛି ଗୋଟିଏ ନିଃସଙ୍ଗ ବଳାକା । ସେଇ ଆଡ଼କୁ ଅନାଇ ବିରୂପା ଭାବୁଥିଲେ, ଆଜି ଏ ନିରନ୍ଧ୍ର ତମସାଚ୍ଛନ୍ନ ପ୍ରତିକୂଳ ପରିବେଶରେ ସେ ନିଜେ ମଧ୍ୟ ଏଇ ବଳାକା ଭଳି ସାଙ୍ଗସାଥିହୀନ ହୋଇ ପଡ଼ିଛନ୍ତି । ପୁତ୍ରକନ୍ୟା ଆତ୍ମୀୟ ପରିଜନ କେହି ନାହାନ୍ତି । ଦିଗ୍‌ବଳୟ ପ୍ରାନ୍ତର ଏଇ ଅସ୍ତୋନ୍ମୁଖୀ ତାରକାଟି ଭଳି ତାଙ୍କର ଜୀବନ । ଜୀବନ ଆଉ ମୃତ୍ୟୁର ସନ୍ଧିକ୍ଷଣରେ ଦପ୍‌ଦପ୍ ହେଉଛି । କେତେବେଳେ ଯେ ଲିଭିଯିବ କିଏ ଜାଣେ ? ଅତୀତର ଗୋଟିଏ ଘଟଣା ମହାଦେଈଙ୍କର ମନେ ପଡୁଥିଲା । ଖୁବ୍ ବେଶିଦିନର କଥା ନୁହେଁ । ସେତେବେଳେ ବିରୂପା ଜୟସିଂହଙ୍କର ହାତଧରି ଜୈନାବଳୀପୁରର ରାଜାନ୍ତଃପୁର ମଣ୍ଡନ କରିସାରି ଥାଆନ୍ତି । ପ୍ରଚଣ୍ଡ ପ୍ରତାପଶାଳୀ ଗୋସିଂହ ଜୈନାବଳୀପୁରର ରାଜସିଂହାସନରେ । ଜୟସିଂହ ଯୁବରାଜ । ଏତିକିବେଳେ ଦ୍ୱାରକାପୁର ସହିତ ଜୈନାବଳୀପୁର ନରେଶଙ୍କର ବାଧିଲା ଭୀଷଣ ସଂଗ୍ରାମ ।

ଗୋଟିଏ ପକ୍ଷରେ ଦୁର୍ଦ୍ଧର୍ଷ ଯାଦବବାହିନୀ । ଅନ୍ୟ ପକ୍ଷରେ ଜୈନାବଳୀପୁରର ଥାଟ । ଦୀର୍ଘଦିନ ଧରି ଚାଲିଲା ସଂଗ୍ରାମ । ଅସୁର ବାହିନୀର ପ୍ରଚଣ୍ଡ ଆକ୍ରମଣରେ ଅବଶେଷରେ ଯାଦବବାହିନୀ ଝଡ଼ ବାତ୍ୟାରେ ସାମାନ୍ୟ ତୃଣଖଣ୍ଡ ଭଳି କାହିଁ କୁଆଡ଼େ ଉଡ଼ିଗଲେ । ଦ୍ୱାରକା ପଦାନତ ହେଲା । ପରାଜିତ ବଳରାମ ପ୍ରାଣ ଭୟରେ ଆତ୍ମଗୋପନ କଲେ ପାତାଳପୁରରେ । ଦର୍ପିଷ୍ଠ ଗୋସିଂହ ବାସୁଦେବ ଆଉ ପଦ୍ମନ ଦୁହିଁଙ୍କୁ ଧରି ପ୍ରଜ୍ୱଳିତ ଯାଗକୁଣ୍ଡ ମଧ୍ୟକୁ ନିକ୍ଷେପ କଲା ।

ତା'ପରେ ଦ୍ୱାରକାରେ ଚାଲିଲା ଦୈତ୍ୟବାହିନୀର ତାଣ୍ଡବ ନୃତ୍ୟ । ନଗର ପୁର ଜୁର ହେଲା । ଦ୍ୱାରକାପୁରର ରାଜକୋଷ ଦୈତ୍ୟମାନଙ୍କର କରତଳ ଗତ ହେଲା । ମାତ୍ର ସେତିକିରେ ଗୋସିଂହର କୋପ ଶାନ୍ତ ହେଲା ନାହିଁ । ବାସୁଦେବ ମହିଷୀ ସତ୍ୟଭାମାଙ୍କୁ ଯୁଦ୍ଧବନ୍ଦୀ ରୂପରେ ଧରି ଗୋସିଂହ ବାହୁଡ଼ା ବିଜୟ କଲା ।

ଦୈବ ଉପରେ ବଳ କାହାର ? ମଧ୍ୟମପାଣ୍ଡବ ଅର୍ଜୁନ ଏତିକିବେଳେ ବନବାସରେ । ଭବାନୀ ନଦୀ ତୀରରେ ଅଛି କାମେଶ୍ୱର ପର୍ବତ । ସେଇଠି ଏକାକୀ ବିଚରଣ କରୁଛନ୍ତି ଧନୁର୍ଦ୍ଧାରୀ ପାର୍ଥ । ରଥାରୂଢ଼ା ସତ୍ୟଭାମାଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଲା । ଜୀବନ ବିକଳରେ ସେ ଅର୍ଜୁନଙ୍କୁ ଡାକ ପକାଇଲେ ।

ରଥାରୂଢ଼ା କୁରରୀସମ ରୋରୁଦ୍ୟମାନା ସତ୍ୟଭାମାଙ୍କୁ ଦେଖି ଅର୍ଜୁନ ହୁଏତ ପ୍ରଥମେ କିଛି ବୁଝିପାରି ନ ଥିଲେ । ମାତ୍ର ପ୍ରକୃତ ଘଟଣା ବୁଝିବାକୁ ତାଙ୍କୁ ବିଶେଷ ବିଳମ୍ବ ମଧ୍ୟ ହୋଇ ନ ଥିଲା । ଦ୍ୱାରକାପୁର ସହିତ ଚ୍ଚେନାବଳୀପୁରର ରାଜନୈତିକ ସମ୍ପର୍କ ତାଙ୍କୁ ଅଜଣା ନ ଥିଲା । ପୁଣି ଶ୍ୟେନଲାଞ୍ଛିତ ରକ୍ତପତାକାରୁ ସେ ସହଜରେ ଦୈତ୍ୟସେନାକୁ ଚିହ୍ନିପାରି ଥିଲେ ।

ତା'ପରେ ଆରମ୍ଭ ହେଲା ସଂଗ୍ରାମ, ଭୀଷଣ ସେ ଯୁଦ୍ଧ । ଗୋଟିଏ ପକ୍ଷରେ ବିଜୟୋନ୍ମତ୍ତ ବଳଦର୍ପୀ ଅସୁରବାହିନୀ, ଅନ୍ୟ ପକ୍ଷରେ ମଧ୍ୟମ ପାଣ୍ଡବ ଅର୍ଜୁନ ଏକାକୀ । ଗୋସିଂହର ପରମାୟୁ ଶେଷ ହୋଇ ଆସିଥିଲା ।

ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟାର ଆବର୍ତ୍ତରେ ଶୁଷ୍କପତ୍ର ଭଳି ସେଦିନ ଚ୍ଚେନାବଳୀପୁରର ଅପରାଜେୟ ବାହିନୀ ଛିନ୍ନଭିନ୍ନ ହୋଇ ଯାଇଥିଲେ । ଶେଷରେ ହାବୋଡ଼ା ଶର ମାରି ଅର୍ଜୁନ ଦୈତ୍ୟପତି ଗୋସିଂହକୁ ଶତେକ ଯୋଜନ ଦୂରକୁ ଫିଙ୍ଗି ଦେଇଥିଲେ । ଶକ୍ରାବତୀଙ୍କୁ ଉଦ୍ଧାର କରି ସସମ୍ମାନେ ଦ୍ୱାରକାପୁରକୁ ଫେରାଇ ଆଣିଥିଲେ ।

ବନସ୍ପତିର ପତନରେ ବନସ୍ଥଳୀ ପ୍ରକମ୍ପିତ ହେଲାପରି ଚ୍ଚେନାବଳୀପୁରର ସ୍ଥିତି ସେଦିନ ଦୋହଲି ଯାଇଥିଲା । ଯୁଦ୍ଧସ୍ଥଳୀରୁ ସଂଗୃହୀତ ଗୋସିଂହ ଦୈତ୍ୟର ରାଜମୁକୁଟ ଶେଷରେ ଜୟସିଂହଙ୍କ ଶିରମଣ୍ଡନ କରିଥିଲା । ତା' ପରେ ବିତି ଯାଇଥିଲା ନିରୁପଦ୍ରବ କେତୋଟି ବର୍ଷ । ବିରୂପା ଦୁଃସ୍ୱପ୍ନ ପରି ସେଇ ରକ୍ତଲାଞ୍ଛିତ ଦିନଗୁଡ଼ିକୁ ଭୁଲିଯାଇ ସଂସାର ଧର୍ମରେ ମନ ଦେଇଥିଲେ । ମାତ୍ର ଦୈତ୍ୟର ଜୀବନରେ କାହିଁ ଶାନ୍ତି, କାହିଁ ନିଶ୍ଚିତତା । ଜନ୍ମଲଗ୍ନରେ ବୋଧହୁଏ, ବିଧାତା ଏମାନଙ୍କୁ ଚିର ଅଶାନ୍ତ ହେବାର ଅଭିଶାପ ଦେଇ ପଠାଇଥାନ୍ତି ! ନଚେତ୍ କଣ୍ଟାବାଡ଼ରେ ଲୁଗା ପକାଇ କଳି ଭିଡ଼ାଇବାର ଘୃଣିତ ପ୍ରକୃତିକୁ ଏମାନେ ଛାଡ଼ି ପାରନ୍ତେ ନାହିଁ କିପରି ?

ଗୋଟିଏ କଥା ଏପର୍ଯ୍ୟନ୍ତ ବୁଝିପାରୁ ନାହାଁନ୍ତି ବିରୂପା । ମହାରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞ କରୁଛନ୍ତି । ତହିଁକି ସେ କାହାକୁ ନିମନ୍ତ୍ରଣ କରିବେ ବା ନ କରିବେ, ଏହା ତାଙ୍କର ସଂପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର । ଯଜ୍ଞରେ ଅଛନ୍ତି ବାସୁଦେବ କୃଷ୍ଣ । ଚ୍ଚେନାବଳୀପୁର ସହିତ ଯାଦବମାନଙ୍କର ସମ୍ପର୍କ କଥା ଯୁଧିଷ୍ଠିରଙ୍କୁ ଅଜଣା ନ ଥିବ । ଅଯଥା ଉତ୍ତେଜନା ଏଡ଼ାଇବାକୁ ସେ ଯଦିବା ଚ୍ଚେନାବଳୀପୁରକୁ ନିମନ୍ତ୍ରଣ ନ ପଠାଇଲେ, ଏଥିରେ ତାଙ୍କର ଅପରାଧ ରହିଲା କେଉଁଠି ? ଯଦୁପତି କୃଷ୍ଣ ତାଙ୍କର ସମ୍ପର୍କୀୟ । ପୁଣି ପ୍ରାଣର ବନ୍ଧୁ । ତାଙ୍କୁ ସେ ଛାଡ଼ିପାରନ୍ତେ ନାହିଁ । ତେଣୁ ଚ୍ଚେନାବଳୀପୁରକୁ ନିମନ୍ତ୍ରଣ ନ ଦେଇ ସେ ତ ବୁଦ୍ଧିମାନର କାମ କରିଛନ୍ତି । ଏଥିରେ ଏତେ ଉତ୍ୟକ୍ତ ହୋଇପଡ଼ିବାର କ'ଣ ଅଛି ?

ଆହୁରି ପୁଣି ରାଜସୂୟ ଯଜ୍ଞକୁ ନିମନ୍ତ୍ରିତ ହୋଇଥିବା ସାମନ୍ତମାନଙ୍କର ଦୁଇଟି ଶ୍ରେଣୀ । ଗୋଟିଏ ଶ୍ରେଣୀ କୁରୁକୁଳର ଆତ୍ମୀୟସ୍ୱଜନ, ବନ୍ଧୁ ଗୋଷ୍ଠୀ, ଯେମିତି ଦୁର୍ଯ୍ୟୋଧନ, ଦୁଃଶାସନ, ଶ୍ରୀକୃଷ୍ଣ ଶିଶୁପାଳ । ଆଉ ଗୋଟିଏ ଶ୍ରେଣୀ ଯୁଧିଷ୍ଠିରଙ୍କ ଅନୁଗତ ତାଙ୍କ ଅଧୀନସ୍ଥ ରାଜନ୍ୟମଣ୍ଡଳୀ । ଜୟସିଂହତ ପାଣ୍ଡବମାନଙ୍କର ଆତ୍ମୀୟ ନୁହନ୍ତି । ଦ୍ୱିତୀୟ ଶ୍ରେଣୀଭୁକ୍ତ ହୋଇ ଯଜ୍ଞଶାଳାରେ ଛତ୍ର ଚାମର ଧରି ବୁଲିବାରେ ଜୟସିଂହଙ୍କର କେଉଁ ଗୌରବ ବଢ଼ିଥାଆନ୍ତା ?

ମାତ୍ର ଜୟସିଂହ ତାହା ବୁଝିବେ ନାହିଁ । ତାଙ୍କ ଭଳି ଜଣେ ପ୍ରତାପଶାଳୀ ରାଜାଙ୍କୁ ନିମନ୍ତ୍ରଣ ନ କରି ପାଣ୍ଡବମାନେ ଅକ୍ଷମଣୀୟ ଅପରାଧ କରି ବସିଛନ୍ତି । ଜମ୍ବୁଦ୍ୱୀପର କୋଣ ଅନୁକୋଣରୁ ରାଜନ୍ୟମଣ୍ଡଳୀ ନିମନ୍ତ୍ରିତ ହୋଇ ଇନ୍ଦ୍ରପ୍ରସ୍ଥରେ ସମବେତ ହୋଇଥିବାସ୍ଥଳେ, ଜେନାବଳୀପୁର ନିମନ୍ତ୍ରିତ ନ ହେବ କାହିଁକି ? ସେ କ'ଣ ଏତେ ହୀନ, ଭୀରୁ, ଦୁର୍ବଳ ?

ଆଉ ଯାଦବ କୃଷ୍ଣ- ଗୋକୁଳରେ ଗୋପୀନୀମାନଙ୍କର ବସ୍ତ୍ର ଦୁଗ୍ଧ ଚୋରି କରି ଖାଉଥିବା ସାମାନ୍ୟ ଗୋଟାଏ ଗୋପାଳକ, ସେଇ ପୁଣି ଆଜି ହୋଇଛି ରାଜସୂୟ ଯଜ୍ଞର ମୁଖ୍ୟ ପରିଚାଳକ । ଜେନାବଳୀପୁରର ଅସ୍ତ୍ରାଘାତ ଏପର୍ଯ୍ୟନ୍ତ ଯାଦବବାହିନୀର ଦେହରୁ ଶୁଖିବଣି ତ ? କେମିତି ଭୁଲିଗଲା ସେ ଯାଦବ ଗୋସିଂହ ଦୈତ୍ୟର ପରାକ୍ରମ ? ଆଜି ଗୋସିଂହ ସିନା ନାହାନ୍ତି, ମାତ୍ର ଜୟସିଂହଙ୍କ ଧମନୀରେ ତ ତାଙ୍କରି ରକ୍ତ ବହୁଛି । ସେ ନିଶ୍ଚୟ ପାଣ୍ଡବମାନଙ୍କୁ ଉଚିତ ଶିକ୍ଷା ଦେବେ । ତା'ପରେ ଯାଦବ କୃଷ୍ଣ । ତାକୁ ଏଥର ଏମିତି ଶିକ୍ଷା ଦେବାକୁ ହେବ, ଯାହା ସେ ଆଜୀବନ ଭୁଲିପାରିବ ନାହିଁ ।

ସେଦିନ ରାଜସଭାରେ ଆଟୋପରେ ବସିଥିଲାବେଳେ ମହାମନ୍ତ୍ରୀ କୃତାନ୍ତକ ଦୁଃସମ୍ବାଦଟିକୁ ପରିବେଷଣ କରିଥିଲେ । ଚାର ଖବର ଆଣିଛି । ଇନ୍ଦ୍ରପ୍ରସ୍ଥରେ ପାଣ୍ଡବମାନେ ଦୀର୍ଘକାଳବ୍ୟାପୀ ରାଜସୂୟ ଯଜ୍ଞର ଆୟୋଜନ କରିଛନ୍ତି । ଏଥିରେ ଯୋଗଦେବା ନିମନ୍ତେ ଜମ୍ବୁଦ୍ୱୀପର ଅଧିକାଂଶ ରାଜାଙ୍କ ନିକଟକୁ ଶୁଭ ନାରିକେଳ ପ୍ରେରିତ ହୋଇଛି । ପାଣ୍ଡବ ଚାରିଭାଇ ଚାରି ଦିଗକୁ ଯାତ୍ରା କରିଛନ୍ତି । ଏକା ବାଦ୍ ପଡ଼ିଛନ୍ତି ଜେନାବଳୀପୁରର ପ୍ରତାପୀ ଶାସକ ଜୟସିଂହ ।

ଅପମାନରେ ଦୈତ୍ୟ ଜୟସିଂହ ବାତଗ୍ରସ୍ତ ରମ୍ଭାପତ୍ର ଧରି ଥରି ଉଠିଥିଲେ । ପାଣ୍ଡବମାନଙ୍କର ଏତେ ଦୁଃସାହସ ! ରାଜ୍ୟପାଟ ହରାଇ ଏଇ ସେଦିନ ପଥର ଭିକ୍ଷାକାରୀ ଭଳି ଇତଃସ୍ତତଃ ବୁଲୁଥିବା ପାଞ୍ଚଟା ଅପୋଗଣ୍ଡ ଶିଶୁ । 'ସେମାନେ ପୁଣି ଅପମାନ କରିବେ ପ୍ରବଳ ପରାକ୍ରମୀ ସମ୍ରାଟ ଦୈତ୍ୟପତି ଗୋସିଂହ ତନୟ ଜୟସିଂହଙ୍କୁ ! ଦୈତ୍ୟକୁଳ କ'ଣ ବୀରଶୂନ୍ୟ ହୋଇପଡ଼ିଲାଣି ?

ଏ ଅପମାନର ପ୍ରତିକାର ଜୟସିଂହ ନିଶ୍ଚୟ କରିବେ । ସମଦଣ୍ଡ ସାଜି ଇନ୍ଦ୍ରପ୍ରସ୍ଥ ଯାତ୍ରା କରିବେ । ଚଉରାଅଶୀ ଅକ୍ଷୌହିଣୀ ସୈନ୍ୟ ନେଇ ପାଣ୍ଡବମାନଙ୍କର ଯାଗ ନଷ୍ଟ କରିଦେବେ । ଜମ୍ବୁଦ୍ୱୀପର ଯାବତୀୟ ରାଜା ପାଣ୍ଡବମାନଙ୍କୁ ସହାୟତା କରିବାକୁ ଆଗେଇ ଆସିଲେ ସୁଦ୍ଧା ଜୟସିଂହ ସେମାନଙ୍କୁ ଖାତିର କରନ୍ତି ନାହିଁ । ସ୍ୱୟଂ ନାରାୟଣ ମଧ୍ୟ ଦୈତ୍ୟ କୋପରୁ ପାଣ୍ଡବମାନଙ୍କୁ ରକ୍ଷା କରିପାରିବେ ନାହିଁ ।

ନାରାୟଣୀ ସେନାର ପରାକ୍ରମ ଜୟସିଂହ ଜାଣନ୍ତି । ଅତୀତରେ ଗୋସିଂହ ଦୈତ୍ୟର ଆକ୍ରମଣରେ ସ୍ୱୟଂ କୃଷ୍ଣ ବଳରାମ ଯେତେବେଳେ ଆତ୍ମରକ୍ଷା ନିମନ୍ତେ କାହିଁ କୁଆଡ଼େ ଲୁଚିଥିଲେ, ସେତେବେଳେ ଏଇ ନାରାୟଣୀ ସେନା ବା ତାଙ୍କର କ'ଣ କରିପାରିବ ?

ଇନ୍ଦ୍ରପ୍ରସ୍ଥ ଆକ୍ରମଣ କରିବା ନିମନ୍ତେ ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗୃହୀତ ହୋଇଗଲା ।

ମହାଦେବୀଙ୍କର ସମସ୍ତ ଅନୁନୟ ବିନୟ ବିଫଳ ହେଲା । ଆସବପାନପ୍ରମତ୍ତ ରକ୍ତାଭ ନେତ୍ରରେ ବିରୂପାଙ୍କ ଆଡ଼କୁ କଟାକ୍ଷପାତ କରି ଜୟସିଂହ ବିଦ୍ରୂପାତ୍ମକ ଭଙ୍ଗୀରେ କହିଲେ- ଜେନାବଳୀପୁର ରାଜମହିଷୀ ଗୂଢ଼ ରାଜନୀତିରେ ସମ୍ରାଟଙ୍କ ପରାମର୍ଶଦାତାର ଭୂମିକାରେ କେବଠୁଁ ଅବତୀର୍ଣ୍ଣା ହେଲେଣି, ତା'ତ ମୋତେ ଜଣାନାହିଁ, ମହାଦେବୀ ।

ଉଦ୍‌ଗତ ଅଶ୍ରୁକୁ କୌଣସିମତେ ଚାପି ବାଷ୍ପ ଗଦ୍‌ଗଦ କଣ୍ଠରେ ବିରୂପା କହିଥିଲେ, ମୋର ଧୃଷ୍ଟତା ମାର୍ଜନା କରନ୍ତୁ ସ୍ୱାମୀ । ମୁଁ ଆପଣଙ୍କର ସହଧର୍ମିଣୀ । ମୋର କର୍ତ୍ତବ୍ୟ ମାତ୍ର କରିଛି ।

ତୀବ୍ର ଅଟ୍ଟହାସ୍ୟରେ କକ୍ଷ ପ୍ରକମ୍ପିତ କରି ଜୟସିଂହ ଉତ୍ତର ଦେଇଥିଲେ, "ଆତ୍ମସମ୍ମାନ ଠାରୁ ବଡ଼ ସମ୍ପଦ କ୍ଷତ୍ରିୟର ଆଉ ନାହିଁ । ଅପମାନର ହଳାହଳ ପିଇ ତଥାପି ଯେଉଁ କ୍ଷତ୍ରିୟ ବଞ୍ଚିରହେ, ତା'ର ମୁଖଦର୍ଶନ କରିବା ମଧ୍ୟ ପାପ । ଏଭଳି ଜୀବନ ଅପେକ୍ଷା ମୃତ୍ୟୁ ବରଂ ବରଣୀୟ । ଜଣେ କ୍ଷତ୍ରିୟ ରମଣୀ ସେ ପୁଣି ତ୍ରିପୁରବିଜୟୀ ଚକ୍ରବର୍ତ୍ତୀ ସମ୍ରାଟର ଅର୍ଦ୍ଧାଙ୍ଗିନୀ- ତାକୁ ମୋତେ ଏହା ବୁଝାଇବାକୁ ପଡୁଛି । ତା'ଠୁ ପୁଣି ଶୁଣିବାକୁ ପଡୁଛି ଭୀରୁତାର ପାଠ ! ଆଶ୍ଚର୍ଯ୍ୟ !!

ତଥାପି ବିରୂପା କହିଥିଲେ, ମୋ କଥା ଥରେ ବିଚାର କରି ଦେଖନ୍ତୁ ସ୍ୱାମୀ । ପାଣ୍ଡବ ପକ୍ଷର ପରାକ୍ରମ କଥା ତ ଆପଣଙ୍କୁ ଅଜଣା ନାହିଁ । ପୁଣି ସ୍ୱୟଂ ଚକ୍ରଧାରୀ ଶ୍ରୀକୃଷ୍ଣ ଯାହାଙ୍କ ସହାୟ...

କ୍ରୋଧରେ ଜୟସିଂହଙ୍କ ମୁଖମଣ୍ଡଳ ଭୀଷଣ ହୋଇ ଉଠିଲା । ସେ କହିଲେ - "ଗୋଟାଏ ସାମାନ୍ୟ ଗୋପାଳ । ଯାହାକୁ ମୋର ସ୍ୱର୍ଗୀୟ ପିତା ହୋମାନଳରେ

ନିକ୍ଷେପ କରିଥିଲେ, ମୁଁ ପୁଣି ଭୟ କରିବି ତାକୁ ? ତମେ ନିଶ୍ଚିତ ରହ ରାଣୀ । ଏଥର ପାଣ୍ଡବ ଆଉ ଯାଦବ ମୋର ଗଦାର ପରାକ୍ରମ ଜାଣିବେ ।''

ଗମ୍ଭୀର ହୋଇ ବିରୂପା ଉତ୍ତର ଦେଇଥିଲେ - ''ସେଠାରେ ମଧ୍ୟ ସେଭଳି ଗଦାର ଅଭାବ ନାହିଁ ମହାରାଜ । ମୁଁ କ୍ଷତ୍ରିୟ ନାରୀ । ମୋର କର୍ତ୍ତବ୍ୟ ବେଶ୍ ବୁଝେ । ଗତ କେତେଦିନ ଧରି ନାନା ଅପଶକୁନ ଦେଖି ମନ ମୋର ବିଚଳିତ ।''

ଭ୍ରୂକୁଞ୍ଚିତ କରି ଜୟସିଂହ ପଚାରିଲେ - ଅପଶକୁନ !

ବିରୂପାଙ୍କର ନେତ୍ର ପୁନର୍ବାର ସଜଳ ହୋଇଉଠିଲା । ସେ କହିଲେ- ଆକାଶରୁ ବାରମ୍ବାର ଉଲ୍କାପାତ ହେଉଛି । କେତେଦିନ ହେବ ଚନ୍ଦ୍ରଶାଳାପୁରରେ ଗୋଟିଏ ଉଲୂକ ରାବୁଛି । ନିର୍ଜନ ରାତ୍ରିରେ ଶୁଣାଯାଉଛି କାହାର କରୁଣ କ୍ରନ୍ଦନ ସହିତ ଗୋମାୟୁଗୃଧ୍ରଙ୍କର କର୍କଶ ଚିତ୍କାର ।

ଜୟସିଂହ ଏଥର କହିଲେ- କେତେଟା ନିରୀହ ପଶୁପକ୍ଷୀଙ୍କର ଆକସ୍ମିକ କ୍ରିୟାକଳାପକୁ ନେଇ ରାଜ୍ୟ ଚାଲେନାହିଁ ରାଣୀ । ଯାହାହେଉ; ତମେ କୁଳଗୁରୁଙ୍କର ପରାମର୍ଶ ନିଅ । ଶାନ୍ତି ସ୍ୱସ୍ତ୍ୟୟନର ବ୍ୟବସ୍ଥା କର । ମୋତେ କର୍ତ୍ତବ୍ୟ କରିବାକୁ ଦିଅ ।

ବିରୂପା କେବଳ ଶୂନ୍ୟ ଦୃଷ୍ଟିରେ ନିଜର ଏଇ ସ୍ୱାଧିକାର-ପ୍ରମତ୍ତ ସ୍ୱାମୀଙ୍କୁ ଅନାଇ ରହିଲେ ।

ଯିବା ପୂର୍ବରୁ ଜୟସିଂହ ବିରୂପାଙ୍କ ଆଡ଼କୁ ଅନାଇ କହିଗଲେ, ମହାମନ୍ତ୍ରୀ ଅପେକ୍ଷା କରିଛନ୍ତି । କାଲି ପ୍ରାତଃରେ ଯୁଦ୍ଧଯାତ୍ରା । ବ୍ୟସ୍ତ ହୁଅ ନାହିଁ । ଯୁଦ୍ଧରୁ ପ୍ରତ୍ୟାବର୍ତ୍ତନ କରି ମୁଁ ତମର ସମସ୍ତ କଥା ଶୁଣିବି । କାଲି କିନ୍ତୁ ଯୋଦ୍ଧୃ ବେଶରେ ମୋତେ ସଜାଇ ବିଦାୟ ଦେବ- ଏହା ମୋର ଆଦେଶ - ''

ଜୟସିଂହ ଦୃପ୍ତ ପଦକ୍ଷେପରେ ଚାଲିଗଲେ । ବିରୂପା ଜାଣନ୍ତି ଜେନାବଳୀପୁର ଅର୍ଜୁନ ହସ୍ତରେ ପରାଭବକୁ ଏ ପର୍ଯ୍ୟନ୍ତ ଭୁଲି ନାହିଁ । ଏତେଦିନେ ପିତୃହତ୍ୟାର ପ୍ରତିଶୋଧ ନେବା ନିମନ୍ତେ ଗୋଟିଏ ସୁଯୋଗ ଆସିଛି । ଜୀବନ ବିନିମୟରେ ସୁଦ୍ଧା ଜୟସିଂହ ସେ ସୁଯୋଗକୁ ହାତଛଡ଼ା କରିବେ ନାହିଁ । ବିଜୟରେ ସସାଗର ଧରାର ଅଖଣ୍ଡ ପ୍ରଭୁତ୍ୱ, ପରାଜୟରେ ସ୍ୱର୍ଗଲାଭ - ସମସ୍ତ କ୍ଷତ୍ରିୟଜାତିର ଏହାହିଁ ତ ହେଉଛି ମୁଖ୍ୟ ମନ୍ତ୍ର । ଆହା ! ସାମାନ୍ୟ ଅହଙ୍କାରର ପରିତୃପ୍ତି ନିମନ୍ତେ କେତେକେତେ ମହାଜୀବନ ଅକାଳରେ ଝଡ଼ିପଡୁଛି !

ବିରୂପା ଦୀର୍ଘଶ୍ୱାସ ପକାଇଲେ । ତାଙ୍କର ଅନ୍ତରାତ୍ମା କହୁଛି, ଏଥର ଯୁଦ୍ଧରେ ଜେନାବଳୀପୁରର ରାଜଛତ୍ର ଭୂଲୁଣ୍ଠିତ ହେବ । ରକ୍ତର ସ୍ରୋତରେ ମେଦିନୀ ଭାସିବ ।

ଶିବାଶକୁନ ପ୍ରମତ୍ତ ହେବେ ମହାଭୋଜରେ । ଏହାହିଁ ନିୟତିର ନିର୍ଦ୍ଦେଶ । କାଳର ଇଙ୍ଗିତ । କେହି ଏହାକୁ ରୋକି ପାରିବେ ନାହିଁ ।

ଗତକାଲି ରାତ୍ରିର କଥା ମନେ ପଡ଼ିଗଲା ମହାଦେବୀଙ୍କର । ରାତ୍ରିର ଶେଷ ପ୍ରହରରେ ବିରୂପା ଦେଖିଲେ ସ୍ୱପ୍ନ - ସ୍ୱପ୍ନ ନୁହେଁ ତ ଭୟଙ୍କର ଏକ ଦୁଃସ୍ୱପ୍ନ । ସ୍ମରଣ କଲେ ଏବେ ମଧ୍ୟ ରୋମାଞ୍ଚ ଜାତ ହେଉଛି ।

ସମଗ୍ର ପୃଥିବୀ ପ୍ଲାବିତ ହୋଇଛି ଶୋଣିତ ସାଗରର ଉତ୍ତାଳ ତରଙ୍ଗ ଦ୍ୱାରା । ସେଇ ଗଗନଚୁମ୍ବୀ ଊର୍ମିମାଳା କ୍ଷୁଭିତ କରି ଭାସି ଆସୁଛି ଦୁଇଟି ରକ୍ତପଦ୍ମ । ଆହା ! ପଦ୍ମ ନହେଁ ତ- ଦୁଇଟି ସଦ୍ୟ ଶରୀରଚ୍ୟୁତ ମସ୍ତକ । କାହୁଁ ଉଡ଼ି ଆସିଲା ଏକ ବିଶାଳ ଶ୍ୟେନ ପକ୍ଷୀ - ଶୂନ୍ୟରୁ ଚିଲାମାରି ଦୁଇଟିଯାକ ମସ୍ତକକୁ କବଳିତ କରି ବାହୁଡ଼ିଗଲା । ତା'ର ସେଇ ଉଲ୍ଲାସପୂର୍ଣ୍ଣ ବିଭୀଷିକାମୟ ଚିତ୍କାରରେ ମହାଦେବୀଙ୍କର ନିଦ୍ରା ଭଗ୍ନ ହେଲା ।

ଯାହା ତାଙ୍କର କରିବାର ଥିଲା, ତାହା ସେ କରିଛନ୍ତି । ଏଣିକି ଯାହା ଭବିତବ୍ୟ ତାହାହିଁ ଘଟିବ । ବିରୂପା ତାରକିତ ଆକାଶ ଆଡ଼େ ଅନାଇଲେ ।

ସମସ୍ତ ଜମ୍ବୁଦ୍ୱୀପ ଆଜି ପାଣ୍ଡବମାନଙ୍କର ପ୍ରଶଂସାରେ ମୁଖର । ବୀରପଣିଆରେ ସେମାନଙ୍କର ଯେମିତି ତୁଳନା ନାହିଁ, ଧୀରପଣିଆରେ ସେମାନେ କୁଆଡ଼େ ସେମିତି ଅତୁଳନୀୟ । କେତେ କେତେ ଚକ୍ରାନ୍ତ କଲା ଦୁର୍ଯ୍ୟୋଧନ । ବିରୂପା ସେସବୁ ଶୁଣିଛନ୍ତି । ଲାକ୍ଷାଗୃହରେ ଅଗ୍ନିସଂଯୋଗ କରି ଧରଣୀକୁ ଅପାଣ୍ଡବୀ କରିବାର ଉଦ୍ୟମ ତ ତା'ର ପ୍ରାୟ ସଫଳ ହେବାକୁ ଯାଉଥିଲା । ଧନ୍ୟ କହିବ ସେ ମହାତ୍ମା ବିଦୁରଙ୍କୁ ! ତାଙ୍କର ପରାମର୍ଶ ମାନି ସିନା ପାଣ୍ଡବମାନେ ଏ ଦୁର୍ଭେଦ୍ୟ ଜାଲ କାଟି ବାହାରି ଆସିଲେ !

କଥାରେ କହନ୍ତି ବିନାଶ କାଳେ ବିପରୀତ ବୁଦ୍ଧି । ତେଣୁ ଦୈତ୍ୟରାଜଙ୍କୁ ତାଙ୍କର ପରାମର୍ଶ ଆଜି ଅସ୍ୱାଦୁ ଲାଗୁଛି । ମହିଷାସୁର ମହିଷୀ ମଧ୍ୟ ଦିନେ ଏମିତି ତାଙ୍କ ଛାମୁରେ ହାତଯୋଡ଼ି ଉଭା ହୋଇଥିଲେ । ମାୟାବିନୀ ଦେବୀଙ୍କ ସହ ସମରରେ ଲିପ୍ତ ନ ହେବା ନିମନ୍ତେ ବିନୀତ ଅନୁରୋଧ ଜଣାଇଥିଲେ । ମାତ୍ର ମହିଷା କେଉଁ ମହାଦେବୀଙ୍କ କଥା ଶୁଣିଲେ ? ପରିଣାମ ଆଜି ଇତିହାସ । ସେଇ ଇତିହାସ ପୁଣି ଆଜି ନୂଆକରି ଘଟିବାକୁ ଯାଉଛି, ମହିଷାସୁରଙ୍କ ପଣନାତି ଜୟସିଂହଙ୍କ କ୍ଷେତ୍ରରେ ।

ଏ ରାଜକୁଳ ପାଇଁ ବିରୂପାଙ୍କର ଆଉ ବା କ'ଣ କରିବାର ଅଛି ? ନିଜର ଇଚ୍ଛା ଅନିଚ୍ଛା ହୋଇ ତାଙ୍କର ବା ଆଉ କ'ଣ ଅଛି ? ସେ ଜାଣନ୍ତି ଜୟସିଂହଙ୍କର ହଠଧର୍ମ ହିଁ ଅସୁରକୁଳର ସର୍ବନାଶ ଡାକି ଆଣିବ । ସେ ତ ପାରୁପର୍ଯ୍ୟନ୍ତ ଏ ଯୁଦ୍ଧ ବନ୍ଦ

କରିବାକୁ ଉଦ୍ୟମ କଲେ । ମାତ୍ର ରକ୍ତର ନିଶା ଜୟସିଂହଙ୍କୁ ପାଗଳ କରିଛି, ଉଦ୍‌ଗତ କ୍ରୋଧର ଲେଲିହାନ ଶିଖା ଦାଉ ଦାଉ ହୋଇ ଜଳୁଛି, ତାଙ୍କ ମନରେ । ଯେଉଁ ଶାନ୍ତିବାରି ସେଚନ କରି ଏହାକୁ ନିର୍ବାପିତ କରାଯାଇ ପାରନ୍ତା, ତାଙ୍କ ପାଖରେ ତାହା ନାହିଁ । ସେ ଜଣେ ନାରୀ-ଅନ୍ତଃପୁରିକା- ମନର ଦୁଃଖକୁ ମନରେ ମାରି ପୁରୁଷର ଇଚ୍ଛାର କ୍ରୀଡ଼ନକ ହୋଇ ନାଚିଯିବା ହେଉଛି ତାଙ୍କର ଧର୍ମ । ହାୟରେ ପୁରୁଷ !

ଜୟସିଂହଙ୍କ ପାଇଁ ତାଙ୍କର ଦାୟିତ୍ୱ ଏଥର ଶେଷ ହୋଇଛି । ତାଙ୍କର ଚିନ୍ତା କେବଳ ଏକମାତ୍ର ପୁତ୍ର ବିଜୟ ସିଂହ ପାଇଁ । ତରୁଣ ବିଜୟ ଅସୁରକୁଳର ଏକମାତ୍ର ଦେଦୀପ୍ୟମାନ ଶିଖା - ଏ ଦେଶର ଯୁବରାଜ ।ତାକୁ ଘେରି ବିରୂପାଙ୍କର କେତେ ସ୍ୱପ୍ନ - କେତେ ମଧୁର କଳ୍ପନା ।

ଜୀବନର ପ୍ରଥମ ପାହାଚରେ ପାଦଦେଇ ସେ ମାତ୍ର ଏହାର ସ୍ୱାଦ ଚାଖିବାକୁ ଆରମ୍ଭ କରିଛି । ନବୋଢ଼ା ବଧୂର ପାଦର ଅଳତ୍ତକ ଏ ପର୍ଯ୍ୟନ୍ତ ମଧ ଶୁଖି ନାହିଁ । ତାହାରି ଭିତରେ ଏ ପ୍ରଳୟଙ୍କରୀ ରଣଦୁନ୍ଦୁଭି । ଅବୋଧ ପୁତ୍ର ମଧ ପିତାଙ୍କର ସ୍ୱରରେ ସ୍ୱର ମିଳାଇ ଯୁଦ୍ଧରେ ଅଂଶ ଗ୍ରହଣ କରିବା ନିମନ୍ତେ ବ୍ୟାକୁଳ । କ'ଣ ହେବ ଏ ରାଜ ପରିବାରର ?

ହତାଶା, ଦୁଷ୍ଚିନ୍ତା ଆଉ ଉଦ୍‌ବେଗରେ ମହାଦେବୀ ରାଜପୁରୋହିତଙ୍କୁ ଡକାଇ ପଠାଇଥିଲେ । ବିରୂପାଙ୍କ ନିକଟରେ ଉଭା ହେବାମାତ୍ରେ ସେ ତାଙ୍କୁ ସିଧାସଳଖ ପ୍ରଶ୍ନ କରିଥିଲେ - ଏ ଯୁଦ୍ଧ ବନ୍ଦ କରିବାକୁ କୌଣସି ଉପାୟ ଚିନ୍ତା କରିଛନ୍ତି ଆଚାର୍ଯ୍ୟ ?

ନାଗାଚାର୍ଯ୍ୟ ନୀରବ ରହିଲେ । ତା'ପରେ ନିଜର କପାଳରେ ହାତମାରି କହିଲେ - ଭବିତବ୍ୟକୁ ରୋକିବା ମନୁଷ୍ୟର ସାଧ ନୁହେଁ ମହାଦେବୀ ।

ବିରୂପା କହିଥିଲେ - ସବୁ ଜାଣିଶୁଣି ଯେଉଁଠି ମଣିଷ ଜଳନ୍ତା ନିଆଁ ଭିତରକୁ ଲମ୍ଫ ପ୍ରଦାନ କରେ, ତାକୁ ଭବିତବ୍ୟ କୁହାଯାଏ ନାହିଁ ଆଚାର୍ଯ୍ୟ ।

ଗମ୍ଭୀର ସ୍ୱରରେ ଆଚାର୍ଯ୍ୟ ଉତ୍ତର ଦେଇଥିଲେ, ଇଚ୍ଛା ଉପରେ ଅଙ୍କୁଶ ନ ଲଗାଇ ଯେଉଁଠି ଅବଶ୍ୟମ୍ଭାବୀ ପରିଣତି ଆଡ଼କୁ ମଣିଷ ଟାଣି ହୋଇଯାଏ ତାକୁ ହିଁ ଭବିତବ୍ୟ କୁହାଯାଏ । ମଣିଷ ଏଠି ନିରୂପାୟ ।

ତୀବ୍ର ଦୃଷ୍ଟିରେ ଆଚାର୍ଯ୍ୟଙ୍କ ଆଡ଼କୁ ଅନାଇ ବିରୂପା କହିଥିଲେ, ଆପଣ କ'ଣ ଏଠାରେ ଦୈତ୍ୟରାଜଙ୍କର ମୁଖପାତ୍ର ହୋଇ ଉପସ୍ଥିତ ହୋଇଛନ୍ତି ?

ନାଗଦେବଙ୍କ ମୁହଁରେ ବେଦନାର ଚିହ୍ନ ଫୁଟି ଉଠିଲା । ବିଷଣ୍ଣ ସ୍ୱରରେ ସେ ଉତ୍ତର ଦେଲେ, ମୁଁ ଦୈତ୍ୟକୁଳର ଗୁରୁ-ଶୁଭଚିନ୍ତକ । ଘଟଣାର ଆକସ୍ମିକତାରେ ମୁଁ ନିଜେ ବିବ୍ରତ । ଦୈତ୍ୟକୁଳର ଭବିଷ୍ୟତ୍ ହିଁ ମୋତେ ଚିନ୍ତିତ କରିଛି ।

ଅଶ୍ରୁଭାରାକ୍ରାନ୍ତ ନେତ୍ରରେ ବିରୂପା କହିଲେ - ତଥାପି ଆପଣ ପ୍ରତିବାଦ କରିବେ ନାହିଁ ?

ନାଗଦେବ ମ୍ଳାନ ହସିଲେ । କହିଲେ - ନିମ୍ନମୁଖୀ ବେଗବତୀ ସ୍ରୋତସ୍ୱିନୀକୁ ବାଲୁକାର ବନ୍ଧ ସାହାଯ୍ୟରେ ରୋକାଯାଏ ନାହିଁ । ଆପଣତ ସବୁ ଜାଣନ୍ତି ।

ବିରୂପାଙ୍କର ଅଶ୍ରୁ ଆଉ ବାଧା ମାନିଲା ନାହିଁ । ବାଷ୍ପରୁଦ୍ଧ କଣ୍ଠରେ ସେ କହିଲେ - ମାତୃତ୍ୱର ବେଦନା ପୁରୁଷ ହୋଇ ଆପଣ ବୁଝିବେ ନାହିଁ । ଯୁବରାଜ ବିଜୟସିଂହ, ତାଙ୍କୁ ପାଇବା ପାଇଁ ମୋର ଯେଉଁ କୃଚ୍ଛ୍ର ସାଧନା, ଯେଉଁ କାୟକ୍ଳେଶ, ଆଜି ମହାରାଜ ମାଗଧୀର ଫେନିଳ ଆସବ ଆଉ କାଶ୍ମୀର ନର୍ତ୍ତକୀର ଚଟୁଳ ନୃତ୍ୟରେ ସବୁ ଭୁଲିଛନ୍ତି । ମାତ୍ର ଆପଣ ଭୁଲିଲେ କିପରି ?

ନତନେତ୍ରରେ ଆଚାର୍ଯ୍ୟ ଉତ୍ତର ଦେଲେ, ସେଇ ତ ମୋର ଦୁଃଖ ମହାରାଣୀ । ଯେଉଁ ଶିଶୁକୁ ମୁଁ ହାତ ଧରି ଚାଲିବା ଶିଖାଇଛି, ଅକ୍ଷର ପରିଚୟ କରାଇଛି, ପୁଣି ସଂସାର ଧର୍ମରେ ଦୀକ୍ଷିତ କରାଇଛି, ଆଜି ତାର ଅନ୍ତିମ ଯାତ୍ରାର ପଥ ଧାରରେ ମୋତେ ନୀରବ ଦର୍ଶକ ହୋଇ ଠିଆ ହେବାକୁ ପଡୁଛି ।

ବିରୂପାଙ୍କୁ ସେଇଭଳି ଅବସ୍ଥାରେ ଛାଡ଼ିଦେଇ ଶ୍ଳଥ ପଦକ୍ଷେପରେ ନାଗଦେବ ଫେରି ଚାଲିଲେ । ତାଙ୍କର ଯାହା କହିବାର ସେ କହି ସାରିଛନ୍ତି । ଯେ ସବୁ ଜାଣିଶୁଣି ନିଜ ହାତରେ ନିଜ ଗଳାରେ କୃପାଣ ଛୁଆଁଏ ତା' ପାଇଁ ତାଙ୍କର କିଛି କରିବାର ନାହିଁ ।

ଚନ୍ଦ୍ରଶାଳାପୁରରେ ପ୍ରାଣହୀନ ମୂର୍ତ୍ତିଭଳି ବିରୂପା ବସି ରହିଛନ୍ତି । ବେଦନାରେ ବୁକୁ ଫାଟି ଯାଉଛି । ମାତ୍ର ପାଟି ଫିଟୁ ନାହିଁ । କାହା ପାଖରେ ସେ ନିଜର ମନବେଦନାକୁ ପ୍ରକାଶ କରିବେ ? ଏ ବିଶାଳ ରାଜପୁରୀରେ କିଏ ସେମିତି ଅଛି ?

ବିରୂପାଙ୍କ ପ୍ରାସାଦ ଆଜି ଅନ୍ଧକାରାଚ୍ଛନ୍ନ । ଦୀପ ପାଳିକାରେ ନିରନ୍ଧ୍ର ତମିସ୍ରା । ଆକାଶରୁ ସତେ ଯେପରି କଜ୍ଜ୍ୱଳ ବର୍ଷା ହେଉଛି, ଠିକ୍ ବିରୂପାଙ୍କର ଅନ୍ତର ଭଳି ।

ବିରୂପା ପଥ ହରାଇଛନ୍ତି । ଶେଷ ଅବଲମ୍ବନ ବୋଲି ଯାହାକୁ ସେ ମନେ କରିଥିଲେ, ସେ ତୃଣଖଣ୍ଡକୁ ମଧ୍ୟ ଭାର୍ଜନ ହେଲେ ନାହିଁ । ବିରୂପା ଜାଣନ୍ତି, ଏଥର ସେ ବୁଡ଼ିବେ ।

ବିରୂପା ଆଜୀବନ ଶୁଣି ଆସିଛନ୍ତି, ସତୀନାରୀର ମଥାର ସିନ୍ଦୂର ଚିରକାଳ ଅମ୍ଳାନ ରହେ । କାୟମନବାକ୍ୟରେ ସେ କେବେ ଅନ୍ୟ ପୁରୁଷର ଚିନ୍ତା କରିନାହାନ୍ତି, ତେବେ କେଉଁ ପାପରେ ତାଙ୍କର ଏଭଳି ଦୁର୍ଦ୍ଦଶା ହେବାକୁ ଯାଉଛି ?

ଅଥବା ଏହାହିଁ ହେଉଛି ଭବିତବ୍ୟ ।

ବିରୂପା ଜାଣନ୍ତି, ଜୟସିଂହ ପାଣ୍ଡବମାନଙ୍କ ସହିତ ଯେଉଁ ସମରରେ ଅବତୀର୍ଣ୍ଣ ହେବାକୁ ଯାଉଛନ୍ତି ତାଙ୍କର ପରିତ୍ରାଣ ନାହିଁ । ଯେଉଁ ଅର୍ଜ୍ଜୁନ ଏକାକୀ ଗୋସିଂହଙ୍କୁ ମୃତ୍ୟୁ ମୁଖକୁ ପ୍ରେରଣ କରିଥିଲେ, କାଲି ସେ ମଧ୍ୟ ସମର ପ୍ରାଙ୍ଗଣରେ ଥିବେ । ତାଙ୍କ ସହିତ ଥିବେ ଭୀମ, ସହଦେବ, ଶ୍ରୀକୃଷ୍ଣ ଆଦି ଜମ୍ବୁଦ୍ୱୀପର ସୁନିର୍ବାଚିତ ଯୋଦ୍ଧୃବୃନ୍ଦ । ଏ ମରଣ ବ୍ୟୂହ ମଧ୍ୟରୁ କିଏ ଜୟସିଂହଙ୍କୁ ରକ୍ଷା କରିବ ?

ଅସହ୍ୟ ବେଦନାରେ ବିରୂପା ଏଥର ସଂଜ୍ଞାଶୂନ୍ୟା ହୋଇ ଭୂତଳରେ ଲୋଟି ପଡ଼ିଲେ ।

ଅଦୂରରୁ ଶୁଣାଯାଉଥିଲା ଅଚିହ୍ନା ଏକ ରାତ୍ରିଚର ପକ୍ଷୀର କରୁଣ ଚିତ୍କାର ।



# ଦୂରର ଲଙ୍କା

ହନୁମାନ ଚିନ୍ତାରେ ପଡ଼ିଗଲେ । ଦୁଇଦିନ ହେଲା ସେ ନିଜର ସାଥୀମାନଙ୍କୁ ବିନ୍ଧ୍ୟାଚଳ ଶିଖରୀରେ ଛାଡ଼ି ଲଙ୍କା ଅଭିମୁଖେ ଯାତ୍ରା କରିଥିଲେ । ତାଙ୍କର ଅନୁପସ୍ଥିତିରେ ସେମାନେ କ'ଣ କରୁଥିବେ କିଏ ଜାଣେ ?

ଲଙ୍କାଯାତ୍ରା ତାଙ୍କ ଜୀବନର ଏକ ଅବିସ୍ମରଣୀୟ ଅଧ୍ୟାୟ । ସମୁଦ୍ରଲଙ୍ଘି, ବିଶାଳ ରାଜ୍ୟରେ ସୀତାଠାବ କରିବାକୁ ଯାଇ ତାଙ୍କୁ ଯେଉଁସବୁ ଅସୁବିଧାର ସମ୍ମୁଖୀନ ହେବାକୁ ହୋଇଛି, ସେସବୁ ଯେତିକି ରୋମାଞ୍ଚକର, ସେତିକି ଅବିଶ୍ୱାସ୍ୟ । ଯାହାହେଉ, ଶେଷରେ ଯେ ସେ ନିଜ ଲକ୍ଷ୍ୟରେ ପହଞ୍ଚି ପାରିଛନ୍ତି, ଏତିକି ତାଙ୍କର ତୃପ୍ତି ।

ହନୁମାନଙ୍କ ମନ ବିଷଣ୍ଣ ହୋଇଗଲା । ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠନାରୀ ଅସୁରୀମାନଙ୍କ ଗହଣରେ ଯେଉଁ ଦୟନୀୟ ଜୀବନ କଟାଉଛନ୍ତି, ସେକଥା ସ୍ମରଣ କରି ତାଙ୍କର ଚକ୍ଷୁ ଅଶ୍ରୁସଜଳ ହୋଇଉଠିଲା । ଦେବୀ ସୀତା ଯଦି ବାରଣ କରି ନଥାନ୍ତେ, ତେବେ ଅସୁରୀ ଯୂଥକୁ ପରାଭବ ଦେବା, ତାଙ୍କ ପକ୍ଷରେ ବିଶେଷ କଷ୍ଟକର ହୋଇ ନ ଥାନ୍ତା । ମାତ୍ର ଦେବୀଙ୍କର କରୁଣାସିକ୍ତ ହୃଦୟରେ ଏମାନଙ୍କ ପାଇଁ ରହିଛି ଅତୁଟ ସହାନୁଭୂତି ।

ଦେବୀ ହନୁମାନଙ୍କୁ ବୁଝାଇ ଦେଇ କହିଲେ, ଅନ୍ନଦାସର ନିରୁପାୟତା ତମେ ବୁଝିପାରିବ ନାହିଁ ବତ୍ସ । ଏମାନେ ଲଙ୍କପତିର ଦାସୀ । ତାଙ୍କର ଆଦେଶ ପାଳନ କରୁଛନ୍ତି ମାତ୍ର ।

ହନୁମାନଙ୍କୁ ନିଜର ଉଦ୍ଭରଳ କ୍ରୋଧକୁ ଧୈର୍ଯ୍ୟର ରଜ୍ଜୁରେ ଆୟତ୍ତ କରିବାକୁ ପଡ଼ିଥିଲା । ସୀତା ଅନ୍ୱେଷଣରେ ଯାଇ ପଦେ ପଦେ ତାଙ୍କୁ ଯେଉଁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା, ସେକଥା ସେ ଦେବୀଙ୍କୁ କହିପାରି ନଥାନ୍ତେ । ଏଇ ମୁହୂର୍ତ୍ତରେ ସେସବୁ ଗୋଟି ଗୋଟି ହୋଇ ତାଙ୍କର ମନେପଡୁଥିଲା ।

ବିଶାଳକାୟା ବିସ୍ତାର କରି ହନୁମାନ ନିଜେ ସମୁଦ୍ର ଉପର ଦେଇ ଉଡ଼ିଯାଉଛନ୍ତି । ହଠାତ୍ ସମୁଦ୍ର ଭିତରୁ କାୟା ବିସ୍ତାର କରି ତାଙ୍କର ମାର୍ଗ ରୋକି ଠିଆହେଲା, ବିଶାଳକାୟ ଏକ ପର୍ବତ । ସେ ମଣିନାଗ ।

ହନୁମାନ କ୍ରୋଧରେ ଅଗ୍ନିଶର୍ମା ହୋଇଉଠିଲେ । ପର୍ବତ ବାପୁଡ଼ାକୁ ଗୋଟିଏ ପଦାଘାତରେ ଚୂର୍ଣ୍ଣବିଚୂର୍ଣ୍ଣ କରି ନିଜ ବାଟରେ ଆଗେଇ ଯିବା ନିମନ୍ତେ ସ୍ଥିର

କରୁଥିଲାବେଳେ ମଣିନାଗଙ୍କର ସ୍ନେହ କୋମଳ ବ୍ୟବହାରରେ ସହସା ଅସମଞ୍ଜସରେ ପଡ଼ିଯାଇଥିଲେ ।

ମଣିନାଗ ତାଙ୍କୁ କହିଥିଲେ, ବତ୍ସ ମାରୁତି ! ରଘୁବୀର ରାମଚନ୍ଦ୍ରଙ୍କ କାର୍ଯ୍ୟରେ ତୁମେ ଲଙ୍କାଯାତ୍ରା କରୁଥିବାର ମୁଁ ଜାଣେ । ସମୁଦ୍ର ଲଙ୍ଘନ କରିବାକୁ ଯାଇ ତମେ ପରିଶ୍ରାନ୍ତ ହୋଇପଡ଼ିଛ । ଏଠାରେ କ୍ଷଣେମାତ୍ର ବିଶ୍ରାମ କରି କ୍ଷୁଧାତୃଷା ଦୂରକର । ସଫଳତା ତମପାଇଁ ଅପେକ୍ଷା କରିଛି ।

ହନୁମାନ ମଣିନାଗର ଆଗ୍ରହକୁ ଭାଙ୍ଗିଦେଇ ପାରିଲେ ନାହିଁ । କ୍ଷୁଧା ତାଙ୍କୁ ପ୍ରକୃତରେ ବାଧିବାକୁ ଆରମ୍ଭ କରିଥିଲା । ମାନବିକତାର ଏଇ ଅକୁଣ୍ଠ ଆହ୍ୱାନକୁ ସେ ଏଡ଼ାଇ ଦିଅନ୍ତେ ବା କିପରି ?

ବିଦାୟ ଦେବା ପୂର୍ବରୁ ମଣିନାଗ ତାଙ୍କୁ କହିଥିଲେ, ଆଶୀର୍ବାଦ କରୁଛି, ଦେବକାର୍ଯ୍ୟରେ ସଫଳ ହୁଅ । ନିର୍ଯ୍ୟାତିତ ମାନବ ଜାତିର ଶୁଭକାମନା ଯାହାର ପଥରେ ଫୁଲ ହୋଇ ଝଡ଼ିପଡୁଛି, ସେ ଅକୃତକାର୍ଯ୍ୟ ବା ହେବ କାହିଁକି ?

ହନୁମାନଙ୍କର ଯାତ୍ରା ଆରମ୍ଭ ହୋଇଥିଲା । ସେ ଜାଣିଥିଲେ, ତାଙ୍କର ପଥ ପୁଷ୍ପାକୀର୍ଣ୍ଣ ନୁହେଁ । ଯେଉଁ ଦୁରୂହ କାର୍ଯ୍ୟରେ ସେ ହାତ ଦେଇଛନ୍ତି, ତହିଁରେ ପଦେ ପଦେ ବାଧାବିଘ୍ନ । ତଥାପି ଯେକୌଣସିମତେ ତାଙ୍କୁ ଲକ୍ଷ୍ୟପଥରେ ଆଗେଇ ଯିବାକୁ ହିଁ ପଡ଼ିବ । 'ଶରୀରଂ ବା ପାତୟେତ୍, କାର୍ଯ୍ୟଂ ବା ସାଧୟେତ୍' ।

ବାଧା ଯେ ଦୁର୍ଲଙ୍ଘ୍ୟ ପର୍ବତ ହୋଇ ଏତେ ଶୀଘ୍ର ତାଙ୍କ ଯାତ୍ରା ପଥରେ ମୁଖ ବ୍ୟାଦାନ କରି ଉଭାହେବ, ହନୁମାନ ତାହା ଜାଣିନଥିଲେ । ସମୁଦ୍ର ପଥରେ ତିନିଶହ ଯୋଜନର କାୟା ବିସ୍ତାର କରି ନାଗମାତା ହନୁମାନଙ୍କୁ ଗର୍ଭକୁ କ୍ଷେପିବା ନିମନ୍ତେ ପ୍ରସ୍ତୁତ ହୋଇ ଦଣ୍ଡାୟମାନା ।

ପ୍ରାଣ ସଂଶୟର ଏହି ନମନୀୟ ମୁହୂର୍ତ୍ତରେ ସୁଧୀ ହନୁମାନ ଲଙ୍କାପତିଙ୍କର ସୁରକ୍ଷା ବ୍ୟବସ୍ଥାକୁ ପ୍ରଶଂସା ନ କରି ରହିପାରିଲେ ନାହିଁ । ତ୍ରିଲୋକବିଜୟୀ ହେବାକୁ ସବୁବେଳେ ଯେ ଖଣ୍ଡାଧାରରେ ସତର୍କ ପଦକ୍ଷେପ କରିବାକୁ ହୁଏ, ରାଜନୀତିକୁଶଳ ରାବଣ କ'ଣ ଏହା ଜାଣିନାହାନ୍ତି ? କେବଳ ସାଗର ମେଖଳ ଦ୍ୱୀପର ଦୁର୍ଭେଦ୍ୟ ଦୁର୍ଗ କ'ଣ ତାଙ୍କୁ ନିରାପତ୍ତା ଦେଇପାରେ ?

କାୟା ବିସ୍ତାରକୁଶଳ ହନୁମାନ ନିଜକୁ ସ୍ଫୀତ କରିବାକୁ ଲାଗିଲେ । ନାଗମାତା ତୁରନ୍ତ ହନୁମାନଙ୍କର ଚାତୁରୀ ବୁଝିପାରି ପୁନର୍ବାର ନିଜର କାୟା ବିସ୍ତାର କଲେ । ଚାଲିଲା କିଛିକ୍ଷଣ ପାଇଁ କାୟା ବିସ୍ତାରର ଏହି ଲୁଚକାଳି ଖେଳ ।

ହଠାତ୍ ହନୁମାନ ନିଜର କାୟାକୁ ସଙ୍କୁଚିତ କରି ନାଗମାତାଙ୍କର ମୁଖ ଗହ୍ୱର ମଧ୍ୟରେ ପ୍ରବେଶ କରି ଚକ୍ଷୁର ପଲକରେ ତହିଁରୁ ବାହାରି ଆସିଲେ । ନାଗମାତା ମାରୁତିଙ୍କର ଏହି କାର୍ଯ୍ୟରେ ଏତେଦୂର ସନ୍ତୋଷ ଲାଭ କଲେ ଯେ, ସେ ଆଉ ତାଙ୍କର କୌଣସି କ୍ଷତି ନ କରି, ତାଙ୍କୁ ଛାଡ଼ି ଦେଲେ । ପାଥେୟ ମିଳିଲା ତାଙ୍କର ଉଚ୍ଛୁଳା ଆଶୀର୍ବାଦ ।

ଏଥର ତୃତୀୟ ବାଧା ରାହୁ ଜନନୀ ସିଂହିକା । ତାଙ୍କ ନିକଟରେ ହନୁମାନଙ୍କର କୌଣସି ଚାତୁର୍ଯ୍ୟ କାମ କଲା ନାହିଁ । ସେ ହନୁମାନଙ୍କୁ ଆକର୍ଷଣ କରି ନିର୍ବିକାର ଭାବରେ ଗର୍ଭକୁ କ୍ଷେପଣ କରିଦେଲେ ।

ହନୁମାନଙ୍କ ଶକ୍ତି ସହିତ ତାଙ୍କର ପରିଚୟ ନ ଥିଲା । ଉଦର ମଧ୍ୟରେ ହନୁମାନ ତାଙ୍କର ବୁକୁବିଦାରି ପକାଇଲେ । ଅସୁରୀ ପ୍ରାଣ ହାରିଲା । ହନୁମାନଙ୍କୁ ମିଳିଲା ଦେବଗଣଙ୍କର ଅଭିନନ୍ଦନ ।

ଯାତ୍ରା ଶେଷ ହେଲା । ଗୋଧୂଳିବେଳାରେ ହନୁମାନ ଲଙ୍କା ଉପକଣ୍ଠସ୍ଥ ସୁବଳୟା ଗିରିରେ ପାଦ ଦେଲେ । କିଛିଟା ବିଶ୍ରାମ ପାଇଁ, ଆଉ କିଛିଟା ପରବର୍ତ୍ତୀ କାର୍ଯ୍ୟପନ୍ଥାର ସ୍ଥିରୀକରଣ ପାଇଁ, ତାଙ୍କୁ ଏଠାରେ କିଛି ସମୟ ଅଟକି ରହିବାକୁ ହିଁ ହେବ ।

ସନ୍ଧ୍ୟା ନଇଁ ଆସୁଛି । ନୀଡ଼ ବାହୁଡ଼ା ପକ୍ଷୀକୁଳର କାକଳିରେ ସୁବଳୟାଗିରି ପରିପୂର୍ଣ୍ଣ । ଅଦୂରରେ ଲଙ୍କା ଅଧିବାସୀଙ୍କ ଘରେ ଘରେ ଜଳି ଉଠୁଛି ହୀରକର ରୋଷଣି ।

ସେଇଠି ଅଛନ୍ତି ବିଶ୍ୱଜନନୀ ବନ୍ଦିନୀ ଭାବରେ । ତାଙ୍କୁ ଯେକୌଣସିମତେ ଠାବ କରିବାକୁ ହିଁ ପଡ଼ିବ । ହନୁମାନ ଆଉ ବିଳମ୍ବ କଲେ ନାହିଁ ।

ହଠାତ୍ ତାଙ୍କ ପଥରୋଧ କରି ଦଣ୍ଡାୟମାନା ହେଲା ମୂର୍ତ୍ତିମତୀ ଅଭିଶାପତୁଲ୍ୟ ଭୟଙ୍କରୀ ଏକ ଦେବୀ । ଟହ ଟହ ହସି କହିଲା - ଦୁର୍ମୁଖ ବାନର, ଲଙ୍କାଦେବୀର ବିନାନୁମତିରେ ଦୁର୍ଗ ଭିତରକୁ ପ୍ରବେଶ କରିବୁ, ତୋର ଏତେ ସାହସ !

ହନୁମାନ ବୃଥା କାଳକ୍ଷେପ କରିବାକୁ ଚାହୁଁ ନ ଥିଲେ । ମାତ୍ର ଗୋଟିଏ ଚାପୁଡ଼ାରେ ଲଙ୍କାଦେବୀ ମାଟି କାମୁଡ଼ି ପଡ଼ିଲେ । ହନୁମାନ ତାଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ କହିଲେ, ନାରୀହତ୍ୟା ମୋର ଧର୍ମ ନୁହେଁ । ତେଣୁ ଏତିକି ମାତ୍ର ଦଣ୍ଡ ଦେଇ ମୁଁ ତୁମକୁ ଛାଡ଼ି ଯାଉଛି । ନଚେତ୍ -

ଲଙ୍କଦେବୀ କହିଲେ - ଏବେ ମୁଁ ଜାଣିଲି ଲଙ୍କପତିଙ୍କର ଶେଷ ସମୟ ଉପସ୍ଥିତ ହେଲାଣି । ଏହା ହିଁ ତା'ର ଭବିତବ୍ୟ । ଆଜିଠାରୁ ଠିକ୍ ଦୁଇ ମାସ ମଧ୍ୟରେ

ଲଙ୍କପତିଙ୍କର ମୃତ୍ୟୁ ସୁନିଶ୍ଚିତ । ଭୟ ନାହିଁ । ମୁଁ ତୋ ପାଇଁ ଆଉ କୌଣସି ବାଧା ସୃଷ୍ଟି କରିବି ନାହିଁ ।

ଲଙ୍କଦେବୀ ବିଦାୟ ନେଇ ଚାଲିଗଲେ । ଏଥର ରାବଣର ଅନ୍ତଃପୁର । ହନୁମାନ ଜାଣିଥିଲେ, ରାକ୍ଷସର ଭୋଗିନୀ ହେବା ଅପେକ୍ଷା ଜନନୀ ସୀତା ଆତ୍ମବିସର୍ଜନ ଦେବାକୁ ହିଁ ଶ୍ରେୟ ମଣିବେ । ତେବେ ସୁଯୋଗ ଯେତେବେଳେ ମିଳିଛି, ରାବଣର ଅନ୍ତଃପୁରଟାକୁ ଦେଖିଦେବାରେ ଅସୁବିଧା କ'ଣ ?

ଅମରପୁରୀର ଶୋଭାକୁ ନିନ୍ଦୁଚି ରାବଣର ଏକ ସୁବର୍ଣ୍ଣମୟ ପୁରୀ । ଅପ୍‌ସରାନିନ୍ଦିତା - ବିଶ୍ୱର ଶ୍ରେଷ୍ଠ ସୁନ୍ଦରୀଗଣ - ରାବଣକୁ ବେଷ୍ଟନ କରି କେହି ନୃତ୍ୟରତା, କେହି ଗାନରତା - କେହି ଅବା ବୀଣାବେଣୁ - ମୃଦଙ୍ଗ ବାଦନରେ ବ୍ୟସ୍ତ-ମଞ୍ଜୀରର ମଞ୍ଜୁ ନିକ୍ୱଣଷଡ୍ଜ-ପଞ୍ଚମ-ଧୈବତର ଉଦାର-ଅନୁଦାର-ସ୍ୱରିତ -ତାନରେ ପୁରୀ ମୁଖରିତ । ଆସବ-ପାନ ପ୍ରମତ୍ତା-ଅଳିକୁଳର ଗୁଞ୍ଜନ ମଧ୍ୟରେ ବସିଚି ରାକ୍ଷସରାଜ ତ୍ରିଲୋକେଶ୍ୱର ରାବଣ କୋଳରେ ମନ୍ଦୋଦରୀକୁ ଧରି ଠିକ୍ ଅପସରା ପରିବୃତା ଇନ୍ଦ୍ରଙ୍କ ଭଳି । ହୀରା-ନୀଳା ମଣିମାଣିକ୍ୟର ଦୀପ୍ତିରେ ଶତ ସୂର୍ଯ୍ୟର ଛଟା - ଏଠି ସୀତା ଆସିବେ କୁଆଡୁ ? ମାନବିକତା, ଉଦାରତା ଯେଉଁଠି ପଦେ ପଦେ ଲାଞ୍ଛିତ, ପୌରୁଷର ଅହଙ୍କାର ଯେଉଁଠି ମଥାଟେକି ଦଣ୍ଡାୟମାନ, ସେଠି କାହୁଁ ମିଳିବେ, ପରମ କାରୁଣିକା ବିଶ୍ୱଜନନୀ ?

ଅବଶେଷରେ ସୀତାଙ୍କ ସହିତ ହନୁମାନଙ୍କର ସାକ୍ଷାତ ହେଲା । ଅହରହ ରୋରୁଦ୍ୟମାନା, କାରୁଣ୍ୟର ସାକାର ବିଗ୍ରହ, ଏକବେଣୀ ଧାରିଣୀ, ମଳିନ ବସନା - ସେଇ ଦେବୀଙ୍କୁ ଚିହ୍ନିବା ପାଇଁ ହନୁମାନଙ୍କର ଆଦୌ ବିଳମ୍ବ ହେଲା ନାହିଁ । ଅସୁରୀମାନେ ଗର୍ଜନ ତର୍ଜନ କରି ତାଙ୍କୁ ଭୟଭୀତ କରାଉଛନ୍ତି । ସେ ବସିଛନ୍ତି ସେମିତି ନିର୍ବିକାର, ନିର୍ଲିପ୍ତ ଭାବରେ ।

ଏହି ସମୟରେ ପ୍ରବେଶ କଲା - ରାବଣ । ସୀତାଙ୍କର ସହଯୋଗ ନିମନ୍ତେ ପ୍ରଥମେ ଅନୁନୟ ବିନୟ ଏବଂ ଶେଷରେ କ୍ରୋଧ । ତ୍ରିଲୋକ ଯେତେବେଳେ ରାବଣର ସାମାନ୍ୟ ଅନୁକମ୍ପା ପାଇବା ପାଇଁ ବ୍ୟାକୁଳ, ସେତେବେଳେ ଗୋଟିଏ ସାମାନ୍ୟ ନାରୀ ତାହାର ସମସ୍ତ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦେଉଛି । ସୀତା ରାବଣର ଉଦାରତା ଦେଖିଛି - ଭ୍ରୂକୁଟୀର ସାମାନ୍ୟ ହେଳନରେ ସମଗ୍ର ବିଶ୍ୱରେ କିଭଳି ପ୍ରଳୟ ସୃଷ୍ଟି ହୁଏ, ସେତକ ମାତ୍ର ଦେଖିନାହିଁ । ରାବଣ ଏହାପରେ ଖଡ୍‌ଗ ଉତ୍ତୋଳନ କରିଥିଲା । ଔଦ୍ଧତ୍ୟର ବିଲୟ ହିଁ ତାପାଇଁ ମଙ୍ଗଳକର ।

ଛଦ୍ମବେଶୀ ହନୁମାନ କିଂକର୍ତ୍ତବ୍ୟ ବିମୂଢ଼ । କ୍ରୁଦ୍ଧ ଦୈତ୍ୟ ସତରେ ଯଦି ଜଗନ୍ଜନନୀଙ୍କୁ ହତ୍ୟା କରେ ତେବେ ତାଙ୍କର ଏତେ ଶ୍ରମ ସବୁ ପଣ୍ଡ ହୋଇଯିବ । ନିକଟରେ ଥିଲେ ବିଭୀଷଣ କନ୍ୟା ତ୍ରିଜଟା । ସେ ବିନୀତ ଭାବରେ ନାରୀହତ୍ୟା ପାପରେ ଭାଗୀ ନହେବା ପାଇଁ ରାବଣଙ୍କୁ ବୁଝାଇଲେ । ହୁଏତ ରାବଣର ପ୍ରକୃତ ଇଚ୍ଛା ଥିଲା ଭୀତିପ୍ରଦର୍ଶନ । ତେଣୁ ସେ ଦୁଇମାସ କଷ୍ଟ ଦେଇ, ସୀତାଙ୍କୁ ଅବ୍ୟାହତି ଦେଲା । ଏଇ ଦୁଇ ମାସରେ ହୁଏତ ସୀତା ରାମଙ୍କୁ ଦେଖାଇବେ, ନଚେତ୍ ସ୍ୱୟଂ ମୃତ୍ୟୁ ବରଣ କରିବେ ।

ଏଥର ହନୁମାନଙ୍କ ପାଇଁ ଦେଖାଦେଲା ଏକ ନୂତନ ସମସ୍ୟା । ଶତ୍ରୁପରିବୃତ୍ତା ସୀତା ତାଙ୍କୁ ରାମଚନ୍ଦ୍ରଙ୍କ ଦୂତ ରୂପରେ ଗ୍ରହଣ ନ କଲେ, ବିପଦ ବଢ଼ିଯିବ । ଯାହାହେବ ହେଉ, ସେ ଏଥର ଦେବୀଙ୍କ ସହିତ ଯୋଗାଯୋଗ କରିବେ । ତାଙ୍କ ପାଖରେ ଅଛି ପ୍ରଭୁଙ୍କ ଅଭିଜ୍ଞାନ ମୁଦ୍ରିକା । ସୀତା ଯଦି ତାଙ୍କୁ ମଧ୍ୟ ଅସ୍ୱୀକାର କରନ୍ତି, ତେବେ ତାଙ୍କର ଦୁର୍ଭାଗ୍ୟ ।

ହନୁମାନ ଏଥର ଶିଂଶପା ବୃକ୍ଷରୁ ଓହ୍ଲାଇ ଦେବୀଙ୍କ ନିକଟବର୍ତ୍ତୀ ହୋଇଥିଲେ । ରାମଚନ୍ଦ୍ରଙ୍କ କଥା ତାଙ୍କ ନିକଟରେ ନିବେଦନ କରିଥିଲେ । ଅଭିଜ୍ଞାନଟିକୁ ଦେବୀଙ୍କୁ ଦେଖାଇଥିଲେ । ଦୁଃଖ ଆଉ ଯନ୍ତ୍ରଣାର ସମୁଦ୍ରରେ ଭାସୁ ଭାସୁ ଅଭିଜ୍ଞାନରୂପୀ କାଠି ଖଣ୍ଡିକୁ ଜାବୁଡ଼ି ଧରିବା ଛଡ଼ା ତାଙ୍କ ପାଇଁ ବାଟ ତ ନଥିଲା । ସୀତା ନିଜ ମଥାମଣିଟିକୁ ରାମଚନ୍ଦ୍ରଙ୍କ ନିକଟକୁ ପ୍ରେରଣ କରିଥିଲେ ।

ଏଥର ଘର ବାହୁଡ଼ା । ରାମଚନ୍ଦ୍ର ବ୍ୟାକୁଳ ହୋଇ ଅପେକ୍ଷା କରିଛନ୍ତି । ବିନ୍ଧ୍ୟଗିରି ଉପରେ ଉଦ୍ବେଗ ହୃଦୟରେ ତାଙ୍କର ସପ୍ତସଖା । ମୋଟାମୋଟି ଭାବରେ ଏଠାକାର କାମ ଶେଷ ହୋଇଛି ।

ହନୁମାନ ଚିନ୍ତାକଲେ, ସେ ଦୂତ ହୋଇ ଆସିଥିଲେ । ପ୍ରଭୁଙ୍କର କାର୍ଯ୍ୟ ଶେଷ କରିଛନ୍ତି । ମାତ୍ର ତାଙ୍କ ଭଳି ବୀର ଏମିତି ଲୁଚି ଛପି ଚୋରଙ୍କ ଭଳି ବାହୁଡ଼ିଗଲେ, ପ୍ରଭୁଙ୍କ ଯଶ ଆଉ ରହିଲା-କ'ଣ ? ଚାହିଁଲେ ସେ ନିଜେ ବି ତ ଦେବୀଙ୍କୁ କାନ୍ଧରେ ବସାଇ ପ୍ରଭୁଙ୍କ ନିକଟକୁ ନେଇଯାଇ ପାରନ୍ତେ । ମାତ୍ର ସ୍ୱୟଂ ସୀତାଦେବୀ ସେଥିରେ ଆପତ୍ତି ଜଣାଇଛନ୍ତି ।

ଯାହା ହେଉଛିଠିକ୍ ହେଉଛି । ରାବଣ ଦଣ୍ଡ ନ ଭୋଗିଲେ, ତା'ର ଅନ୍ୟାୟ କାର୍ଯ୍ୟର ପ୍ରତିଫଳ ଭୋଗିବ ନାହିଁ । ତେବେ ସେ ଦୂତ ରୂପରେ ନିଜ ଶକ୍ତିର ସାମାନ୍ୟ ପରିଚୟ ରାବଣ ନିକଟରେ ଦେଇଯିବେ । ସେଇଥିରୁ ଦୁଷ୍ଟ ଅସୁର ଯଦି ସାଗରର ଗଭୀରତାର ସାମାନ୍ୟ ପରିଚୟ ପାଇପାରେ ।

ହନୁମାନ କରଯୋଡ଼ି ଈଷତ୍ ଲଜ୍ଜାବନତ କଣ୍ଠରେ କହିଲେ, ଦେବୀ ଦୁଇ ଦିନ ଯାବତ୍ ଉତ୍ତମ ଆହାର ସହିତ ସାକ୍ଷାତ୍ ହୋଇନାହିଁ । ସମ୍ମୁଖରେ ଫଳଭରା ବନ, ଅସୁରର ଏ ମଧୁବନ ସନ୍ଦର୍ଶନରେ କ୍ଷୁଧା ଶତଗୁଣ ହୋଇଛି । ଅନୁମତି ଦେଲେ କିଞ୍ଚିତ୍ ଆହାରର ବ୍ୟବସ୍ଥା କରନ୍ତି ।

ପ୍ରଥମରୁ ରାବଣ ସହିତ ଗୋଟାଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହେଉ, ସୀତା ଏହା ଚାହୁଁ ନଥିଲେ । ମାତ୍ର ଅନୁମତି ତାଙ୍କୁ ଦେବାକୁ ହୋଇଥିଲା । ସୁସଜ୍ଜିତ ନନ୍ଦନବନ ତୁଲ୍ୟ ମଧୁବନ ହନୁମାନଙ୍କର ସଦର୍ପ ପଦପାତରେ ଥରଥର ହୋଇ କମ୍ପିବାକୁ ଆରମ୍ଭ କରିଥିଲା । ବୃନ୍ତଚ୍ୟୁତ ପୁଷ୍ପ ବୃକ୍ଷର ମାୟା କଟାଇ ଭୂମିରେ ଲୋଟୁଥିଲେ । କଡ଼ କଡ଼ ମଡ଼ ମଡ଼ ଶବ୍ଦରେ ମହାନ୍ ବୃକ୍ଷରାଜି ଭୂଇଁରେ ଲୋଟୁଥିଲେ । ମଧୁବନରେ ସତେ ଯେମିତି ତାଣ୍ଡବର ପ୍ରଳୟଲୀଳା ଚାଲିଥିଲା ।

ପ୍ରଥମେ ମାଟିକାମୁଡ଼ି ପଡ଼ିଲେ ତୋଟାର ଜଗୁଆଳିଗଣ । ତା'ପରେ ଆସିଲେ ଜମ୍ବୁମାଳି, ପ୍ରଶସ୍ତ ସାଙ୍ଗରେ ବିରାଟବାହିନୀ ନେଇ । ଜମ୍ବୁମାଳି ତ ଯୁଦ୍ଧ କରୁ କରୁ ମଲା । ପ୍ରଶସ୍ତପ୍ରାଣ ନେଇ ପଳାଇଲା । ଏଥର ଆସିଲା ରାବଣ ପୁତ୍ର ଅକ୍ଷୟ ସ୍ୱୟଂ । ତାକୁହତ୍ୟା କରିବାକୁ ହନୁମାନଙ୍କୁ ବିଶେଷ କଷ୍ଟ କରିବାକୁ ପଡ଼ିଲା ନାହିଁ । ଶେଷରେ ଆସିଲା ରାବଣ ପୁତ୍ର ଇନ୍ଦ୍ରଜିତ । ନାଗପାଶରେ ବନ୍ଧନ କରି ହନୁମାନଙ୍କୁ ରାବଣ ପାଖକୁ ନେଇଗଲା । ସାମାନ୍ୟ ବାନରଟାଏ ତାହାର ନନ୍ଦନବନ ପ୍ରମାଣ ମଧୁବନକୁ ଚୂର କରୁଛି, ପୁଣି ଅଜସ୍ର ସୈନ୍ୟସାମନ୍ତ ସହିତ ପୁତ୍ର ଅକ୍ଷୟକୁମାରଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଇଛି, ଏହା କ'ଣ ତାର କମ୍ ଅପରାଧ ! ହନୁମାନଙ୍କରମୃତ୍ୟୁଦଣ୍ଡର ବ୍ୟବସ୍ଥା କରାଗଲା । ବିଭୀଷଣ ବହୁତ କହିଲେ । ବାନରଟାଏ ମାରିଲେ ଲଙ୍କପତିଙ୍କର ଯଶଯେକୌଣସିମତେ ବଢ଼ିବ ନାହିଁ, ଏକଥା ମଧ ବୁଝାଇଲେ । ମାତ୍ର ତହିଁରେ କିଛିହେଲା ନାହିଁ, ମୃତ୍ୟୁଦଣ୍ଡ ବ୍ୟବସ୍ଥା କାଏମ ରହିଲା ।

ପ୍ରଶସ୍ତ ସମେତ ବହୁ ଦୈତ୍ୟ ଅନେକ ଉପାୟ କଲେ । ଶାଣିତ ଅସ୍ତ୍ରରେ ହନୁମାନଙ୍କୁ ଆଘାତ କଲେ । ମାତ୍ର ତାଙ୍କର ତିଳେମାତ୍ର କ୍ଷତି ହେଲାନାହିଁ । ଅସୁରମାନେ ଚିନ୍ତାରେ ପଡ଼ିଗଲେ ।

ସୁଯୋଗ ବୁଝି ହନୁମାନ ସେମାନଙ୍କୁ ବୁଝାଇଲେ, ଆରେ ମୂଢ଼, ଏମିତି ମୋର ମୃତ୍ୟୁ ହେବ ନାହିଁ । ମୁଁ ଅଭିଶପ୍ତ ଜୀବ । ଲାଙ୍ଗୁଡ଼ରେ ଜୀର୍ଣ୍ଣବସ୍ତ୍ର ଗୁଡ଼ାଇ ତୈଳ ଢାଳି ତହିଁରେ ଅଗ୍ନି ସଂଯୋଗ କଲେ ହିଁ ମୋର ମୃତ୍ୟୁ ହେବ ।

ଅସୁରମାନଙ୍କୁ ଗୋଟିଏ ନୂଆ ମଜା ଜୁଟିଗଲା । କାହୁ କାହୁଁ ସଂଗୃହୀତ ହେଲା ପର୍ବତପ୍ରମାଣ 'ଛିନ୍ନବସ୍ତ୍ର ଆଉ ପିମ୍ପାପିମ୍ପା ତେଲ । ହନୁମାନଙ୍କୁ ନାଗପାଶ ବନ୍ଧନରୁ

ମୁକାଳି ଦିଆଗଲା । ଆହା ବିଚରା, କେଉଁଠି ତା'ର ଜନ୍ମ, କେଉଁଠି ମରଣ । ମରିବା ପୂର୍ବରୁ ଥରେ ହେଲେ ସୁନାର ଲଙ୍କାକୁ ଆଖି ପୂରାଇ ଦେଖିଥାଉ ।

ଲାଙ୍ଗୁଳରେ ଅଗ୍ନି ସଂଯୋଗ କରନ୍ତେ ଗୋଟିଏ ଗଗନଭେଦୀ ହୁଙ୍କାର ଛାଡ଼ି ହନୁମାନ ଉପରକୁ ଉଠିଗଲେ । ତା'ପରେ ପ୍ରଜ୍ଜ୍ୱଳିତ ଲାଙ୍ଗୁଳ ଚାଳନ କରି, ସ୍ୱର୍ଣ୍ଣଲଙ୍କାକୁ ଧ୍ୱଂସସ୍ତୂପରେ ପରିଣତ କରିବା, ଏ ମାତ୍ର କେତୋଟି ମୁହୂର୍ତ୍ତର କାର୍ଯ୍ୟ । ରାବଣର ଦରବାରରେ ବନ୍ଦୀ-ବିଚରା ଅଗ୍ନି ଦେବତା ତାହାର ରଙ୍ଗ ଆଖି ଦେଖି ମୁହୂର୍ତ୍ତକ ମଧ୍ୟରେ ଶୀତଳ ହୋଇଗଲେ । ଦାସତ୍ୱରବେଦନା ତାଙ୍କୁ ତୀବ୍ର ଅନ୍ତର୍ଦାହର ପୀଡ଼ାରେ ବିବ୍ରତ କରୁଥିଲା । ମାତ୍ର ହନୁମାନ ତହିଁରେ ବିଚଳିତ ହେଲେ ନାହିଁ । କପାଳରେ ଲାଙ୍ଗୁଳ ଘଷି ବ୍ରହ୍ମାଗ୍ନି ସୃଷ୍ଟିକଲେ ଆଉ ତାହାରି ସାହାଯ୍ୟରେ ଜାଳିଦେଲେ ସ୍ୱର୍ଣ୍ଣ ଲଙ୍କାପୁରୀ ।

ଏଥରକ ପାଇଁ ଲଙ୍କାରେ ହନୁମାନଙ୍କର କାର୍ଯ୍ୟ ଶେଷ ହୋଇଥିଲା । ପ୍ରଭୁ ରାମଚନ୍ଦ୍ରଙ୍କର ଶକ୍ତିର ଗୋଟିଏ ସ୍ଫୁଲିଙ୍ଗ ରୂପରେ ସେ ନିଜର ଚମତ୍କାରିତା ରାବଣକୁ ଦେଖାଇପାରିଛନ୍ତି । ଏଥିରୁ ରାବଣ ତା'ର ଯାହା ବୁଝିବାର ବୁଝୁଥାଉ ।

ହନୁମାନ ସନ୍ତୁଷ୍ଟ ମନରେ ଏଥର ଫେରି ଚାଲିଥିଲେ । କାର୍ଯ୍ୟ ସିଦ୍ଧ ହୋଇଛି । ପରିଶ୍ରମ ସଫଳ ହୋଇଛି । ସଫଳତା ହିଁ ଭୁଲାଇ ଦେଇଛି ସମସ୍ତ ପୀଡ଼ା ଏବଂ ବେଦନାକୁ । ହନୁମାନଙ୍କର ହୃଦ୍‌ବୋଧ ହୋଇଛି, ରାବଣ ସମ୍ପର୍କରେ ସେ ଯାହା ଭାବିଥିଲେ, ସେ ତା'ଠୁ କାହିଁ ଆହୁରି ଅଧିକ ଶକ୍ତିଧର, ଆହୁରି ସୁଚତୁର ରାଜନୀତିବିଦ୍ । ଖାଲିଟାରେ ସେ ସସାଗରାଧରାର ଅଧୀଶ୍ୱର, ହୋଇ ବସି ନାହିଁ ।

ବୀର ସିନା ଜାଣେ ବୀରର ମର୍ଯ୍ୟାଦା । ହନୁମାନ ରାବଣକୁ ମନେ ମନେ ପ୍ରଶଂସା ନକରି ରହିପାରୁ ନଥିଲେ । ଏତେ ସହଜରେ ଯେ ତାକୁ ପରାସ୍ତ କରିହେବ ନାହିଁ, ଏ ବିଷୟରେ ତାଙ୍କର ସନ୍ଦେହ ନଥିଲା । ପ୍ରଭୁଙ୍କୁ ଅନ୍ତତଃ ଏ ବିଷୟରେ ସତର୍କ କରିଦେବାକୁ ପଡ଼ିବ । ଆବେଗତାଡ଼ିତ ହୋଇ ସହସା ଗୋଟାଏ କିଛି ପଦକ୍ଷେପ, ନିଶ୍ଚିତ ମୃତ୍ୟୁକୁ ଡାକି ଆଣିବ ସିନା, ତାହାଦ୍ୱାରା କିନ୍ତୁ ଲଙ୍କାର ତିଳେମାତ୍ର କ୍ଷତି ହେବନାହିଁ ।

ରାଜନୀତିବିଦ୍ କହନ୍ତି, ଶତ୍ରୁକୁ ପଦାନତ କରିବାକୁ ହେଲେ ପ୍ରଥମେ ତାହାର ଦୁର୍ବଳ ସ୍ଥାନଗୁଡ଼ିକୁ ଭଲଭାବରେ ଚିହ୍ନି ରଖିଥିବା ଆବଶ୍ୟକ । ନିଜର ସ୍ୱଳ୍ପ ରହଣି କାଳ ଭିତରେ ହନୁମାନ ଲଙ୍କାଗଡ଼ରେ ଅନ୍ତତଃ ଏହିଭଳି ଦୁଇଟି ସ୍ଥାନ ଦେଖି ଆସିଛନ୍ତି, ଯାହାକୁ ରାମଚନ୍ଦ୍ରଙ୍କର ବିଜୟ ପାଇଁ ବ୍ୟବହାର କରାଯାଇପାରିବ । ସେଥି ମଧ୍ୟରୁ

ପ୍ରଥମଟି ହେଉଛି ତ୍ରିଜଟା-ବିଭୀଷଣଙ୍କ କନ୍ୟା । ସେ ଯେ ପର୍ଯ୍ୟନ୍ତ ଦେବୀଙ୍କ ନିକଟରେ ଅଛି, ସେ ପର୍ଯ୍ୟନ୍ତ ସେ ନିରାପଦ । କୌଣସି ନା କୌଣସି ଉପାୟ ବାହାର କରି ସେ ଦେବୀଙ୍କୁ ରକ୍ଷା କରିବ । ଦ୍ୱିତୀୟ ଜଣକ ସ୍ୱୟଂରାବଣ ଅନୁଜ ବିଭୀଷଣ । ସେ ନ୍ୟାୟବାନ, ନୀତିଶାସ୍ତ୍ର ବିଶାରଦ ଏବଂ ସର୍ବୋପରି ଧର୍ମପରାୟଣ । ରାକ୍ଷସରାଜଙ୍କୁ ଭଲମନ୍ଦର ପାର୍ଥକ୍ୟଟା ବୁଝାଇଦେଇ ପାରିବେ । ହନୁମାନଙ୍କର ପ୍ରାଣ ରକ୍ଷା କରିବା ପାଇଁ ସେ ଯେଉଁ ବ୍ୟାକୁଳତା ପ୍ରକାଶ କରିଛନ୍ତି, ସେଇଥିରୁ ହିଁ ତାଙ୍କୁ ଚିହ୍ନି ହୋଇଯାଇଛି ।

ବାହୁଡ଼ା ଯାତ୍ରାରେ ହନୁମାନ ନିଜ କାର୍ଯ୍ୟର ବିଶ୍ଳେଷଣ କରୁଥାଆନ୍ତି । ସେସମୁଦ୍ର ଲଘନ କଲେ ସିନା । ମାତ୍ର ପାଣି ଟୋପାଏ ପାଇଁ ତାଙ୍କ ଛାତିରେ ଥାକଣ୍ଠ ତୃଷା ପୂର୍ଣ୍ଣହୋଇ ରହିଛି । ସେ ଦେବୀ ସୀତାଙ୍କର ଦର୍ଶନ ମାତ୍ର ପାଇଛନ୍ତି । ପ୍ରଭୁଙ୍କର ଶତ୍ରୁ ରାବଣଙ୍କୁ ମାରି ପାରି ନାହାନ୍ତି, କିମ୍ବା ସୀତାଙ୍କୁ ମଧ ବିପନ୍ମୁକ୍ତ କରିପାରି ନାହାନ୍ତି ।

ହନୁମାନ ନିଜକୁ ବୁଝାଉଥିଲେ । ସେ ସାମାନ୍ୟ ଦୂତ ମାତ୍ର । ସୀତାଙ୍କର ସନ୍ଧାନ ନେବା ନିମନ୍ତେ ତାଙ୍କୁ ପଠା ଯାଇଥିଲା । ସେ କାର୍ଯ୍ୟ ସେ ଭଲ ଭାବରେ ତୁଲାଇପାରିଛନ୍ତି । ଆଉ ବାକି ଅନ୍ୟସବୁ ଯାହା ସେ କରିଛନ୍ତି- ମଧୁବନ ତୋଟା ଧ୍ୱଂସ, ରାବଣର ଆତ୍ମୀୟସ୍ୱଜନ ହତ୍ୟା କିମ୍ବା ଲଙ୍କା ଦହନ-ଏସବୁ ସେ କରିଛନ୍ତି ସମ୍ପୂର୍ଣ୍ଣ ରୂପେ ନିଜ ଦାୟିତ୍ୱରେ । ଭଲମନ୍ଦସେ ଜାଣନ୍ତି ନାହିଁ । ଇଚ୍ଛା ହେଲା ପ୍ରଭୁଙ୍କ ଶକ୍ତିର ସାମାନ୍ୟ ପରିଚୟ ଦେବେ ସୁନାର ଲଙ୍କାକୁ ପୋଡ଼ି, ତାହା ସେ କଲେ, ଏଥର ପ୍ରଭୁ ତାକୁ ଭଲ ଭାବରେ ନେବେ, କିମ୍ବା ସମାଲୋଚନା କରିବେ, ସେ ଦାୟିତ୍ୱ ତାଙ୍କର ।

ବିଭୀଷଣ ନଥିଲେ, ରାବଣ ତ କେତେବେଳେ କୌଶଳେ ହନୁମାନଙ୍କୁ ହତ୍ୟା କରି ଥାଆନ୍ତା । ଦୂତ ଯେ ଅବଧ୍ୟ ଏକଥା କଣ ଲଙ୍କରାଜ ଜାଣିନାହିଁ ? ବିଭୀଷଣ ବୁଝାଉଥିଲେ, ଏଭଳି ହୀନକାର୍ଯ୍ୟରେ ଅପଯଶରଟିବ । ସଂସାର କହିବ, ବିଶ୍ରବାନନ୍ଦନ ଭଳି ନୀତିହୀନ ମୂର୍ଖ କେହି ନାହିଁ । ପ୍ରଥମ କଥା ଅନ୍ୟର ପତ୍ନୀକୁ ଅପହରଣ କରି ସେ ଅନ୍ୟାୟ କରିଛି ଏବଂ ଦ୍ୱିତୀୟ କଥା ସେ ଖୋଜି ଆସିଲା ଲୋକକୁ ହତ୍ୟା କରିବାକୁ ଆଦେଶ ଦେଉଛି । ଏଣୁ ସେ ବାନରକୁ ମୁକ୍ତି ଦେବା ଆବଶ୍ୟକ । ମାତ୍ର ରାବଣ ବାନରଶ୍ରେଷ୍ଠ ହନୁମାନଙ୍କର ସ୍ୱରୂପ ଉତ୍ତମ ରୂପେ ବୁଝିଯାଇଥିଲା । ଅଙ୍ଗୁଳି ହେଳନରେ ଯିଏ ପଞ୍ଚସେନାପତି ଆଉ ଅକ୍ଷୟକୁମାର ଭଳି ବୀରକୁ ହତ୍ୟା କରିପାରେ, ଆଉ ପୁଣି ଯାହାପାଇଁ ଇନ୍ଦ୍ରଜିତ କୁମାରକୁ ନାଗପାଶ ଭଳି ଶକ୍ତିର ପ୍ରୟୋଗ କରିବାକୁ ପଡ଼େ, ସେ ଆଉ ଯାହା ହେଉ, ସାମାନ୍ୟ ନୁହେଁ । ତାକୁ ଉପେକ୍ଷା କରିବା ରାକ୍ଷସକୁଳ ପାଇଁ ଆଦୌ ଶୁଭଙ୍କର ହେବ ନାହିଁ ।

ଏ କପି ସାମାନ୍ୟ କ୍ଷୁଦ୍ରଟିଏ ହୋଇ ଲଙ୍କାପୁରରେ ପଶିଛି, ବାହାରିବ ସ୍ଥୂଳକାୟ ଏକ ଶାବକ ହୋଇ । ଏଠାକାର ବ୍ୟବସ୍ଥା ସବୁ ନିଜ ଆଖିରେ ଦେଖି ଯାଉଛି । ଶତ୍ରୁପକ୍ଷ ତାକୁ କାମରେ ଲଗାଇବେ । ଟିକିଏ ମାତ୍ର ଫାଙ୍କ ପାଇ ରାମ ତା'ର ସୈନ୍ୟସାମନ୍ତ ନେଇ ଲଙ୍କାଗଡ଼କୁ ଧାଇଁ ଆସିବ । ସାମାନ୍ୟ ଛିଦ୍ର କାଳାନ୍ତରରେ ବିପୁଳାକାର ଧାରଣ କରିବ । ତେଣୁ ଏହାର ମୃତ୍ୟୁରେ ହିଁ ଏସବୁ ଆଶଙ୍କାର ନିରଶନ ହୋଇପାରିବ । ଲଙ୍କପତି ବୁଝିଥିଲା ଠିକ୍ । ପବନନନ୍ଦନର ପ୍ରକୃତ ପରିଚୟ ପାଇଯିବା ପରେ, ତା' ସମ୍ପର୍କରେ ଯେ ସତର୍କତାର ପ୍ରୟୋଜନ ରହିଛି, ଏହା ତାର ଅଭିଜ୍ଞ ମନରେ ପ୍ରତିଫଳିତ ହେବା ମଧ୍ୟ ଯଥାର୍ଥ । ଅସୁରବଳର ସାମୂହିକ ଖଡ୍‌ଗାଘାତରୁ ଆତ୍ମରକ୍ଷା କରିବା ବା ଲଙ୍କା ଦହନ କରିବା, ସେତ ସ୍ୱତନ୍ତ୍ର କଥା ।

ସେ ଆହୁରି ଶୁଣିଛନ୍ତି, ଲଙ୍କାପୋଡ଼ି ପରେ ତାଙ୍କୁ ଯେକୌଣସି ଉପାୟରେ ଧରି ହତ୍ୟା କରିବା ନିମନ୍ତେ ରାବଣର ବ୍ୟାକୁଳତା । ବିଭୀଷଣ ତାକୁ ସ୍ପଷ୍ଟ ଭାବରେ ବୁଝାଇ ଦେଇଥିଲେ, ସେଥିପାଇଁ ବହୁବେଳ ମିଳିବ । ଯେଉଁ ଛାର କପି, ଲଙ୍କାରେ ଏତେ ମହାନ କାଣ୍ଡର ନାୟକ, ତାହାକୁ ସାମାନ୍ୟ ମଣିବା ଅନୁଚିତ । ଲଙ୍କା ବର୍ତ୍ତମାନ ଶୋକାକୁଳ । ତେଣୁ ଏ ମୁହୂର୍ତ୍ତରେ ସେଇ ବାନର ପଛରେ ଲାଗିବା ରାକ୍ଷସ ଶକ୍ତିର ଅପଚୟ ମାତ୍ର ହେବ ।

ରାବଣ ଅଗତ୍ୟା ବୁଝିଲା । ନ ହେଲେ ପୁଣି ଗୋଟାଏ ଖଣ୍ଡଯୁଦ୍ଧ ଲାଗିଥାନ୍ତା ନିଶ୍ଚୟ । ବିଭୀଷଣଯୋଗୁଁ ଏଥିରୁ ରକ୍ଷା ମିଳିଗଲା ।

ଅଦୂରରେ ଦେଖାଯାଉଛି ବୃକ୍ଷଲତା ସମାଚ୍ଛାଦିତ ଯକ୍ଷ-ରକ୍ଷ-ଗନ୍ଧର୍ବ କିନ୍ନରସେବିତ ବିଶାଳକାୟ କ୍ରମବର୍ଦ୍ଧନମାନ ଖଣ୍ଡେ କଳାମେଘ ଭଳି ବିନ୍ଧ୍ୟଗିରି ଯାହା ଉପରେ ବସିରହିଛନ୍ତି ଉର୍ଦ୍ଧ୍ୱମୁଖ ସପ୍ତସାରଥୀ ନଳନୀଳ ତାରାଖ୍ୟ ଜାମ୍ବବ ଅଙ୍ଗଦ ସୁଷେଣ ଆଦି । ଭୂଦେବିଙ୍କର ସୁପୁଷ୍ଟନୀଳ କବରୀଭଳି ପରିଦୃଶ୍ୟମାନ ବିନ୍ଧ୍ୟାଦ୍ରିର ସେଇ ଶିଖର ଲକ୍ଷ୍ୟ କରି ହନୁମାନ ଏଥର ଅବତରଣ କରିବେ । ବ୍ୟାକୁଳିତ ବନ୍ଧୁମାନଙ୍କୁ ସାନ୍ତ୍ୱନା ଦେଇ ପାରିବେ ।

ହନୁମାନ ଜାଣନ୍ତି, ଏମାନେ ସବୁ କପିରାଜ ସୁଗ୍ରୀବଙ୍କର ବିଶ୍ୱସ୍ତ ଅନୁଚର । ତାଙ୍କର ଆଜ୍ଞାରେ ଅସମ୍ଭବକୁ ସମ୍ଭବ କରିବାକୁ ଯାଇ ହସି ହସି ନିଜର ପ୍ରାଣ ଦେଇ ଦେବେ । ବାଳିପୁତ୍ର ଅଙ୍ଗଦ ମଧ୍ୟ ସୁଗ୍ରୀବଙ୍କର ଏକାନ୍ତ ଅନୁଗତ ହୋଇ ପଡ଼ିଲେଣି । ରାମଚନ୍ଦ୍ର ଏଇମାନଙ୍କ ସହିତ ନିଜର ଭାଗ୍ୟକୁ ଯୋଡ଼ିଛନ୍ତି । ସଫଳତା ନିଶ୍ଚୟ ତାଙ୍କର ପଦଚୁମ୍ବନ କରିବ ଏଥିରେ ସନ୍ଦେହ ନାହିଁ ।

ଜ୍ୱଳନ୍ତ ଏକ ଉଲ୍‌କା ପିଣ୍ଡଭଳି ଆକାଶମୂର୍ତ୍ତି ପବନତନୟ ଏଥର ଅବତରଣ କରୁଛନ୍ତି । ଏଇ ମୁହୂର୍ତ୍ତରେ ତାଙ୍କୁ କାୟା ସମ୍ବରଣ କରିବାକୁ ହେବ । ନଚେତ୍ ବିନ୍ଧ୍ୟଗିରି ତାଙ୍କୁ ଧାରଣ କରିପାରିବ ନାହିଁ । ପୃଥିବୀ ହେବ ରସାତଳଗାମୀ ।

ସେମାନେ ତାଙ୍କୁ ଦେଖି ପାରିଲେଣି । ଦୂରରୁ ଶୁଣାଯାଉଛି ସେମାନଙ୍କର ଉଲ୍ଲାସ କୁହାଟ ।

ତରୁଣମାନଙ୍କ କଥା ଦୂରେ ଥାଉ, ପ୍ରବୀଣ ସୁଷେଣ ଏବଂ ଜାମ୍ବବ ମଧ୍ୟ ଉଲ୍ଲାସର ଏଇ ସ୍ରୋତରେ ନିଜକୁ ଭସାଇ ଦେଇଛନ୍ତି । ହନୁମାନଙ୍କ ଉପରେ ଯେ ସେମାନଙ୍କର ଅଖଣ୍ଡ ଆସ୍ଥା । ସେମାନେ ଜାଣନ୍ତି, ହନୁମାନ ନିଶ୍ଚୟ କାର୍ଯ୍ୟସିଦ୍ଧି କରି ବାହୁଡ଼ିଥିବେ । ଦେବୀ ସୀତାଙ୍କ ସମ୍ପର୍କରେ କୌଣସି ନିଶ୍ଚିତ ସମ୍ବାଦ ତାଙ୍କଠାରୁ ମିଳିବ ।

ଦୁଇଦିନ ଦୁଇ ରାତ୍ରି ପରେ ହନୁମାନ ଏମାନଙ୍କୁ ଦେଖି ନିଜେ ମଧ୍ୟ କମ୍ ଆନନ୍ଦିତ ନୁହନ୍ତି ।

ଦୁଇ ପକ୍ଷ ପରସ୍ପର ନିକଟକୁ ଆଗେଇ ଆସୁଥିଲେ ।



# ନ ହନ୍ୟତେ

ସିନ୍ଧୁ ଦେଶର ରାଜା ରହୂରାଣ ରାଜପଥରେ ଚାଲିଛନ୍ତି ଶିବିକାରୋହଣରେ । ମକରମୁଖୀ ଦ୍ୱିରଦରଦ ନିର୍ମିତ ବିଶାଳ ଶିବିକା । ରାଜକୀୟ ଆଡ଼ମ୍ବରରେ ମଣ୍ଡଣି ହୋଇଛି । ଉପରେଇନ୍ଦ୍ରନୀଳ ବର୍ଣ୍ଣର ଚନ୍ଦ୍ରାତପରେ ଜରିବୁଟା ଖଞ୍ଜା ହୋଇ ଶରତ୍କାଳୀନ ମେଘମୁକ୍ତ ଆକାଶର ଭ୍ରମ ସୃଷ୍ଟି କରୁଛି । ତହିଁରୁ ଲମ୍ବାୟମାନ ସୂକ୍ଷ୍ମ ପଟ୍ଟସୂତ୍ର ନିର୍ମିତ ଥୋପନାମାନ । ତଳେ ସୁକୋମଳ ପାରସ୍ୟଦେଶୀୟ ମଖମଲୀ ଗାଲିଚା ଉପରେ ମହାର୍ଘ ପଟ୍ଟବସ୍ତ୍ରର ଆବରଣ । ତଥି ଉପରେ ବିରାଟ ଉପାଧାନ ଆଶ୍ରୟ କରି ରାଜା ରହୂରାଣ । ରାଜାଙ୍କ ଗହଣରେ ବହୁ ସେବକଛତ୍ର ଚରାସ ଆଲ୍ଟେଣି ଧରି ପଦବ୍ରଜରେ ଶିବିକାର ଦୁଇପାର୍ଶ୍ୱରେ ଚାଲିଛନ୍ତି । ଶିବିକାର ଆଗରେ ହସ୍ତରେ ଉନ୍ମୁକ୍ତ କୃପାଣଧାରୀ ଦଳେ ଅଶ୍ୱାରୋହୀ । ଆଗେଇ ଚାଲିଛି ଶୋଭାଯାତ୍ରା । ରହୂରାଣ ବାହାରିଛନ୍ତି ନଗର ପରିକ୍ରମାରେ ।

ରହୂରାଣଙ୍କ ଅଶ୍ୱଶାଳାରେ ସିନ୍ଧୁ ଦେଶୀୟ ବଡବା ଜାତୀୟ ବହୁ ଉତ୍କୃଷ୍ଟ ଅଶ୍ୱ । ଉଷ୍ଟ୍ର ଗଜାଦିର ମଧ ଅଭାବ ନାହିଁ । ତଥାପି ରାଜା ବାହାରିଛନ୍ତି ଶିବିକା ଆରୋହଣ କରି । ଅଶ୍ୱ ଗଜାଦି ଯେମିତି ତାଙ୍କୁ ତାଙ୍କର ପ୍ରିୟ ପ୍ରଜାପୁଞ୍ଜଠାରୁ ବହୁ ଦୂରବର୍ତ୍ତୀ କରିଦିଅଛି । ରାଜା-ପ୍ରଜା-ପିତା ଆଉ ପୁତ୍ରର ନିକଟ ସମ୍ପର୍କ ମଧରେ ସେମାନେ ଯେପରି ହୋଇ ଉଠନ୍ତି ଗୋଟିଏ ଗୋଟିଏ ବିରାଟ ବିଷ୍ମୟକ । ଦୂରତ୍ୱ ବଢ଼ିଯାଏ ଆଉ ସମୟ ବି କେମିତି ଶୀଘ୍ର ସରିଯାଏ । ସେଇଥିପାଇଁ ରାଜାଙ୍କର ଆଜି ଏ ଶିବିକା ଯାତ୍ରା ।

ନଗର ପରିକ୍ରମାର ଅନ୍ୟ ଏକ ଗୋପନ କାରଣ ମଧ ଥିଲା । ଚାରମୁଖରୁ ରାଜା ସମ୍ବାଦ ପାଇଥିଲେ, ନଗରର କଟୁଆଳ ଦୂର ଦେଶାଗତ ବ୍ୟବସାୟୀମାନଙ୍କ ଠାରୁ ନଗରର ପ୍ରବେଶଦ୍ୱାରରେ ନିୟମିତ ଅନାକାଙ୍କ୍ଷିତ ଶୁଳ୍କ ଆଦାୟ କରୁଛନ୍ତି ।

ରାଜା ଜାଣନ୍ତି, ଏହାଦ୍ୱାରା ତାଙ୍କର ଶାସକ କଳଙ୍କିତ ହୋଇଯିବ । ଶୁକ୍ରାଚାର୍ଯ୍ୟଙ୍କ ନୀତି କହୁଛି,ରାଜା ହେଉଛନ୍ତି ସହସ୍ରାଂଶୁ । ସହସ୍ର କିରଣରେ ସେ ପ୍ରଜାଙ୍କ ଠାରୁ କର-ରୂପକ ଜଳ ଗ୍ରହଣ କରନ୍ତି, ପୁଣି ମେଘ ରୂପରେ ତାକୁ ହିଁ ପ୍ରଜାଙ୍କର ମଙ୍ଗଳ କାମନାରେ ବର୍ଷା କରନ୍ତି । ଏହି ନେବା ଏବଂଦେବା ମଧ୍ୟରେ ହିଁ ରାଜାଙ୍କର ଜୀବନକାଳ ଅତିବାହିତ ହୋଇଯାଏ । ରାଜକର୍ମଚାରୀମାନେ ହେଉଛନ୍ତି, ରାଜାଙ୍କର ବାହୁ ।

ଯେଉମାନେହିଁ କର ସଂଗ୍ରହ କରି ରାଜାଙ୍କ ପାଖରେ ଦାଖଲ କରନ୍ତି । କୌଣସି କର୍ମଚାରୀ ଯଦି କେବଳ ଅନ୍ୟାୟ ଭାବରେ କର ଗ୍ରହଣ କରିଯାଏ ଏବଂ ରାଜାଙ୍କର କୋଷାଗାରରେ ତାହା ପଇଠ ନକରେ ତେବେ ଶାସନ ଭ୍ରଷ୍ଟ ହୋଇଯିବ ସିନା ।

ବ୍ୟାପାରଟି ଶୁଣିଲା ବେଳଠାରୁ ରାଜା ଉଦ୍‌ବିଗ୍ନ ହୋଇପଡ଼ିଥିଲେ । ସ୍ୱଚକ୍ଷୁରେ ଘଟଣାଟିକୁ ପରୀକ୍ଷା ନକଲା ପର୍ଯ୍ୟନ୍ତ ତାଙ୍କର ସ୍ୱସ୍ତି ନଥିଲା । ସ୍ପଷ୍ଟ ଦିବାଲୋକରେ ଜଣେ ଦାୟିତ୍ୱପୂର୍ଣ୍ଣ ରାଜକର୍ମଚାରୀ ଯେ ଏଭଳି ଦୁଃସାହସ କରିପାରେ, ଏହା ବିଶ୍ୱାସ କରିବାକୁ ତାଙ୍କର ମନ ବଳୁ ନଥିଲା ।

ଅନୁଗତ ମନ୍ତ୍ରୀ ବହୁ ସଙ୍କୋଚର ସହିତ ନିବେଦନ କରିଥିଲେ, ମହାରାଜ, ସଂସାରରେ ବିଭୁପ୍ରେମ ଦୂଷଣୀୟ ବୋଲି କେହି କହିପାରିବ ନାହିଁ । ମାତ୍ର ତାକୁ ନେଇ ଖୁବ୍ ବେଶି ଆଡମ୍ବର ଅନେକ ସମୟରେ ବିଭ୍ରାଟ ସୃଷ୍ଟି କରିଥାଏ । ଜାଣନ୍ତି ତ ଅତି ଆସକ୍ତି ସର୍ବଥା ପରିତ୍ୟାଜ୍ୟ ।

ରହୂରାଣ ମନ୍ତ୍ରୀଙ୍କର ଇଙ୍ଗିତ ବୁଝିପାରିଥିଲେ । ବିଷ୍ଣୁଭକ୍ତ ରାଜା ଯେ ପୂଜା ଅର୍ଚ୍ଚନା ନାମରେ ବହୁ ସମୟ ଅପଚୟ କରିବା ଫଳରେ ରାଜ୍ୟ ଶାସନ ନିମନ୍ତେ ଯଥେଷ୍ଟ ସମୟ ଦେଇପାରୁ ନାହାନ୍ତି, ମନ୍ତ୍ରୀ ପରୋକ୍ଷରେ ତାହାହିଁ ସୂଚାଇ ଦେଇଥିଲେ ।

ମନ୍ତ୍ରୀ ଆହୁରି କହିଥିଲେ, ମହାରାଜ, ଅନ୍ୟାୟକୁ ଶିଶୁ ଅବସ୍ଥାରୁ ହିଁ ସମୂଳେ ଉତ୍ପାଟନ କରି ଦୂରକୁ ନିକ୍ଷେପ କରିବାକୁ ହୁଏ । ନଚେତ୍ ଗୃହସ୍ଥର ଅସାବଧାନତାରୁ ଶିଶୁ ବଟବୃକ୍ଷଟିଏ ଯେମିତି ଅଚିରେ ବିରାଟ ଅଟ୍ଟାଳିକାର ଧ୍ୱଂସର କାରଣ ହୋଇଥାଏ, କ୍ଷୁଦ୍ର ଅନ୍ୟାୟ ଅତି ଅଳ୍ପ କାଳ ମଧ୍ୟରେ ସମାଜକୁ ଧ୍ୱଂସମୁଖରେ ପକାଇ ଦିଏ ।

ସେଇଥିପାଇଁ ରହୂରାଣ ଆଜି ଚକ୍ଷୁକର୍ଣ୍ଣର ବିବାଦ ଭଞ୍ଜନ କରିବାପାଇଁ ନଗର ପରିକ୍ରମାରେ ବାହାରି ପଡ଼ିଛନ୍ତି । ତେବେ ଶିବିକା ଆରୋହଣ କରିବାର ପର ମୁହୂର୍ତ୍ତରୁ ସେ କେମିତି ଅସ୍ୱସ୍ତି ଅନୁଭବ କରୁଛନ୍ତି ।

ଗୁରୁଭାର ଶିବିକା ପ୍ରଶସ୍ତ ରାଜପଥରେ ଯେଉଁଭଳି ବାଧାଶୂନ୍ୟ ଭାବରେ ବାହିତ ହେବା କଥା ସେଭଳି ହେଉନାହିଁ । ପ୍ରଥମେ ରାଜାଙ୍କର ମନେ ହୋଇଥିଲା, ହୁଏତ ରାଜପଥ କଙ୍କରିଳ ହୋଇଥିବାରୁ ବାହକମାନଙ୍କର ଗତି ଅସମ ହୋଇପଡୁଛି । ଫଳରେ ଶିବିକା ଦୋହଲି ଯାଉଛି । ମାତ୍ର ରାଜପଥ ଆଡକୁ ଅନାଇ ରାଜା ତହିଁରେ କୌଣସି ଦୋଷ ଦେଖିବାକୁ ପାଇଲେ ନାହିଁ ।

ବକ୍ର ଭାବରେ ଶିବିକା ବାହିତ ହେଉଥିବାରୁ ରାଜା ସ୍ଥିର ଭାବରେ ତହିଁରେ ବସିପାରୁ ନାହାନ୍ତି । ତାଙ୍କର ଶରୀର ଘନଘନ ଆନ୍ଦୋଳିତ ହେଉଛି ।

ଦ୍ୱିଷଷ୍ଠି ସଂଖ୍ୟକ ବଳବାନ୍ ବାହକ ଶିବିକା ବହନ କରି ମୁଖରେ ନାନା ପ୍ରକାର ଶବ୍ଦ କରି କରି ରାଜପଥରେ ଆଗେଇ ଚାଲିଛନ୍ତି । କେବଳ ଜଣକୁ ଛାଡ଼ି ଅନ୍ୟମାନେ ଦୀର୍ଘକାଳରୁ ରାଜ-ଶିବିକା ବହନରେ ଅଭ୍ୟସ୍ତ । ଯାତ୍ରା ଆରମ୍ଭ ପୂର୍ବରୁ ବାହକ ସେବାସିଂ ହଠାତ୍ କଠିନ ଉଦରାମୟ ରୋଗରେ ପୀଡ଼ିତ ହୋଇ ପଡ଼ିବାରୁ ସେବକମାନେ ବିକଳ୍ପ ହିସାବରେ ଜଣେ ସବଳ ଲୋକକୁ ଧରି ଆଣିଛନ୍ତି । ଦୀର୍ଘପୁଷ୍ଟ ଏବଂ ଦୃଢ଼ ଶରୀର । ଶିବିକା ବହିନେବା ପାଇଁ ସର୍ବଥା ଉପଯୁକ୍ତ । ରାଜସେବକମାନେ କାଳବିଳମ୍ବ ନକରି ତାକୁ ଧରିଆଣି ବାହକ ରୂପରେ ଖଞ୍ଜି ଦେଇଛନ୍ତି ।

ଲୋକଟି ତିଳେମାତ୍ର ଆପତ୍ତି ନକରି ଶିବିକା ବହିଚାଲିଛି । ଅଥଚ ପ୍ରଥମରୁହିଁ ସେ କେମିତି ଅନ୍ୟମନସ୍କ । କାହା ସହିତ ବିଶେଷ କୌଣସି ବାର୍ତ୍ତାଳାପ ନାହିଁ । ମନକୁ ମନ କ'ଣ କେମିତି ଭାବି ଚାଲିଛି । ପଦକ୍ଷେପରେ ବାହକର ସେଇ ସାବଲୀଳତା ଆଦୌ ନାହିଁ । ପ୍ରତ୍ୟେକ ପାଦ ପକାଉଛି ବହୁ ସାବଧାନତାର ସହିତ, ସତେ ଯେମିତି ତା'ର ପଦପାତରେ ପୃଥିବୀରେ ଏକ ବିରାଟ ସଂହାରଲୀଳା ଘଟିଯିବ । ଯେତେ ସାବଧାନ କରିଦେଲେ ମଧ୍ୟ ସେଥିପ୍ରତି ସେ ଅନବହିତ । ଭୂତଗ୍ରସ୍ତ ଭଳି ସେ ନିଜଠାରେ ନିଜେ ସଂପୂର୍ଣ୍ଣ ମଗ୍ନ ।

ପ୍ରଧାନ ବାହକ ରାଜାଙ୍କର ଏ ଅସ୍ୱସ୍ତିକୁ ଲକ୍ଷ୍ୟ କରିପାରିଛି । ଆଶଙ୍କାରେ ତାହାର ହୃଦୟ କମ୍ପିବାକୁ ଆରମ୍ଭ କରିଛି । ପ୍ରଥମେ ତାହାର ଧାରଣା ହୋଇଥିଲା ଯେ, ଥରେ ଦୁଇଥର ସାବଧାନ କରାଇ ଦେଲେ, ନୂତନ ବାହକ ବାଟକୁ ଆସିଯିବ । ମାତ୍ରବାରମ୍ବାର ଚେତାବନୀ ଦେଇ ସୁଦ୍ଧା ସେ ସୁଫଳ ପାଉନାହିଁ । ଏଣେ ରାଜରୋଷ କେଉଁ ମୁହୂର୍ତ୍ତରେ ବିସ୍ଫୋରିତ ହେବ, ତାହା ସେ ଜାଣେ ନାହିଁ ।

ସେ ଭାବିଥିଲା ହୁଏତ ନୂତନ ସେବକଟି କୌଣସି ଅସୁସ୍ଥତା ଭୋଗୁଛି । ମାତ୍ର ବାରମ୍ବାର ଜିଜ୍ଞାସା କରି ସୁଦ୍ଧା ସେ ତାହାର କୌଣସି ଉତ୍ତର ପାଇନାହିଁ । ଏ ଅବସ୍ଥାରେ ତା' ସମ୍ମୁଖରେ କେବଳ ଗୋଟିଏ ବାଟ ଖୋଲା ରହିଛି । ବ୍ୟାପାରଟିକୁ ରାଜାଙ୍କୁ ନିବେଦନ ଛଡ଼ା ଅନ୍ୟ ଗତି ନାହିଁ ।

ନିଶ୍ଚୟ ସେଥିରେ ଏଇ ନୂତନ ବାହକଟିର ଚରମ କ୍ଷତି ହେବ । ମାତ୍ର ତା'ର ଆଉ ଉପାୟ କ'ଣ ? ନିଜର ଜୀବନଟାକୁ ତ କୌଣସି ମତେ ବଞ୍ଚାଇ ବାକୁ ହେବ ! ନୂତନ ସେବକଟିର କିନ୍ତୁ ଏ ବିଷୟରେ ତିଳେମାତ୍ର ଚିନ୍ତା ନାହିଁ । ନୀରବରେ କ'ଣ ଭାବୁ ଭାବୁ ସେ ପୂର୍ବଭଳି ସତର୍କ ପଦକ୍ଷେପରେ ଆଗେଇ ଚାଲିଛି । ପାଦଟିଏ ଭୂଇଁ ଉପରୁ ଟେକି ପୁନର୍ବାର ପକାଇବା ପୂର୍ବରୁ ଦୀର୍ଘସମୟ ଭୂଇଁକୁ ଅନାଇ କ'ଣ ନିରୀକ୍ଷଣ କରୁଛି ।ତା'ପରେ ନିଶ୍ଚିତ ହୋଇ ପାଦଟିକୁ ଖୁବ୍ ଆସ୍ତେ ମାଟି ଉପରେ

ଥୋଉଛି । ଏଥିରେ ଅନ୍ୟମାନଙ୍କର ଯେକି ଅସୁବିଧା ହେଉଛି,ସେ ବିଷୟରେ ତା'ର ଟିକେ ମାତ୍ର ଚିନ୍ତା ନାହିଁ ।

ନୂତନ ବାହକ ନିଜକୁ ନେଇ ମଗ୍ନ । ବିଶ୍ୱଚରାଚରର ଏ ବିଶାଳ ଜୀବଜଗତ ତା' ଆଗରେ ଏକ ଖୋଲା ପୁସ୍ତକ ଭଳି ପଡ଼ି ରହିଛି । ବିଶ୍ୱସୃଷ୍ଟିର ଶ୍ରେଷ୍ଠତମ ପ୍ରାଣୀ ମନୁଷ୍ୟଠାରୁ ଆରମ୍ଭ କରି ଅସଂଖ୍ୟ କୀଟପତଙ୍ଗ ଏହାର ଅଣୁ ପରମାଣୁରେ ବ୍ୟାପି ରହିଛନ୍ତି । ମଣିଷ ଭଳି ସେମାନଙ୍କର ମଧ୍ୟ ଆଶା ଆକାଂକ୍ଷା ରହିଛି । ପ୍ରେମ ଈର୍ଷା ରହିଛି । ସ୍ୱପ୍ନ ରହିଛି । ସେମାନେ ହୁଏତ କେହି ମଣିଷ ଭଳି ମହତ୍ ନୁହଁନ୍ତି । ତେବେ ସେମାନଙ୍କର ସୁଖ ଦୁଃଖର ବ୍ୟାପାରକୁ ବୁଦ୍ଧି ବିବେକ ଥାଇ, ଅସ୍ୱୀକାରକରାଯିବ କେମିତି ? ସେମାନେ ମଧ୍ୟ ଏଇ ମାଟିର ପୃଥିବୀକୁ, ଏଇ ଧୂଳି ମଳିନ ସଂସାରକୁ ମଣିଷ ଭଳି ଭଲ ପାଆନ୍ତି । ଏଇ କ'ଣ ସେମାନଙ୍କର ଅପରାଧ ? ଏଇଥିପାଇଁ କ'ଣ ସେମାନେ ଅକାରଣରେ ମୃତ୍ୟୁ ଦଣ୍ଡ ଭୋଗିବେ ? ପୃଥିବୀର ଶ୍ରେଷ୍ଠ ବୁଦ୍ଧିମାନ ପ୍ରାଣୀ ବୋଲି ଗର୍ବ କରୁଥିବା ମଣିଷ ନିଜର ସମସ୍ତ ଚାତୁର୍ଯ୍ୟ ଖଟାଇ ଯେତେବେଳେ ଗୋଟିଏ ମାତ୍ର ନୂତନ ଜୀବନ ସୃଷ୍ଟିକରି ପାରୁ ନାହିଁ, ସେତେବେଳେ ନିର୍ବିଚାରରେ ଶହ ଶହ ନିରୀହ ଜୀବନ ସଂହାର କରି ଚାଲିଛି କେଉଁ ଅଧିକାରରେ ?

ଏହିପରି ଶହ ଶହ ଅନୁତ୍ତରିତ ପ୍ରଶ୍ନର କୋଳାହଳ ମଧ୍ୟରେ ଅନ୍ୟ ମନସ୍କ ବାହକ ଶିବିକା ସହିତ ଘୋଷାଡ଼ି ହୋଇ ଚାଲିଛି । ବାହାରେ କ'ଣ ଘଟୁଛି ବା ପରିସ୍ଥିତି କିଭଳି ଏ ବିଷୟରେ ତାହାର ଟିକିଏ ହେଲେ ଚିନ୍ତା ନାହିଁ ।

ବାହକ ଭାବୁଛି ନିଜର ବିଚିତ୍ର ଜୀବନ କଥା । ଜୀବନ ସମ୍ପର୍କରେ ଏଇ ଅଳ୍ପ ଦିନ ମଧ୍ୟରେ ତାହାର ଯେଉଁ ଅନୁଭବ ହୋଇଗଲାଣି, ସେତକ କେତେ ଜଣଙ୍କ ଭାଗ୍ୟରେ ଘଟେ ? ବ୍ରାହ୍ମଣ କୁଳରେ ଜାତ ହୋଇ ଯଜନଯାଜନ କର୍ମରେ ଜୀବନ କଟାଇ ଦେବା ଯେଉଁଠି ତାହାର କର୍ତ୍ତବ୍ୟ, ସେଥିରେ ତାକୁ ମିଳିଛି ଏଇ ଶିବିକା-ବହନର କୁତ୍ସିତକର୍ମ ।

ଏହାକୁ ହିଁ କୁହନ୍ତି ଭବିତବ୍ୟ । ନଚେତ୍ ଶମଦମ ଦାନ ନିପୁଣ ବ୍ରାହ୍ମଣ ପିତାର ସନ୍ତାନ ହୋଇ ଏଭଳି ଦଶା ଭୋଗିବାକୁ ପଡ଼ନ୍ତା କାହିଁକି ? ନବ ସଂଖ୍ୟକ ସନ୍ତାନ ମଧ୍ୟରେ ସେଇ ହିଁ ତ ଥିଲା ପିତାଙ୍କରପ୍ରିୟ । ବେଦ ବେଦାନ୍ତ ଶାସ୍ତ୍ର ପୁରାଣଶିକ୍ଷା ଦେବାରେ ପିତା ତ କୌଣସି ହେଳା କରି ନଥିଲେ । ତାଙ୍କରି କୃପାରୁ ସେ ଭଗବତ୍ ବିଳାସୀ ହୋଇ ତୁଚ୍ଛ ସାଂସାରିକ ଭୋଗ ବିଳାସ ପରିହାର କରି ଅହରହ ପ୍ରଭୁ ନାମ ସଂକୀର୍ତ୍ତନରେ ପ୍ରମତ୍ତ । ସଂସାର ଚର୍ଯ୍ୟା ପାଇଁ ତା' ମନରେ କୌଣସି ଆସକ୍ତି ନାହିଁ । ସେ ଜାଣେ ପାନ୍ଟି ଫିଟାଇଲେ ଜୀବ ମୋହଗ୍ରସ୍ତ ହୋଇ ପଡ଼େ । ଆତ୍ମା ଭିତରୁ 'ମୁଁ ତ୍ୱ' ଆତ୍ମପ୍ରକାଶ କରିବାକୁ ଚହଳ ପକାଏ । ମୋହର ବନ୍ଧନରୁ ଆତ୍ମରକ୍ଷା କରିବା ପାଇଁ

ଜଡ଼ତ୍ୱ ହିଁ ହେଉଛି ଏକମାତ୍ର ଆବରଣ । ତେଣୁ ସେ ସଂସାରରେ ପରିଚିତ 'ଜଡ଼ଭରତ' ରୂପେ ।

ତହିଁକି ତାର ଲେଶମାତ୍ର ଦୁଃଖ ନାହିଁ । ପିତାଙ୍କ ସାନ୍ନିଧ୍ୟରୁ ସାବିତ୍ରୀ ମୂଳ ପ୍ରଣବ ଅକ୍ଷର, ଯଜନଯାଜନ ଆଦି ଷଟ୍‌କର୍ମ ଯତ୍ନର ସହିତ ଶିକ୍ଷା କରି, ତହିଁରେ ଆତ୍ମଲୀନ ହୋଇ ସେ ତା'ର ସମୟ ବେଶ୍ ଭଲ ଭାବରେ କଟାଇ ଦେଉଥିଲା । ଏତିକି ବେଳେ ବିପତ୍ତି ।

ପିତା ମହାପ୍ରୟାଣ କଲେ । ମାତା ମଧ୍ୟ ସପତ୍ନୀ ପୁତ୍ରମାନଙ୍କ ହସ୍ତରେ ନିଜର ଏଇ ଆତ୍ମଭୋଳା ପୁତ୍ରର ଦାୟିତ୍ୱ ନ୍ୟସ୍ତ କରି ପତିଙ୍କର ଅନୁଗମନ କଲେ । ଏତେ ବଡ଼ ସଂସାରରେ ସେହୋଇଗଲା ଏକା ।

ଭ୍ରାତାମାନେ ଦିନାକେତେ ବେଶ୍ ଆଦରରେ ନିଜର ଏହି ଅପୋଗଣ୍ଡ ସହୋଦରଟିକୁ ଲାଳନ କଲେ । ମାତ୍ର ଜଡ଼ାର ସୁଖର ଦିନ ଶେଷ ହୋଇଯାଇଥିଲା ।

ସଂସାରୀ ଦୃଷ୍ଟିରେ ବିଷ୍ଣୁ ନାମ କୀର୍ତ୍ତନର କୌଣସି ମୂଲ୍ୟ ନାହିଁ । ସଂସାରର ପ୍ରୟୋଜନରେ ଯେ ଲାଗି ପାରିଲା ନାହିଁ, ମଣିଷର ଆଖିରେ ତାହାର ମୂଲ୍ୟ କାଣି କଉଡ଼ିଟିଏ ମଧ୍ୟ ନୁହେଁ । ଭ୍ରାତାମାନେ ସଂସାରୀ । ସେମାନଙ୍କର ପରିବାର ଅଛି । ତାହାର ପ୍ରୟୋଜନ ଅଛି । ଅଭାବ ପୁଣି ସଦାସର୍ବଦା ମୁଖ ବ୍ୟାଦାନ କରି ସଂସାରୀ ମଣିଷକୁ ଗ୍ରାସ କରିବା ନିମନ୍ତେ ଉଦ୍ୟମଶୀଳ । ଘରେ ବସାଇ ଗୋଟିଏ ସମର୍ଥ ପୁରୁଷକୁ କିଏ କେତେ ଦିନ ପୋଷିବ ?

ଜଡ଼ ଭରତ ତେଣୁ ପଶୁରକ୍ଷଣ କର୍ମରେ ନିଯୁକ୍ତ ହେଲେ । ଅନ୍ୟ ଗୃହରେ ବୃତ୍ତି ଭୋଗୀ ହୋଇ ତାଙ୍କୁ ଜୀବିକା ଚଳାଇବାକୁ ପଡ଼ିଲା । ବିଷ୍ଣୁ ପ୍ରେମ ତାଙ୍କୁ ଗୋଟିଏ ବିଷୟ ଶିକ୍ଷା ଦେଇଥିଲା, ଯାହାର ନାମ ସନ୍ତୋଷ । କର୍ମରେ ଅବହେଳା ନାହିଁ । ଶରୀର ରକ୍ଷା ପାଇଁ ଯିଏ ଯାହା ସ୍ୱେଚ୍ଛାରେ ଦେଲା ସେତିକି ମାତ୍ର ପରମ ସନ୍ତୋଷରେ ଗ୍ରହଣ କରି ସେ ଜୀବନ କଟାଇଲେ ।

ଖରା ବର୍ଷା ଶୀତ କାକର, ସବୁ ସମୟରେ ନିର୍ବିକାର ହୋଇ କର୍ତ୍ତବ୍ୟ ପାଳନ କରି ଚାଲିବାରୁ ସଂସାରୀ ମଣିଷ ପୁଣି ସଚେତନ ହୋଇ ଉଠିଲା। ବାଃ ପରିବାର ପାଇଁ ଏଭଳି ମଣିଷଟିଏ ତ କାମଧେନୁ ସଦୃଶ । ଯେତେ ଦୋହନ କରିବ, ସେତେ ମିଳିବ । ଜଡ଼ା ଏଥର ପଶୁ ରକ୍ଷଣ ସାଙ୍ଗକୁ କୃଷି କର୍ମ ମଧ୍ୟ ପର୍ଯ୍ୟବେକ୍ଷଣକରୁ । ସେଥିରେ ମଧ୍ୟ ପ୍ରତିବାଦ ନାହିଁ । ବନ୍ୟ ପଶୁଙ୍କ ସମୂହ ଆକ୍ରମଣରୁ କୃଷିକ୍ଷେତ୍ରକୁ ରକ୍ଷା କରି ଉଦ୍‌ବୃତ୍ତ ସମୟରେ ହରିନାମ ସଂକୀର୍ତ୍ତନରେ ସମୟ କଟାଇ ଦେଉଥିଲା ବେଳେ ସେଇ ଲୋମହର୍ଷଣକାରୀ ଘଟଣାଟି ଘଟିଲା ।

ବୃଷଳୀପତି ରାଜାଙ୍କର ଅନୁଚରମାନେ ରାତ୍ରିର ନିଷ୍ଛିଦ୍ର ଅନ୍ଧକାର ମଧ୍ୟରେ ଜଡ଼ଭରତଙ୍କୁ ବାନ୍ଧି ନେଇଗଲେ । ସେମାନେ ବାହାରି ଥିଲେ ପଳାୟିତ-ବଳି ନିମନ୍ତେ ଉଦ୍ଦିଷ୍ଟ ବ୍ୟକ୍ତିଟିର ସନ୍ଧାନରେ । ରାଜା ବୃଷଳୀପତି ଅପୁତ୍ରିକ ଥିଲେ । ପୁତ୍ର କାମନାରେ ଚଣ୍ଡୀଙ୍କ ନିକଟରେବଳୀ ଦେବା ପାଇଁ ବହୁ କଷ୍ଟରେ ନର-ପଶୁଟିଏ ସଂଗ୍ରହ କରି ରଖିଥିଲେ । ଦୁର୍ଭାଗ୍ୟକୁ ସେ ପଳାୟିତ ।

ରେରେକାର ଗର୍ଜନ କରି ରାଜ ଅନୁଚରମାନେ ଚାରିଆଡ଼େ ଖେଦିଗଲେ । ମାତ୍ର ସବୁ ପ୍ରଚେଷ୍ଟା ସେମାନଙ୍କର ବ୍ୟର୍ଥ ହେଲା । ନିରାଶ ମନରେ ଫେରି ଆସୁଥିଲା ବେଳେ କୃଷିରକ୍ଷଣ ତତ୍ପର ଭରତ ସେମାନଙ୍କର ଦୃଷ୍ଟିରେ ପଡ଼ିଲେ ।

ସର୍ବସୁଲକ୍ଷଣଯୁକ୍ତ ନିଖୁଣ ପୁରୁଷ । ବ୍ରହ୍ମ ତେଜରେ ପ୍ରଚଣ୍ଡ ମାର୍ତ୍ତଣ୍ଡ ତୁଲ୍ୟ ପ୍ରଜ୍ଜ୍ୱଳିତ । କାନ୍ତିମାନ୍ ମୁଖମଣ୍ଡଳରୁ ସତେ ଯେପରି ଜ୍ୟୋତି ବିଚ୍ଛୁରିତ ହେଉଛି । ଏଇତ ସେଇ ପରମ ଆକାଂକ୍ଷିତ ପୁରୁଷ । ଏହାକୁ ଗ୍ରହଣକରି ଚଣ୍ଡିକା ପରମ ସନ୍ତୋଷ ଲାଭ କରିବେ । ସନ୍ତୋଷରେ ଅପୁତ୍ରିକ ରାଜାଙ୍କୁ ବର ଯାଚି ଦେବେ । ଅନୁଚରମାନେ କାଳ ବିଳମ୍ବ କଲେ ନାହିଁ । ଦୃଢ଼ ରଜ୍ଜୁରେ ନିର୍ବାକ ଭରତଙ୍କୁ ବନ୍ଧନ କରି ରାଜ ସମୀପରେ ଉପସ୍ଥାପନ କଲେ ।

ବଳିର ନିରୀହ ନିର୍ବିକାର ମୁଖମଣ୍ଡଳକୁ ଥରେ ଚାହିଁଦେଇ ବୃଷଳୀପତି ହତବାକ୍ ହୋଇ ପଡ଼ିଲେ । ଏଇଆକୁ ସେ ବଳି ଦେବେ ? ତା' ପୁଣି ପୁତ୍ର କାମନାରେ ? ତାଙ୍କ ମନ ମମତାରେ ବିଗଳିତ ହୋଇ ଗଲା । ପ୍ରୀତି ଢଳ ଢଳ ନେତ୍ରରେ ସେ ବଳି ଆଡ଼େ ଅନାଇ ପୁଚ୍ଛା କଲେ ପୁତ୍ର, ତୁମର ନାମ ?

ଭରତ ନୀରବ ରହିଲେ । ସେ ଜାଣନ୍ତି, ତାଙ୍କର ପରିଚୟ ପାଇଲେ, ରାଜା ନିଶ୍ଚୟ ତାଙ୍କୁ ମୁକ୍ତି ଦେବେ । ଏଣେ କିନ୍ତୁ ତାଙ୍କର ସମସ୍ତ ଆୟୋଜନ ବ୍ୟର୍ଥ ହୋଇଯିବ । ନିଜର ଏଇ ବିନାଶଶୀଳ ଶରୀର ବଦଳରେ ସେ ଯଦି କାହାର ଉପକାର କରିପାରିଲେ, ତେବେ କ'ଣ ମିଳିବ, ତାଙ୍କୁ ଦୀର୍ଘ ଜୀବନରୁ -?

ସ୍ୱାର୍ଥ ହିଁ ଶେଷ ରେ ଜିଣିଲା । ବୃଷଳୀପତି ନିଜର ଆୟୋଜନକୁ ପଣ୍ଡ ହେବାକୁ ଦେଲେ ନାହିଁ । ବିଶେଷ କରି ଅପୁତ୍ରିକ ବ୍ୟକ୍ତିର ଭୟାବହ ପରିଣତି ସମ୍ପର୍କରେ ତାଙ୍କ ନିକଟରେ ଏଭଳି ଚିତ୍ର ରଖାଗଲା ଯେ, ଭୟରେ ତାଙ୍କର ଛାତି ଥରି ଉଠିଲା । ତା' ଅପେକ୍ଷା ବରଂ ଏଇ ନିରୀହ କୁମାରକୁ ଯୂପକାଷ୍ଠରେ ଉତ୍ସର୍ଗ କରିଦେବା ଭଲ । ରାଜା ଆଦେଶ ଦେଇଦେଲେ ।

ଶେଷରେ ଆସିଲା ସେଇ ପରମ ଆକାଙ୍କ୍ଷିତ ଲଗ୍ନ । ଭରତଙ୍କୁ ସୁଗନ୍ଧଶୀତଳ ଜଳରେ ସ୍ନାନ କରାଇ ଦେଇ ଶୁଭ୍ର ନିର୍ମଳ ବସ୍ତ୍ରରେ ମଣ୍ଡଣି କରି ଦିଆଗଲା । ଷୋଡ଼ଶୋପଚାରରେ ଭୋଜନ କରାଇବା ପରେ ଗଳାରେ ରକ୍ତମନ୍ଦାରର ଦିବ୍ୟମାଳା ଲମ୍ବାଇ ଦିଆଗଲା । ଶରୀରକୁ ଚର୍ଚ୍ଚିତ କରାଗଲା ରକ୍ତ ଚନ୍ଦନରେ ।

ପଟହ-ଦାମାମା ଶଙ୍ଖ ଘଣ୍ଟ ଘଣ୍ଟା ଧ୍ୱନିରେ ମନ୍ଦିର ନିନାଦିତ ହୋଇ ଉଠିଲା । ପୁରୋହିତ ଗୁରୁଗମ୍ଭୀର କଣ୍ଠରେ ମନ୍ତ୍ରପାଠ କରିବାକୁ ଲାଗିଲେ । ପୂଜାର ସମସ୍ତ ଉପକରଣ ଦେବୀଙ୍କ ସମ୍ମୁଖରେ ସ୍ଥାପିତ ହେଲା ।

ସ୍ୱୟଂ ବୃଷଳୀପତି ସ୍ୱହସ୍ତରେ ବଳିଦାନ କ୍ରିୟାଟି ସମ୍ପନ୍ନ କରିବେ । ତାହାହିଁ ପୁରୋହିତଙ୍କର ନିର୍ଦ୍ଦେଶ । ନଚେତ୍ ଅଭୀଷ୍ଟ ଫଳ ମିଳିବ ନାହିଁ । ରାଜା ବଳିଦାନ ପାଇଁ ପ୍ରସ୍ତୁତ ହେଉଥିଲେ । ଭରତ ସବୁ ଦେଖୁଛନ୍ତି, ସବୁ ଜାଣୁଛନ୍ତି । ମାତ୍ର ମୁହଁରେ ପ୍ରତିବାଦର ଶବ୍ଦଟିଏ ମଧ୍ୟ ନାହିଁ । ନିଜର ସାମାନ୍ୟ ଜୀବନଟିଏ ପାଇଁ ସେ ଏତେ ବଡ଼ ଆୟୋଜନକୁ ପଣ୍ଡ ହେବାକୁ ଦେବେ ନାହିଁ । ତାଙ୍କ ପାଇଁ ଜନ୍ମ ମରଣ ସବୁ ସମାନ । ସେ ନୀରବରେ କେବଳ ବିଷ୍ଣୁ ମନ୍ତ୍ର ଜପ କରୁଥାଆନ୍ତି । ଭବବନ୍ଧନରୁ ମୁକ୍ତି ଦେବା ନିମନ୍ତେ ପ୍ରାର୍ଥନା କରୁଥାଆନ୍ତି ।

ବିଶାଳକାୟ ଖଡ୍‌ଗକୁ ରାଜା ବହୁ ଆୟାସରେ ଉର୍ଦ୍ଧ୍ୱକୁ ଉତ୍ତୋଳନ କଲେ । ଯୂପକାଷ୍ଠର ଅର୍ଗଳିରେ ଭରତ ବନ୍ଦୀ, ତାଙ୍କ ଦୁଇ ହସ୍ତକୁ ଦୃଢ଼ ଭାବରେ ବାନ୍ଧି ଦିଆଯାଇଛି । ଦୀପଶିଖାର ଉଜ୍ଜ୍ୱଳ ଆଲୋକରେ ଖଡ୍‌ଗର ଧାର ଚକ୍ ଚକ୍ ହୋଇ ଉଠିଲା । ଭରତ ନୀରବରେ ଚକ୍ଷୁ ମୁଦ୍ରିତ କଲେ ।

ଖଡ୍‌ଗ ବିଦ୍ୟୁତ୍ ଗତିରେ ତଳକୁ ନଇଁ ଆସିଲା । ଆଉ ନିମିଷେ ମାତ୍ର । ହଠାତ୍ ସେଇ ଅଲୌକିକ ଘଟଣାଟି ଘଟିଗଲା । ପ୍ରସ୍ତର ପ୍ରତିମାରେ ପ୍ରାଣ ସଞ୍ଚାର ହୋଇଛି । ନିରୀହ ବିଷ୍ଣୁ ଭକ୍ତଙ୍କର ଏ କଦର୍ଥନ ଦେବୀଙ୍କର ଆସନକୁ ଦୋହଲାଇ ଦେଇଛି । ସିଂହ ଗର୍ଜ୍ଜନରେ ହୁଙ୍କାର ଛାଡ଼ି ଦେବୀ ଭଦ୍ରକାଳୀ ନିଜ ଆସନରୁ ଡେଇଁ ପଡ଼ିଲେ । ଭ୍ରୂକୁଟୀ କୁଟିଳ ନେତ୍ରରେ କରାଳବଦନୀ ଦେବୀ ଟହ ଟହ ହାସରେ ମେଦିନୀ କମ୍ପାଇ ବାଜପକ୍ଷୀ ଅସହାୟ ପକ୍ଷୀ ଶାବକ ଉପରେ ଝାମ୍ପି ପଡ଼ିଲା ପରି ସମବେତ ଦର୍ଶକମଣ୍ଡଳୀ ଉପରେ ଝାମ୍ପି ପଡ଼ିଲେ । ପ୍ରଥମେ ରାଜାଙ୍କର ଉଦ୍ୟତ ଖଡ୍‌ଗକୁ ଛଡ଼ାଇ ନେଇ ଗୋଟିଏ ଆଘାତରେ ରାଜଶିରକୁ ଭୂଲୁଣ୍ଠିତ କଲେ । କିଳିକିଳା ରଡ଼ି ଛାଡ଼ି ନବକୋଟି କାତ୍ୟାନୀ ଚଉଷଠୀ ଯୋଗିନୀ, ଅନେଶୋତ ଡାକିନୀଆଦି ଦେବୀଗଣ କାହୁଁ ମାଡ଼ି ଆସିଲେ । ତ୍ରସ୍ତ ଚକିତ ଜନତାର ମୁଣ୍ଡ ମୋଡ଼ି ପ୍ରାଣର ଉଲ୍ଲାସରେ ସେମାନଙ୍କର ରକ୍ତପାନ କଲେ । ଦେବୀ ରାଜା ବୃଷଳୀପତିଙ୍କର ରକ୍ତପାନ କରି ପ୍ରଳୟ୍ ତାଣ୍ଡବରେ ନୃତ୍ୟରତା ।

ମୁହୂର୍ତ୍ତକ ମଧ୍ୟରେ ପୂଜା ମଣ୍ଡପର ଛିନ୍ନଛତ୍ର ଅବସ୍ଥା । ଦେବୀଗଣ ହିଂସ୍ର ଉଲ୍ଲାସରେ ନରମୁଣ୍ଡରେ ଘଣ୍ଟାବାଦ୍ୟ ସୃଷ୍ଟି କରି ଦେବୀଙ୍କ ସହିତ ଉଦ୍ଦଣ୍ଡ ନୃତ୍ୟରେ ନିମଗ୍ନ । ଟହ ଟହ ହାସ, ସାଙ୍ଗକୁ କିଳିକିଳା ରଡ଼ିରେ ମେଦିନୀ କମ୍ପୁଛି । ଥରଥର ଗାତ୍ରରେ ଭରତ ଦେବୀଙ୍କୁ ସ୍ତୁତି କରୁଛନ୍ତି । କ୍ରୋଧ ଶାନ୍ତ କରିବା ନିମନ୍ତେ କରୁଣ ସ୍ୱରରେ ନିବେଦନ ଜଣାଉଛନ୍ତି ।

ହଠାତ୍ ଦେବୀଙ୍କର ବଦନମଣ୍ଡଳରେ କରୁଣାର ସ୍ମିତଆଭା ବିକଶିତ ହୋଇ ଉଠିଲା । ଜନନୀ ପ୍ରାଣର ବ୍ୟାକୁଳ ବାତ୍ସଲ୍ୟମମତା ପଦ୍ମପଳାଶ ନେତ୍ର ଦ୍ୱୟର ପ୍ରାନ୍ତରେ ଉକୁଟାଇ ଦେବୀ ଧୀର ପଦକ୍ଷେପରେ ଭରତଙ୍କ ନିକଟକୁ ଆସିଲେ । ସ୍ନେହ କୋମଳ ହସ୍ତରେ ତାଙ୍କର ବନ୍ଧନ ଉନ୍ମୋଚନ କଲେ । ଭରତଙ୍କ ବଦନରେ ଶତକଦମ୍ବର ରୋମାଞ୍ଚ । ତାଙ୍କ ଦୁଇ ନୟନରୁ ଦରଦର ଅଶ୍ରୁ ବହି ଯାଉଥାଏ ।

ନିଜର ଉଦାର ହସ୍ତରେ ଭରତଙ୍କୁ ସ୍ପର୍ଶ କରି ଦେବୀ କହିଲେ, ପୁତ୍ର, ଅକ୍ଷୋଭର ଶତ ସମ୍ବତ୍ସର ପରମାୟୁ ଗ୍ରହଣ କରି ସଂସାରର ଉନ୍ନତି କର । ସୁଖଦୁଃଖକୁ ସମ କରି ପିତୃକୁଳର ମୁଖ ଉଜ୍ଜ୍ୱଳ କର ।

ଚକ୍ଷୁର ପଲକରେ ଦେବୀ ନିଜର ଗଣ ସହିତ ଅନ୍ତର୍ହିତା ହୋଇ ଯାଇଥିଲେ । ଶାନ୍ତିରେ ଭରତଙ୍କର ଚକ୍ଷୁରେ ସେଇ ମୁହୂର୍ତ୍ତରେ ଅୟୁତ ରାତ୍ରିର ନିଦ୍ରା ଓହ୍ଲାଇ ଆସିଥିଲା ।

-୨-

ଏବେ ଭରତ ସେଇ ଅଭାବିତ ଘଟଣା ସମ୍ପର୍କରେ ଭାବୁଛନ୍ତି । ସ୍ମୃତି ପଟଳରେ ବିଦ୍ୟୁତ୍ ଚମକରେ ଭାସିଯାଉଛି ସେଦିନର ସେଇ ଘଟଣାର ଛବି । କ'ଣ କ୍ଷତି ହୋଇଯାଇଥାନ୍ତା ଯଦି ସେଦିନ ରାଜା ବୃଷଳୀପତିଙ୍କ ଉଦ୍ୟତ ଖଡ୍ଗରେ ତାଙ୍କର ପ୍ରାଣାବସାନ ଘଟିଥା'ନ୍ତା । ବିଚରା ରାଜାଙ୍କର ମନୋବାଞ୍ଛା ଅନ୍ତତଃ ପୂର୍ଣ୍ଣ ହୋଇ ପାରିଥାଆନ୍ତା । ଦେବୀ କ୍ରୋଧର ଶିକାର ହୋଇ ଅମୋକ୍ଷ ଅତୃପ୍ତ ଆତ୍ମା ତାଙ୍କର ଭବ-ଯବନିକା ଆରପଟେ ଏବେ କେଉଁଠି କି ଅବସ୍ଥାରେ ବୁଲୁଥିବ କିଏ ଜାଣେ ?

ଦେବଗୁରୁ ପ୍ରସାଦରୁ ଭରତ ପୁଣି ଜାତିସ୍ମର । ଜନ୍ମ ଜନ୍ମାନ୍ତର ସ୍ମୃତି ଏବେ ମଧ୍ୟ ତାଙ୍କ ମନରେ ପ୍ରୋଜ୍ଜ୍ୱଳ ହୋଇ ରହିଛି । ବେଳେ ବେଳେ ଅତୀତର ଘଟଣା ତାଙ୍କ ଉପରେ ଗୁରୁଭାର ଭଳି ମାଡ଼ିପଡ଼େ । ସେତେବେଳେ ଜାତିସ୍ମରତ୍ୱ ତାଙ୍କୁ ମନେହୁଏ ଏକ ଅଭିଶାପ ଭଳି । ସ୍ମୃତିକୁ ଯଦି ସେଫିଙ୍ଗି ଦେଇ ପାରୁଥାଆନ୍ତେ, ତେବେ ତାଙ୍କୁ ଯେ କେତେ ଉଶ୍ୱାସ ଲାଗୁଥାଆନ୍ତା, କିଏ କହିବ ? କେଉଁ ପାପରୁ ତାଙ୍କର ଭାଗ୍ୟ ବିଧାତା ତାଙ୍କ ମୁଣ୍ଡ ଉପରେ ଏଭଳି ଏକ ଗୁରୁଭାର ଲଦିଦେଲେ ?

ପୂର୍ବଜନ୍ମରେ ସେ ଜନ୍ମିଥିଲେ- ପ୍ରିୟବ୍ରତ ରାଜାଙ୍କର ବଂଶରେ । ଜମ୍ବୁ, ଦ୍ୱୀପର ବହୁ ବିସ୍ତୃତ ରାଜବଂଶ । ପିତା ଋଷଭ ରାଜା ହୋଇ ମଧ୍ୟ ଆଚରଣରେ ଋଷି । ଭରତ ହେଉଛନ୍ତି ତାଙ୍କରି ଶତେକ ପୁତ୍ରଙ୍କ ମଧ୍ୟରୁ ଏକତମ ।

ପ୍ରଜାବତ୍ସଳ ଋଷଭଙ୍କ ଶାସନରେ ପ୍ରଜାଏ ପୁଣି ଭକ୍ତି ବ୍ୟତୀତ ଅନ୍ୟ କିଛି ବାଞ୍ଛା କରୁନଥିଲେ । ସୁଜଳା ସୁଫଳା ଧରିତ୍ରୀ ରାଜାଙ୍କର ମନଜାଣି ପ୍ରଜାମାନଙ୍କର ହିତାର୍ଥେ ଶସ୍ୟସମ୍ଭାରରେ ମଣ୍ଡିଣି ହେଉଥିଲେ । ପିତାଙ୍କର ପଦତଳେ ଭରତଙ୍କର ଅକ୍ରୋଧ, ତିତିକ୍ଷା, ଶମଯମ ଦାନ ପ୍ରଭୃତିର ଦୀକ୍ଷା । ପୁତ୍ରମାନଙ୍କୁ ପରମାର୍ଥ ଲାଭର ମାର୍ଗ ଦର୍ଶାଇ ସାରିବା ପରେ ତାଙ୍କର ସାଂସାରିକ ଦାୟିତ୍ୱ ଶେଷ ହୋଇଯାଇଥିଲା । ତେଣୁ ସେ ଅବଧୂତର ଭେକ ଗ୍ରହଣ କରି ପ୍ରଥମେ ମୌନବ୍ରତ ଧାରଣ କଲେ । ତା'ପରେ ପରମାନନ୍ଦରେ ସମଗ୍ର ପୃଥିବୀ ପର୍ଯ୍ୟଟନ କଲେ । ଶେଷରେ ଦିନେ ଦକ୍ଷିଣ କର୍ଣ୍ଣାଟ ଦେଶର କୁଟକ ନଗରୀର ଉପବନରେ ପ୍ରଜ୍ୱଳିତ ବନାଗ୍ନିରେ ଝାସଦେଇ ମାନବଲୀଳା ସମ୍ବରଣ କଲେ ।

ସଂସାରରେ ଥାଇ ସୁଦ୍ଧା ସଦା ଉଦାସୀନ ଋଷଭ ପଦ୍ମପତ୍ରରେ ବିନ୍ଦୁ ଏ ଜଳକଣା ଭଳି ବିଚରଣ କରୁଥିଲେ । ପୁତ୍ର ପତ୍ନୀ ଆତ୍ମୀୟସୋଦର... କାହାରି ଆକର୍ଷଣ ତାଙ୍କୁ ବିଚଳିତ କରିନଥିଲା । ମୋହମାୟାମୁକ୍ତ ରାଜର୍ଷି ନିର୍ବିକାର ଭାବରେ ସାଧନୋଚିତ ଧାମକୁ ମହାପ୍ରୟାଣ କଲେ ।

ସେଇ ପିତାଙ୍କର ପୁତ୍ର ହୋଇ ଭରତ ସେମିତି ନିର୍ବିକାର ହୋଇ ପାରୁଛନ୍ତି କେଉଁଠି ? କ୍ଷୁଧା ତୃଷା ଶରୀରପୀଡ଼ାଜନିତ ଆଧିବ୍ୟାଧି ସମ୍ପର୍କରେ ନିସ୍ପୃହତା ଅବଲମ୍ବନ କରିବା କ'ଣ ସହଜ ବ୍ୟାପାର ହୋଇଛି ? ନଚେତ୍ ଯେଉଁ ବନ୍ଧନକୁ ଅନାୟାସରେ ଛିଡ଼ାଇ ଦେଇ ଋଷଭ ଆନନ୍ଦରେ ସ୍ୱର୍ଗକୁ ଚାଲିଗଲେ ଭରତ ପୁନର୍ବାର ତାହାରି ମଧ୍ୟରେ ମୁକ୍ତି ଲୋଡ଼ିଥାଆନ୍ତେ କାହିଁକି ?

ବୈରାଗ୍ୟ ସାଧନରେ ଯେଉଁ ମୁକ୍ତି ତାହା ଯେ କିଭଳି ଚିରନ୍ତନ ଏକଥା ଭରତ ତ ଶିଖିପାରି ନାହାନ୍ତି । ତେଣୁ ଋଷଭଙ୍କ ପରେ ତାଙ୍କୁ ହିଁ ରାଜ୍ୟଶାସନର ଭାର ଗ୍ରହଣ କରିବାକୁ ପଡ଼ିଛି । ବିବାହ କରିବାକୁ ପଡ଼ିଛି । କ୍ରମେ ପଞ୍ଚପୁତ୍ରର ଜନକ ମଧ୍ୟ ହୋଇଛନ୍ତି ।

ଅବଶ୍ୟ ପିତା ଶାସନର ଯେଉଁ ଧାରା ପ୍ରବର୍ତ୍ତିତ କରିଥିଲେ, ଭରତ ମୁଖ୍ୟତଃ ତାକୁହିଁ ଅନୁସରଣ କରି ଚାଲିଛନ୍ତି । ଧୀରେ ଧୀରେ ସଂସାର ଧର୍ମରୁ ତାଙ୍କ ମନକୁ ଛଡ଼ାଇ ଆଣିଛନ୍ତି । ପୁତ୍ରମାନଙ୍କ ମଧ୍ୟରେକର୍ମ ବିଭାଗ କରିଦେଇ ଶେଷରେ ଦିନେ ସଂସାରର ବଜ୍ରବନ୍ଧନ ମଧ୍ୟରୁ ଆପଣାକୁ ମୁକ୍ତ ମଧ୍ୟ'କରି ଆଣିଛନ୍ତି ।

ସନ୍ୟାସ ଗ୍ରହଣ କରି ପ୍ରଥମେ ସେ ଉପସ୍ଥିତ ହୋଇଛନ୍ତି ଗଣ୍ଡକୀ ନଦୀ ତୀରସ୍ଥ ପୁଲକ ମୁନିଙ୍କର ଆଶ୍ରମରେ । ସେଇ ପୂତପବିତ୍ର ଶାନ୍ତ ପରିବେଶରେ ବାନପ୍ରସ୍ଥର ବାକି ଦିନଗୁଡ଼ିକ ନିରୁପଦ୍ରବରେ କଟିଯିବ ବୋଲି ବିଶ୍ୱାସ କରି ସେ ସେଇଠି ତପସ୍ୟା ଆରମ୍ଭ କରିଛନ୍ତି ।

ପୁଲକ ଋଷିଙ୍କର ସେଇ ପରମପାବନ ତପୋବନ । ସେଠି ପକ୍ଷୀ ଗାଏ, ଟିଟ୍ଟିଭର କୂଜନରେ ତପୋବନର ମହାପ୍ରଶାନ୍ତି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯାଇ ପୁଣି ସ୍ଥିର ହୋଇଯାଏ । ମୟୂରର ପ୍ରସାରିତ ପୁଚ୍ଛ ତଳେ ବିଷଧର ଫଣୀ ନିଶ୍ଚିନ୍ତରେ ନିଦ୍ରାଯାଏ । ସିଂହୀର ସ୍ତନରୁ ମୃଗ ଶିଶୁ ସ୍ତନ୍ୟ ପାନ କରି ବିହ୍ୱଳ ହୋଇ ନୃତ୍ୟ କରେ ।

ସେଇଠି ବିଷୟବାସନା ବିରହିତ ଭରତ ଇନ୍ଦ୍ରିୟମାନଙ୍କୁ ନିବାରଣ କରି ନିତ୍ୟ ଗୋବିନ୍ଦ ଆରାଧନାରେ ସମୟ କଟାଇ ଦେଉଥିଲେ । ମହାପ୍ରଭୁଙ୍କର ସେବା ବ୍ୟତୀତ ଅନ୍ୟ ଚିନ୍ତା ସେତେବେଳେ ତାଙ୍କର ମନକୁ ଆସୁ ନ ଥିଲା । ସୂର୍ଯ୍ୟମଣ୍ଡଳରୁ ବିକଶିତ ବିଭା ମଧ୍ୟରେ ବ୍ରହ୍ମରୂପକୁ ଧ୍ୟାନ କରୁ କରୁ କେତେଥର ଯେ ତାଙ୍କର ଅଶ୍ରୁରୋମାଞ୍ଚ ଜାତ ହୋଇ ତୁରୀୟାବସ୍ଥା ପ୍ରାପ୍ତି ହୋଇଛି, ତାହା କହିହେବ ନାହିଁ ।

ରାଜା ଭରତ ଭାବିଥିଲେ, ଅବଶିଷ୍ଟ ସମୟତକ ସେ ଏଇଭଳି କଟାଇ ପିତାଙ୍କ ଭଳି ଦିନେ ସାଧନୋଚିତ ଧାମକୁ ଚାଲିଯିବେ । ମାତ୍ର ତାହା ହୋଇ ପାରିଥିଲେ, ଆଜି ସେ ଏ ଦଶା ଭୋଗ କରୁଥାଆନ୍ତେ କାହିଁକି ?

ସଂସାରକୁ ସେ ଛାଡ଼ି ଆସିଥିଲେ ସିନା । ମାତ୍ର ସଂସାର ତାଙ୍କୁ ଛାଡ଼ି ନଥିଲା । ସଂସାରୀ ଜୀବନର ଯେତକ ଅଘଟଣ ଗୋଟିକ ପରେ ଗୋଟିଏ ତାଙ୍କରି ଜୀବନରେ ଘଟି ଚାଲିଥିଲା । ଏହାହିଁ ଯେ ସଂସାରୀର ଭବିତବ୍ୟ ଏକଥା ଭରତ ସେତେବେଳେ ମାନୁ ନଥିଲେ ।

ଦିନେ ଦିନେ ଭରତ ନିଜର ବିଚିତ୍ର ଜୀବନ କାହାଣୀ ସମ୍ପର୍କରେ ଚିନ୍ତାକରୁ କରୁ ବିସ୍ମିତ ହୋଇ ଯାଆନ୍ତି । ପିତା ତ ଆଦର୍ଶ ଜୀବନର ଦୀକ୍ଷା ନେଇ ବିଦାୟ ନେଲେ । ଜଣେ ଆଜ୍ଞାବହ ପୁତ୍ର ରୂପରେ ସେ ମଧ୍ୟ ତାଙ୍କରି ପ୍ରଦର୍ଶିତ ପଥରେ ଆଗେଇ ଚାଲିଲେ । ମାତ୍ର ଏହା ଦ୍ୱାରା ସେ ପ୍ରକାରାନ୍ତରେ ନିଜର ପରିବାର ପ୍ରତି ଅନ୍ୟାୟ କରିନାହାନ୍ତି କି ?

ସଂସାରୀ ମଣିଷ ହିସାବରେ ତାଙ୍କର ଏକ ପରିବାର ଥିଲା । ସ୍ନେହଶୀଳା ପତ୍ନୀ, ଆଜ୍ଞାବହ ସନ୍ତାନ ତ ସେ ପାଇଥିଲେ । ସେମାନଙ୍କୁ ତାଙ୍କ ବାଟରେ ଛାଡ଼ିଦେଇ ସ୍ୱାର୍ଥପର ଭାବରେ ନିଜର ପଥ ବାଛିନେବାରେ ଅବା କେଉଁ ମାନବିକତା ରହିଛି ?

ବେଳେବେଳେ ତାଙ୍କର ମନ ବିଚଳିତ ହୋଇଯାଏ । ଖାଲି ଆଖିରେ ମହାଶୂନ୍ୟକୁ ଅନାଇ ସେ ଫିଙ୍ଗିଦେଇ ଆସିଥିବା ଅନ୍ୟ ଏକ ଜୀବନର ସ୍ମୃତିରେ ବିଭୋର ହୋଇ ଯାଆନ୍ତି । ପତ୍ନୀଙ୍କର ପଦେ ମିଠାଳିଆ କଥା କିମ୍ବା ସନ୍ତାନମାନଙ୍କର ପଦେ ଗେହ୍ଲାଳିଆ ତାଙ୍କର ତୀବ୍ର ମାଦକତା ତାଙ୍କର ନିଥର ମନକୁ ବାରମ୍ବାର କ୍ଷତବିକ୍ଷତ କରେ ।

ସେ ଆନମନା ହୋଇ ଯାଆନ୍ତି । ଭରତ ଜାଣନ୍ତି, ଦୁଃଖ ଭୋଗ ହିଁ ମାନବ ଜନ୍ମର ନିୟତି । ସୁଖ ହୁଏତ ଶରୀରକୁ ସୁଲଳିତ କରେ । ମାତ୍ର ଦୁଃଖ ଆଣିଦିଏ ମାନସିକ ଦୃଢ଼ତା । ସଂସାର ସାଗର ତରିବା ପାଇଁ ସେଇ ତ ହେଉଛି ଅମୃତ ମହୌଷଧି । ଦାରା ପୁତ୍ର ପରିବାରକୁ ନେଇ ଯେଉଁ ଜୀବନ ସେଥିରେ କେବଳ ଦୁଃଖ ହିଁ ଦୁଃଖ । ତଥାପି ଏଇ ମଣିଷ କାଳକାଳରୁ ସେଇ ଦୁଃଖକୁ ସ୍ୱେଚ୍ଛାରେ ବରଣ କରି ନେଇଛି; ଯନ୍ତ୍ରଣାର ଫାଶକୁ ଆପେ ଆପେ ନିଜ ଗଳାରେ ପିନ୍ଧିଛି ।

ନିଜ ଅନୁଭୂତିରୁ ଭରତ ବୁଝିଛନ୍ତି, ସଂସାରଟା ହେଉଛି, ଏକ ବିଚିତ୍ର ଫାନ୍ଦ । ଏହାର ଆପାତରମ୍ୟ ଆକର୍ଷଣକୁ ଏଡ଼ାଇ ଦେବା ସାଧାରଣ ସଂସାରୀ ପକ୍ଷରେ ଆଦୌ ସମ୍ଭବ ନୁହେଁ । ସେ ଏବେ କୋଉ ପାରିଛନ୍ତି ?

ଜପତପ ଧ୍ୟାନ ଧାରଣା ତ ଅନେକ ହେଲା । ମୋହର ପାଶରୁ ସେ ନିଜେ ଏବେ କୋଉ ଆତ୍ମରକ୍ଷା କରିପାରିଲେ ?

ସେଦିନର ଘଟଣାଟି ଭରତଙ୍କର ସ୍ମୃତିକୁ ଆସିଲା । ମାହେନ୍ଦ୍ର ମୁହୂର୍ତ୍ତରେ ରାଜର୍ଷି ଭରତ ସ୍ନାନ ତର୍ପଣାଦି ବଢ଼ାଇବା ପାଇଁ ମହାନଦୀର ଜଳରେ ପ୍ରବେଶ କରିଛନ୍ତି । ପୂର୍ବାଶାର ତୋରଣ ଦ୍ୱାରରେ ଉଷାସୁନ୍ଦରୀ ଅପୂର୍ବ ବର୍ଣ୍ଣବିଭାର ବିପଣୀ-ସେଇ ଖୋଲିବାକୁ ଆରମ୍ଭ କରିଛନ୍ତି । ନାନା ଜାତିର ବିହଗ କାକଳିରେ ବନଭୂମି ମୁଖରିତ ହୋଇ ଉଠୁଛି । ଭୂମି ଶଯ୍ୟା ତ୍ୟାଗକରି ମୃଗ ପରିବାର ସେଇ ମାତ୍ର ଦିନଚର୍ଯ୍ୟା ଆରମ୍ଭ କରିବାକୁ ପ୍ରସ୍ତୁତ ହେଉଛନ୍ତି । ସ୍ନେହ ଭୋଳରେ କୃଷ୍ଣସାରଟିଏ ନିଜର ପ୍ରେମିକାର ଅଙ୍ଗକୁ ଶୃଙ୍ଗ ଦ୍ୱାରା ମନ୍ଦମନ୍ଦ ଭାବରେ ସମ୍ବାହନ କରୁଛି । ସୁଶୀତଳ ପବନରେ ବନ କୁସୁମର ସୁରଭି ଭାସି ବୁଲୁଛି ।

ସେଇ ଆଡ଼କୁ ଅନାଇ ରାଜାଙ୍କର ମନ ଏକ ଅନିର୍ବଚନୀୟ ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା । ମନ ତାଙ୍କର ଭରିଗଲା ଏକ ଅପୂର୍ବ ପ୍ରଶାନ୍ତିରେ । ହଠାତ୍ ଏକ ବିକଟ ଗର୍ଜନରେ ପ୍ରଭାତର ସେଇ ଶାନ୍ତି ଖଣ୍ଡ ଖଣ୍ଡ ହୋଇ ଚୂର୍ଣ୍ଣ ହୋଇଗଲା ।

ରାଜା ଚକିତରେ ସେଇ ଆଡ଼କୁ ଅନାଇ ଯାହା ଦେଖିଲେ, ସେଥିରେ ତାଙ୍କର ପ୍ରାଣ ହିମଶୀତଳ ହୋଇଗଲା । ଏତେ ପ୍ରତ୍ୟୁଷରୁ ଗର୍ଭବତୀ ମୃଗୁଣୀଟିଏ ଜଳପାନ

ନିମନ୍ତେ ନଦୀଧାରକୁ ଆସିଥିଲା । ତାକୁହିଁ ଲକ୍ଷ୍ୟ କରି ପଶୁରାଜ ସିଂହର ଏ ରଣହୁଙ୍କାର ! ରାଜା ସେଇ ମୁହୂର୍ତ୍ତରେ ନିଜକୁ ବଡ଼ ଅସହାୟ ମନେକଲେ । ସେ ତ ଆଉ କ୍ଷତ୍ରିୟ ନୁହନ୍ତି, ଜଣେ ସନ୍ନ୍ୟାସୀ ମାତ୍ର । କିଭଳି ଦୂର କରିପାରିବେ ବିପନ୍ନର ଦୁଃଖକୁ ।

ଭୟଭୀତା ମୃଗୁଣୀ ଆତ୍ମରକ୍ଷା ନିମନ୍ତେ ଜଳଧାର ଉଲ୍ଲଙ୍ଘନ କରିବା ପାଇଁ ଲମ୍ଫ ଦେଲା । ମାତ୍ର ପୂର୍ଣ୍ଣ ଉଦର ନେଇ ବେଶି ବାଟ ଅତିକ୍ରମ କରିବା ତା' ପକ୍ଷରେ ସମ୍ଭବ ହେଲା ନାହିଁ । ଅତି ଅସହାୟ ଭାବରେ ଜଳଗର୍ଭକୁ ଖସିପଡ଼ିବା ଅବସ୍ଥାରେ ତା'ର ଗର୍ଭପାତ ହୋଇଗଲା ।

ପତନର ବେଗରେ ତତ୍‌କ୍ଷଣାତ୍ ତା'ର ମୃତ୍ୟୁ ହେଲା । ଗର୍ଭରୁ ଖସି ପଡ଼ିଥିବା ପୂର୍ଣ୍ଣାବୟବ ମୃଗଶିଶୁ ଜଳରେ ଭାସି ଯାଉଥାଏ । ଅସହାୟ ଭାବରେ ବଞ୍ଚିବା ନିମନ୍ତେ ଘୋଡ଼ ଛାଟି ସଂଗ୍ରାମ ଚଳାଉଥାଏ ।

ଚକ୍ଷୁର ପଲକରେ ଏ ସବୁ ଘଟଣା ଘଟିଗଲା । ନୀରବରେ ଏଇ ବିୟୋଗାନ୍ତ ନାଟକର ଶେଷ ଦୃଶ୍ୟ ଦେଖୁ ଦେଖୁ ରାଜାଙ୍କର ମନ କରୁଣାର୍ଦ୍ର ହୋଇ ଉଠିଲା । ଆହା, ବିଚରା ମୃଗଶିଶୁ ! ଏଇ ମୁହୂର୍ତ୍ତରେ ସେ କ'ଣ ହରାଇଲା ତାହା ଜାଣିବା ସୁଦ୍ଧା ତା' ପକ୍ଷରେ ସମ୍ଭବ ହେଉନାହିଁ । ମାତୃ ସ୍ନେହର ନିରାପଦ ଛାୟା ଅପସରି ଯିବା ପରେ ଏଇ ଶିଶୁ ଯେ କେତେଦିନ ବଞ୍ଚିବ, ତାହା କହିହେବ ନାହିଁ । ତଥାପି ରାଜା ତାକୁ ଅସହାୟ ଭାବରେ ମୃତ୍ୟୁବରଣ କରିବାକୁ ଦେବେ ନାହିଁ । ସେ ଅନ୍ତତଃ ଥରେ ଚେଷ୍ଟା କରି ଦେଖିବେ । ହୁଏତ ଶିଶୁଟି ବଞ୍ଚିଯାଇ ପାରେ । ଭରତ ମନ ସ୍ଥିର କରି ନେଇଥିଲେ । ଅତନ୍ଦ୍ର ପଦକ୍ଷେପରେ ଜଳ ମଧ୍ୟକୁ ପ୍ରବେଶ କରି ସ୍ନେହରେ ମୃଗ ଶିଶୁଟିକୁ ଟେକି ଧରିଲେ ।

ବନ୍ଧନର ଯେଉଁ ରଜ୍ଜୁକୁ ସେ ନିଜ ହାତରେ ଦିନେ କାଟିଦେଇ ଅରଣ୍ୟଚାରୀ ହୋଇଥିଲେ, ଆଜି ନିଜଅଜ୍ଞାତସାରରେ ସେ ପୁନର୍ବାର ସେଇ ବନ୍ଧନରେ ପଡ଼ିଗଲେ । ହୁଏତ ଏହା ହେଉଛି ତାଙ୍କର ପ୍ରାରବ୍ଧ । ସେଥିପାଇଁ ବୃଥା ଅନୁଶୋଚନା କରି ଲାଭ କ'ଣ ? ରାଜା ନିଜ ମନକୁ ବୁଝାଇ ଦେଇଥିଲେ ।

ଏହାପରେ ସଦ୍ୟ-ମାତୃହରା ସେଇ ଦୁଗ୍ଧପୋଷ୍ୟ ଶିଶୁକୁ ବଞ୍ଚାଇବା ନିମନ୍ତେ ଆରମ୍ଭ ହୋଇଥିଲା ରାଜାଙ୍କର ସଂଗ୍ରାମ । ଆଶ୍ରମରେ ଦୀପ ଜଳାଇବା ପାଇଁ ସଂରକ୍ଷିତ ଥିବା ବର୍ତ୍ତିକା ସାହାଯ୍ୟରେ ରାଜା ପ୍ରଥମେ ସେଇ ଶିଶୁକୁ ଦୁଗ୍ଧ ପାନ କରାଇଥିଲେ । ଟିକିଏ ବଡ଼ ହେବା ପରେ ନଦୀ ଧାରରୁ ତା' ପାଇଁ କୋମଳ ଦୁର୍ବାଙ୍କୁର ସଂଗ୍ରହ କରିବା, ତୃଷା ସମୟରେ ତାକୁ ନିୟମିତ ଜଳ ଯୋଗାଇଦେବା, ତାକୁ ନେଇ

ନିୟମିତ ବନ ପର୍ଯ୍ୟଟନରେ ବାହାରିବା ପ୍ରଭୃତି ଭରତଙ୍କର ନିତ୍ୟନୈମିତ୍ତିକ କର୍ମ ହୋଇ ପଡ଼ିଲା ।

ଜପ ତପ ଧ୍ୟାନ ଧାରଣା ଏସବୁ ପଛରେ ରହିଲା । ମୃଗଶିଶୁ ହିଁ ହେଲା ରାଜାଙ୍କର ସ୍ୱପ୍ନର, ଜାଗରଣର ଏକମାତ୍ର ଧ୍ୟେୟ । ଜପରେ ବସିଲେ, ରାଜାଙ୍କର ଅହରହ ମନେ ପଡ଼େ, ଅରକ୍ଷ ଶିଶୁଟିକୁ ହୁଏତ କୌଣସି ହିଂସ୍ର ଜନ୍ତୁ ଗ୍ରାସ କରିଦେଲାଣି, କିମ୍ବା ବାଳଚପଳତାବଶତଃ, ଅରଣ୍ୟକୁ ଯାଇ ସେ ପଥର ସନ୍ଧାନ କରିପାରୁ ନାହିଁ । ହୁଏତ ତୃଷାରେ ବ୍ୟାକୁଳ ହୋଇ ସେ ତା'ର ପାଳନକର୍ତ୍ତାଙ୍କୁ ଖୋଜୁଛି । ରାଜା ଆଉ ମନଃସଂଯୋଗ କରି ପାରନ୍ତି ନାହିଁ । ତତ୍‌କ୍ଷଣାତ୍ ମୃଗଶିଶୁର ସନ୍ଧାନରେ ଯାଆନ୍ତି । ତାକୁ ନିରାପଦରେ ରହିଥିବାର ଦେଖିଲେ, ରାଜାଙ୍କର ହୃଦୟ ଆନନ୍ଦରେ ପୂରି ଉଠେ । ସ୍ୱପ୍ନରେ, ଜାଗରଣରେ ମୃଗଶିଶୁର ନିତ୍ୟ ନବନବ ବାଳଲୀଳାର ସ୍ମୃତି ରାଜାଙ୍କୁ ରୋମାଞ୍ଚିତ କରୁଥାଏ । ସେ କେଉଁ ଭଳି ତା'ର ପାଳନକର୍ତ୍ତାଙ୍କ ହସ୍ତରୁ ଶ୍ୟାମଳ ଦୁର୍ବାଦଳ ଛଡ଼ାଇ ନିଏ , ପୁଷ୍ପଚୟନ କାଳରେ ସେ କିଭଳି ରାଜାଙ୍କ ଆଗେ ଆଗେ ନୃତ୍ୟରତ ଥାଏ, ତାକୁ ସଙ୍ଗରେ ନ ନେଇ ରାଜା କେଉଁଆଡ଼େ ବାହାରିଲେ, ସେ କିଭଳି ଧାଇଁ ଆସି ରାଜାଙ୍କର ଉତ୍ତରୀୟର ଅଗ୍ରଭାଗକୁ ଦନ୍ତରେ ଆକର୍ଷଣ କରି ତାକୁ ବାଧା ଦିଏ, ଏଇସବୁ ବ୍ୟାପାର ରାଜାଙ୍କର ବାରମ୍ବାର ମନେପଡ଼େ । ସେ ନିଶ୍ଚିନ୍ତରେ ଇଷ୍ଟମନ୍ତ୍ର ମଧ୍ୟ ଜପି ପାରନ୍ତି ନାହିଁ ।

ନିର୍ଜନରେ ଆତ୍ମସମୀକ୍ଷା କରୁଥିବା ବେଳେ ରାଜା ବାରମ୍ବାର ନିଜକୁ ଧିକ୍କାରନ୍ତି । ଜନ୍ମ ଜନ୍ମାନ୍ତରର ପୁଣ୍ୟଫଳ ଆଜି ସାମାନ୍ୟ ଏକ ମୃଗଶିଶୁର ମୋହରେ ବ୍ୟର୍ଥ ହେବାକୁ ଯାଉଛି । ଏଥିରୁ ମୁକ୍ତିଲାଭ କରିବାର କୌଣସି ଉପାୟ ତାଙ୍କୁ ଦେଖାଯାଏ ନାହିଁ । ସେ ପୁନର୍ବାର ସେଇ ମୃଗଶିଶୁର ଆକର୍ଷଣରେ ଉଦ୍ଭ୍ରାନ୍ତ ପ୍ରାୟ ହୋଇଯାଆନ୍ତି ।

ବେଳେବେଳେ ତାଙ୍କର ମନେପଡ଼େ ବନ୍ଧୁ ଅହିତୁଣ୍ଡିକଙ୍କର କଥା । ସେ ଦଶାର୍ଣ୍ଣ ଦେଶର ନରପତି । ସେ କହୁଥିଲେ- ବନ୍ଧୁବର, ମାନବ ଜନ୍ମ ନେଇଛ ଯେତେବେଳେ, ତା'ର ଧର୍ମ ତୁମକୁ ପାଳନ କରିବାକୁ ହିଁ ପଡ଼ିବ । ଦାରା ସୁତ ଆତ୍ମୀୟ ସୋଦର ଏମାନଙ୍କ ପ୍ରତି ସଂସାରୀର କର୍ତ୍ତବ୍ୟ ରହିଛି । ତା' ପାଳନ ନକରି ସଂସାରରୁ ଦୂରକୁ ପଳାଇବା ହେଉଛି କାପୁରୁଷତା । ମାଗଧୀର ଚଟୁଳଲାସ୍ୟ ଏବଂ କାମ୍ବୋଜର ସୁପେୟଫେନିଳ ଦ୍ରାକ୍ଷାରସର ଉପଭୋଗ ସଂସାରୀକୁ ଯେଉଁ ଦିବ୍ୟ ଆନନ୍ଦ ଦିଏ, କେଉଁ ବିଭୁ ପ୍ରେମ ତା' ଦେଇ ପାରିବ ? ସଂସାରୀ ପାଇଁ ତା'ର ସଂସାର ହିଁ ହେଉଛି, ଜପ ତପ ଧ୍ୟାନ ଧାରଣା ସବୁ । ଲକ୍ଷ ବିଭୁନାମ ଜପରେ ଯେଉଁ ରୋମାଞ୍ଚ ହେବ ନାହିଁ, ଲଜ୍ଜାବତୀ ପ୍ରେମିକାର ସାମାନ୍ୟ ଭୀରୁ ଆଶ୍ଳେଷ ତା'ର ଶତଶ୍ରୁଣ ପୁଲକ ଦେଇ

ପାରିବ । ମୋର ନୃତ୍ୟଶାଳାକୁ ଥରେ ଆସ । ଜୀବନକୁ କିଭଳି ଉପଭୋଗ କରିବାକୁ ହୁଏ, ତା' ତମେ ଜାଣିପାରିବ ।

ରାଜା ଅବଶ୍ୟ ବନ୍ଧୁଙ୍କର ଏଇ ସସ୍ନେହ ନିମନ୍ତ୍ରଣକୁ କେବେ ଗ୍ରହଣ କରିନାହାନ୍ତି । ତେବେ ତାଙ୍କର ମନେ ହେଉଛି ଅହିତୃଷ୍ଣିକ ହୁଏତ ଠିକ୍ କହୁଥିଲେ । ସଂସାରୀର କର୍ତ୍ତବ୍ୟ ପାଳନ କରିବା ହିଁ ପ୍ରତ୍ୟେକ ମାନବର ସ୍ୱଧର୍ମ । ଯେ ତା' ନକରେ ସେ ପ୍ରକୃତରେ ଭୀରୁ ।

ସବୁଜାଣି, ସବୁ ବୁଝି ସୁଦ୍ଧା ଶେଷ ପର୍ଯ୍ୟନ୍ତ ରାଜାଙ୍କର ଚୈତନ୍ୟୋଦୟ ହୋଇ ନ ଥିଲା । ମୃଗ ମୃଗ ହେଉ ହେଉ ଦିନେ ପରପାରିରୁ ତାଙ୍କର ଆହ୍ୱାନ ଆସି ଯାଇଥିଲା । ମୃଗମୟ ଅଶାନ୍ତ ଆତ୍ମା ତାଙ୍କର ମୃଗଯୋନିରେ ପ୍ରବେଶ କଲା । ରାଜା ଭରତ ଜନ୍ମ ନେଲେ ଏକ ମୃଗ ରୂପରେ । ବିଧିର ବିଡ଼ମ୍ବନା ଆଉ କାହାକୁ କହନ୍ତି ?

ଏ ଜନ୍ମଟି ରାଜାଙ୍କ ପାଇଁ ଏକ ଦୁଃସ୍ୱପ୍ନ । ଆତ୍ମାର ଏହି ଅଧଃପତନ ତାଙ୍କୁ ଏଭଳି ମୂହ୍ୟମାନ କରି ରଖିଲା ଯେ ସେ ସ୍ୱେଚ୍ଛାରେ ନିଜ ମାତାର ସ୍ନେହଚ୍ଛାୟାରୁ ଦୂରକୁ ପଳାଇଯାଇ, ମୁନିଋଷି ଅଧ୍ୟୁଷିତ ଶାଳଗ୍ରାମ ନାମକ ତୀର୍ଥ କ୍ଷେତ୍ରରେ ପ୍ରାୟୋପବେଶନରେ ତାଙ୍କର ସେଇ ମୃଗଶରୀରକୁ ତ୍ୟାଗ କରିଥିଲେ । ଅନୁତାପର ଅଶ୍ରୁଜଳରେ ତାଙ୍କର ସବୁ ପାପତାପ ଧୋଇ ହୋଇ ଯାଇଥିଲା । ହୁଏତ ଏଥିପାଇଁ ସେ ସଂସାର ଚକ୍ଷୁରେ ନିନ୍ଦନୀୟ ହେବେ । ପୁନର୍ବାର ତାଙ୍କୁ କାପୁରୁଷ ଭୀରୁ ଭାବରେ ସମସ୍ତେ ଉପହାସ କରିବେ । ସ୍ୱାର୍ଥପର ବୋଲି କହିବେ । ଯାହାହେଉ, ନିଜ ଆତ୍ମାର ଆହ୍ୱାନକୁ ବିବେକର ବାଣୀକୁ ସେ କେବେହେଲେ ଉପେକ୍ଷା କରିପାରିବେ ନାହିଁ । ପାପ କାହାକୁ କହନ୍ତି, ପୁଣ୍ୟର ସ୍ୱରୂପ କ'ଣ, ଏହା ସେ କେବେ ଜାଣିବାକୁ ଚେଷ୍ଟା କରିବେ ନାହିଁ । ସେ କେବଳ ତାହାହିଁ କରିଯିବେ, ଯେଉଁଥିପାଇଁ ନିଜ ବିବେକର ନିର୍ଦ୍ଦେଶ ତାଙ୍କୁ ମିଳିବ ।

ତୀର୍ଥ ଜଳରେ ପ୍ରାଣଦାନ କରିଥିବା ହେତୁ ଏଥର ରାଜା ଜନ୍ମ ନେଇଛନ୍ତି ଅଙ୍ଗିରାଗୋତ୍ରୀ ବ୍ରାହ୍ମଣ କୁଳରେ । ମୁମୁକ୍ଷାରେ ପ୍ରାଣ ମନ ତାଙ୍କର ସଦା ଆପ୍ଳୁତ । ଯେକୌଣସି ଉପାୟରେ ମୁକ୍ତି ତାଙ୍କୁ ଲାଭ କରିବାକୁ ହେବ- ତାହା ପୁଣି ଏହି ଜନ୍ମରେ ।

ଭରତ ବିଚାର କରି ଦେଖିଛନ୍ତି, ତାଙ୍କର ସ୍ରଷ୍ଟା ନିରବଚ୍ଛିନ୍ନ ଶାନ୍ତି ଅନ୍ତତଃ ତାଙ୍କ କପାଳରେ ଲେଖିନାହାନ୍ତି । ସଂସାରରେ ଥିଲେ ଯାହା, ଅରଣ୍ୟକୁ ପଳାଇଗଲେ ମଧ ସେଇଆ । ଜଡ଼ତାର କଠିନ ଆବରଣ ମଧ୍ୟରେ ଆତ୍ମଗୋପନ କରି କୋଉ ଏବେ

ତାଙ୍କୁ ମୁକ୍ତି ମିଳୁଛି ? ଦୁଃସ୍ୱପ୍ନର ଏକ ଭୟାବହ ଛାୟାଭଳି ପ୍ରାରବ୍ଧ ହିଁ ସତେ ଯେମିତି ତାଙ୍କ ପଛେ ପଛେ ଅନୁଧାବନ କରୁଛି ।

ଗୋଟିଏ ତୀବ୍ର ଆଘାତରେ ଭରତ ଅତୀତରୁ ବର୍ତ୍ତମାନକୁ ଫେରି ଆସିଲେ । ଶିବିକା କେତେବେଳେ ଭୂପୃଷ୍ଠରେ ସ୍ଥାପିତ ହୋଇଛି, ଏହା ଭରତଙ୍କୁ ଜଣାନାହିଁ । ପ୍ରଧାନ ଶିବିକାବାହକ ବଳପୂର୍ବକ ତାଙ୍କୁ ଆକର୍ଷଣ କରି ରାଜାଙ୍କ ସମ୍ମୁଖରେ ଭୂପାତିତ କରି ଯୋଡ଼ ହସ୍ତରେ ନିବେଦନ କଲା- ମହାରାଜ, ଏହାରି ଲାଗି ଛାମୁଙ୍କର ଶ୍ରୀଅଙ୍ଗକୁ ବାଧା ହେଉଛି । ବକ୍ରଗତିରେ ଚାଲି ଏହି ବ୍ୟକ୍ତି ଶିବିକାର ସାବଲୀଳ ଗତିରେ ବାରମ୍ବାର ବାଧା ସୃଷ୍ଟି କରିଛି । ଯେତେ ସାବଧାନ କରାଇ ଦେଲେ ମଧ ଏହାର ତିଳେମାତ୍ର ଭ୍ରୂକ୍ଷେପ ନାହିଁ । ତେଣୁ ଏହାକୁ ନେଇ ଶିବିକା ବହନ କରିବା ଆମ ପକ୍ଷରେ ସମ୍ଭବ ନୁହେଁ ।

କ୍ରୋଧରେ ରାଜା ରହୂଗଣ ଶିବିକା ତ୍ୟାଗ କରି ବାହାରକୁ ଚାଲି ଆସିଲେ । ତୀବ୍ର ନେତ୍ରରେ ଭରତଙ୍କ ଆଡ଼କୁ ଅନାଇ ମେଘମନ୍ଦ୍ର ସ୍ୱରରେ ଜିଜ୍ଞାସା କଲେ - ମୂର୍ଖ, କର୍ମରେ ଅବହେଳା କରି ତୁ ମୋତେ କେବଳ ପୀଡ଼ା ଦେଇ ନାହୁଁ । ତୋର ଏହି ସହକର୍ମୀମାନଙ୍କର ସୁଦ୍ଧା ଅସ୍ୱସ୍ତିର କାରଣ ହୋଇଛୁ । ଏଥିପାଇଁ ତୋତେ ଦଣ୍ଡ ଭୋଗିବାକୁ ପଡ଼ିବ ।

ଜଡ଼ ଭରତ ପ୍ରକୃତିସ୍ଥ ହେଲେ । ରାଜାଙ୍କ ଆଡ଼କୁ ଅନାଇ ତାଙ୍କ ମୁଖମଣ୍ଡଳରେ ସ୍ମିତହାସ୍ୟ ଉକୁଟି ଉଠିଲା । ସେ କହିବାକୁ ଆରମ୍ଭ କଲେ - ମହାରାଜ, ପ୍ରଥମେ ମୋର ତ୍ରୁଟି ନିମନ୍ତେ ମୁଁ ମାର୍ଜନା ଭିକ୍ଷା କରୁଛି । ଏମାନଙ୍କ ସହିତ ସମତାଳରେ ପାଦମିଳାଇ ଚାଲିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ । ଏ କଥା ସତ୍ୟ ଯେ, ମୋର ଶରୀରରେ କୌଣସି ପୀଡ଼ା ନାହିଁ । ତେବେ ମୁଁ ଉନ୍ମତ୍ତ ନୁହେଁ । ସ୍ୱାଭାବିକ କାରଣରୁ ସାଧାରଣ ମାନବ ଭଳି ଆଚରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଏହା ମୋର ଅନିଚ୍ଛାକୃତ ତ୍ରୁଟି । କ୍ଷମା ଚାହୁଁଛି ।

ରାଜା ଆଶ୍ଚର୍ଯ୍ୟ ହୋଇ ଏ ବିଚିତ୍ରକର୍ମୀ ଲୋକଟି ଆଡ଼େ ଅନାଇ ରହିଲେ ।

ଭରତ କହିବାକୁ ଲାଗିଲେ- କ୍ଷୁଧା, ପିପାସା, ଭୟ, ନିଦ୍ରା ବିହାର କ୍ରୋଧାଦି ସାଧାରଣ ମାନବ ସୁଲଭ ବିକାର ମୁଁ ବହୁକାଳରୁ ବିସ୍ମୃତ ହୋଇଛି । ଜୀବନ ଥାଉଁ ଥାଉଁ ମୁଁ ମୃତ । କିଏ କାହାକୁ କ'ଣ କହୁଛି, କାହିଁକି କହୁଛି, ଏ ସମ୍ପର୍କରେ ମୋର କୌଣସି ବୋଧଜ୍ଞାନ ନାହିଁ । କିଏ ପ୍ରଭୁ, କିଏ ଭୃତ୍ୟ ଏ ଧାରଣା ମଧ ମୁଁ କରିପାରେ ନାହିଁ । ଜୀବନରେ କେବେ ଶିବିକା ବହିବା କର୍ମ ମୋତେ କରିବାକୁ ପଡ଼ିନାହିଁ । ମୁଁ ଜଡ଼- ଜଡ଼ଭରତ ।

ବିଷ୍ଣୁଭକ୍ତ ରଜା ସ୍ତମ୍ଭିତ ହୋଇଗଲେ । ଏ କେଉଁ ମହାତ୍ମାଙ୍କୁ ତାଙ୍କର ମୂର୍ଖ ଅନୁଚରବୃନ୍ଦ କୁଚ୍ଛ କର୍ମରେ ନିଯୁକ୍ତ କରିଛନ୍ତି ? କୋମଳ ପଟ୍ଟସୂତ୍ରରେ ଉନ୍ମତ୍ତ କାନନଗଜକୁ ବନ୍ଧନ କରିବାର ଦୁଃସାହସିକ ପ୍ରଚେଷ୍ଟା କରିଛନ୍ତି ? ରହୂଗଣ ନିଶ୍ଚୟ ଏହାର ପ୍ରାୟଶ୍ଚିତ୍ତ କରିବେ ।

ରାଜା ଭରତଙ୍କ ପାଦଯୁଗଳ ହସ୍ତରେ ଧରି ବିନୀତ ସ୍ୱରରେ ତାଙ୍କୁ ଜିଜ୍ଞାସା କଲେ, ଅନୁଗ୍ରହ କରି ଆପଣଙ୍କର ପରିଚୟ ପ୍ରଦାନ କରନ୍ତୁ ମହାତ୍ମା । ମୋର ଏହି ମୂର୍ଖ ପରିଚାରକମାନଙ୍କ ନିମନ୍ତେ ଆପଣ ଯେଉଁ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ସେଥିପାଇଁ ରାଜା ହିସାବରେ ମୁଁ କ୍ଷମା ମାଗୁଛି । ବ୍ରାହ୍ମଣର ଅପମାନ ମୋ ପାଇଁ ଗୁରୁତର ଆଶଙ୍କାର କାରଣ ହୋଇଛି । ଇନ୍ଦ୍ରାଦି ଦେବାସୁରମାନଙ୍କର କ୍ରୋଧ ନିମନ୍ତେ ମୋର ଯେତେ ଭୟ ନାହିଁ, ଜଣେ ନିର୍ଦ୍ଦୋଷ ବ୍ରାହ୍ମଣର କ୍ରୋଧକୁ ମୋର ତଦପେକ୍ଷା ଅଧିକ ଭୟ । କ୍ରୋଧ ସମ୍ବରଣ କରନ୍ତୁ । ଏହାକୁ ବିଧାତାଙ୍କର ନିର୍ଦ୍ଦେଶ ବୋଲି ଭାବି, ସମସ୍ତ ଘଟଣାକୁ ଏକ ଦୁଃସ୍ୱପ୍ନ ରୂପେ ଭୁଲି ଯାଆନ୍ତୁ ।

ଭରତ କହିଲେ - ନିଜ କର୍ମରେ ଅବହେଳା କରି ମୁଁ ନିଜେ ତ ଗୁରୁପାପରେ ଭାଗୀ ହୋଇଛି । ଏମାନଙ୍କୁ କ୍ଷମା କରିବି କ'ଣ ? ମାନବ ଶରୀର ଧାରଣ କରି ମାୟାକୁ ଖଣ୍ଡନ କରିପାରିବା କ'ଣ ଏଡ଼େ ସହଜ ? ଷଡ଼ ଅରିଙ୍କ ମୋହରୁ ମୁକ୍ତି ଲାଭ କରିବା କ'ଣ ପାଟିର କଥା ? ଯେ ପର୍ଯ୍ୟନ୍ତ ମନୁଷ୍ୟ ବିମୁକ୍ତ ଆତ୍ମା ହୋଇ ନ ପାରିଛି, ପ୍ରଭୁଙ୍କୁ ଲାଭ କରିବା ତା'ପକ୍ଷରେ ସମ୍ଭବ ନୁହେଁ । ସଂସାରର ଦାବାନଳ ତାପରେ ବାରମ୍ବାର ତାପିତ ହେବା ହିଁ ତାହାର ଭବିତବ୍ୟ । ନିଜ ପାଇଁ ମୋର କୌଣସି ଦୁଃଖ ନାହିଁ । ଆପଣ ମହାରାଜ-ପ୍ରାରବ୍ଧ ବଳରେ ଏଡ଼େ ବଡ଼ ପଦବୀର ଅଧିକାରୀ । ଶାସ୍ତ୍ର କହୁଛି 'ମହତୀ ଦେବତା ହ୍ୟେଷା ନର ରୂପେଣ ତିଷ୍ଠତି ।' ଅଖିଳ ପ୍ରାଣୀଙ୍କର ଗୁରୁ, ସର୍ବ ଚରାଚରର ଈଶ୍ୱର ସେଇ ପରମ ବ୍ରହ୍ମଙ୍କର ପଦାରବିନ୍ଦରେ ମନ ନିବେଶି ଆପଣ ଜନ୍ମ ସାର୍ଥକ କରନ୍ତୁ । ଏତିକି ମାତ୍ର ମୋର ନିବେଦନ ।

ରାଜା ରହୂଗଣଙ୍କର ରୋମାଞ୍ଚ ଜାତ ହେଲା । ଅଶ୍ରୁପୂଳକ ଗଦ୍ ଗଦ୍ କଣ୍ଠରେ 'ନିସ୍ତରିଲି' 'ନିସ୍ତରିଲି' ବୋଲି ଉଚ୍ଚାରଣ କରୁ କରୁ ସେ ବ୍ରାହ୍ମଣଙ୍କ ପାଦତଳେ ଲୋଟି ପଡ଼ିଲେ । କହିଲେ, ଗୁରୁଦେବ, ବ୍ୟାଧିଗ୍ରସ୍ତ ପ୍ରାଣୀ ନିମନ୍ତେ ଅମୃତ ମହୌଷଧି ଭଳି ନିଦାଘ ପ୍ରପୀଡ଼ିତ ବ୍ୟକ୍ତି ପାଇଁ ଶୀତଳ ଛାୟାଭଳି ମୋ ପାଇଁ ତୁମର ପୀୟୂଷ ପୂର୍ଣ୍ଣ ଶାସ୍ତ୍ରବାକ୍ୟ କଲ୍ୟାଣକାରୀ ହୋଇଛି । ମୋର ମନରୁ ସମସ୍ତ ସଂଶୟ ଦୂର ହୋଇଛି ।

ଜଡ଼ ଭରତ ରାଜାଙ୍କୁ ସ୍ନେହରେ ପାଦତଳୁ ଉଠାଇଲେ । ସ୍ୱହସ୍ତରେ ତାଙ୍କ ଶରୀରରୁ ଧୂଳି ଝାଡ଼ିଦେଲେ । କୋମଳ କଣ୍ଠରେ କହିଲେ - ବତ୍ସ, ସଂସାର ପଥ

ଅତ୍ୟନ୍ତ ଜଟିଳ । ମାୟା ମୋହଗ୍ରସ୍ତ ପ୍ରାଣୀ ରାଜସିକ ଆଉ ତାମସିକ ବୃତ୍ତି ଆଚ୍ଛନ୍ନ ହୋଇ ଉକ୍ତର ପ୍ରାୟ ଏଠାରେ ଭ୍ରମଣ କରେ । ମୁକ୍ତିଠାରୁ ଦୂରବର୍ତ୍ତୀ ହୋଇପଡ଼େ । ପରମବ୍ରହ୍ମ ଯେ ମୁକ୍ତିର ଦ୍ୱାର ସ୍ୱରୂପ ଉପସ୍ଥିତ ଅଛନ୍ତି । ଥରେ ମାତ୍ର ତାଙ୍କୁ ଚିହ୍ନି ପାରିଲେ, ଆତ୍ମା ଭବ ବନ୍ଧନରୁ ମୁକ୍ତ ହୁଏ । ତୁମେ ଏବେ ତାଙ୍କରି ଆରାଧନା କର ।

ରହୂଗଣ ନିବେଦନ କଲେ - ହେ ଗୁରୁ ! ଆପଣଙ୍କର ପବିତ୍ର ପଦରଜର ସ୍ପର୍ଶରେ ମୋହର ସର୍ବ ଦୁରିତ କ୍ଷୟ ହୋଇଯାଇଛି । ଆପଣଙ୍କର ପୁଣ୍ୟରୁ ମୋହ ଚିତ୍ତରୁ ଅବିଦ୍ୟା ଅନ୍ଧକାର ସମ୍ପୂର୍ଣ୍ଣ ଦୂର ହୋଇଛି । ଆପଣଙ୍କ ପାଦତଳେ ମୋହର କୋଟି କୋଟି ପ୍ରଣାମ ।

ଏତିକି କହି ରହୂଗଣ ଭରତଙ୍କ ପାଦଧରି ବ୍ୟାକୁଳ ଚିତ୍ତରେ ରୋଦନ କରିବାକୁ ଲାଗିଲେ । ଭରତ ସ୍ନେହରେ ତାଙ୍କ ମସ୍ତକ ଆଘ୍ରାଣ କରୁ କରୁ ଭାବୁଥିଲେ, ଏ ଜନ୍ମ ପାଇଁ ତାଙ୍କର କାର୍ଯ୍ୟ ହୁଏତ ଶେଷ ହୋଇଛି । ଅବଧୂତର ଦୀକ୍ଷା ନେଇ ସେ ଭୂ-ପର୍ଯ୍ୟଟନ କରିବେ, ଏବଂ ଜାଣିବାକୁ ଚେଷ୍ଟା କରିବେ, ଭବିଷ୍ୟଦ୍ ଭାଗ୍ୟବିଧାତା ତାଙ୍କ ପାଇଁ ଏଥର କ'ଣ ବ୍ୟବସ୍ଥା କରୁଛନ୍ତି ।

ପୁନରପି ଜନ୍ମ, ପୁନରପି ମରଣର ଏହି ଶାଶ୍ୱତ ଚକ୍ର ମଧ୍ୟରୁ ତାଙ୍କର କ'ଣ କେବେ ମୁକ୍ତି ନାହିଁ ?

ଏହିଭଳି ଅନେକ ଅନୁତ୍ତରିତ ପ୍ରଶ୍ନ ଭରତଙ୍କ ମନକୁ ଚଞ୍ଚଳ କରୁଥିଲା । ସନ୍ନ୍ୟାସୀ ହୋଇ ସୁଦ୍ଧା ବାରମ୍ବାର ଯଦି ତାଙ୍କୁ ଏହିଭଳି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼େ, ତେବେ ଏ ସନ୍ନ୍ୟାସରେ ବା କି ଫଳ ?

ବୈରାଗ୍ୟ ସାଧନରେ ଯଦି ମୁକ୍ତି ନାହିଁ, ତେବେ ମୁକ୍ତିର ମାର୍ଗ କେଉଁଟା ?

କାହିଁ ମୁକ୍ତି ???



# ଆଶ୍ରମରେ ଏକାକୀ ମୁଁ

ପଶ୍ଚିମ ଆକାଶରେ ବର୍ଣ୍ଣର ମହୋତ୍ସବ ଭିତରେ ସୂର୍ଯ୍ୟ ଦେବତା ବିଦାୟ ନେବାକୁ ପ୍ରସ୍ତୁତ ହେଉଛନ୍ତି । ସୂ-କ୍ଷୀନ ବସ୍ତ୍ର ଭଳି ଖଣ୍ଡିଏ ପାରଦର୍ଶୀ ମେଘ କାହୁଁ ଉଡ଼ିଆସି ସୂର୍ଯ୍ୟଙ୍କୁ ସ୍ପର୍ଶ କରିବାକୁ ଯାଉ ଯାଉ ହଠାତ୍ ଯେମିତି ସ୍ତବ୍ଧ ହୋଇ ରହିଯାଇଛି । ସୂର୍ଯ୍ୟଙ୍କର ତୀକ୍ଷ୍ଣ ରଶ୍ମି ବିଦ୍ଧ କରିଛି ତା'ର ହୃଦୟକୁ । ମେଘର ବକ୍ଷରୁ ରକ୍ତ କ୍ଷରିତ ହେଉଛି ଗାଢ଼ ରକ୍ତ ବର୍ଣ୍ଣର ରଙ୍ଗୀନ୍ ଆସବ ଭଳି । ତା' ଉପର ଦେଇ ପକ୍ଷ ବିସ୍ତାର କରି ଉଡ଼ିଗଲେ ଦଳେ ଶୁଭ୍ରବର୍ଣ୍ଣର ହଂସ । ଶୁକ୍ଳ ବର୍ଣ୍ଣର ସେଇ ମହୋତ୍ସବ ହଠାତ୍ ଯେମିତି ଅଗ୍ନିସ୍ନାନ କରି ରକ୍ତାଭ ହୋଇ ଉଠିଲା । ରକ୍ତର ହୋରି ଖେଳୁ ଖେଳୁ ବିଦାୟ ନେବା ପୂର୍ବରୁ ସୂର୍ଯ୍ୟ ଦେବତା ସ୍ନିଗ୍ଧ କିରଣ ଜାଲ ବିସ୍ତାର କରି ପୃଥିବୀକୁ ଦେଖି ନେଉଛନ୍ତି ।

ଆସନ୍ନ ସନ୍ଧ୍ୟାର ରମଣୀୟ ପରିବେଶରେ ଆକାଶ ପରିକ୍ରମା କରୁଛନ୍ତି ଦେବରାଜ ଇନ୍ଦ୍ର । ଦୁଗ୍ଧ ଧବଳ ଉଚ୍ଚୈଃଶ୍ରବା ଘୋଟକବାହିତ ସୁବର୍ଣ୍ଣ ରଥ ଅସ୍ତଗାମୀ ସୂର୍ଯ୍ୟକିରଣରେ ଝଲମଲ କରୁଛି । ଗୋଟିଏ ହାତରେ ବଲଗା ଧରି ଦେବରାଜ ଅଳସ ଭଙ୍ଗୀରେ ଭୂପୃଷ୍ଠ ଆଡ଼କୁ ଅନାଇ ରହିଛନ୍ତି । ଆଖିରେ ପଡୁଛି ତୁଷାରମୌଳି ଗିରିରାଜ ହିମାଳୟ । ତପ୍ତକାଞ୍ଚନ ଆଭାରେ ଝଲସିତ । ଅଦୂରରେ ତ୍ରିଶୂଳଲାଞ୍ଛିତ କୈଳାସ । ଅକର୍ମା କର୍ମଦାୟୀ ଭଗବାନ ଆଶୁତୋଷଙ୍କର ଆବାସସ୍ଥଳୀ । ସେଇଠି ନିବାସ ଶିବ-ପରିବାରଙ୍କର । ଇନ୍ଦ୍ର ଦେବଙ୍କର ନିମ୍ନମୁଖୀ ଦୃଷ୍ଟି ଦେଖିବାକୁ ପାଇଲା ଶିବପତ୍ନୀ ଉମାଙ୍କର ସଯତ୍ନ ପାଳିତ ମୟୂରଯୂଥର ନିଃଶଙ୍କ ବିହାର । ଉମା-ସଖୀ କୃତ୍ତିକାଙ୍କର କଙ୍କଣ ତାଳରେ ଉତ୍ପିଚ୍ଛ ମୟୂରର ଉଦ୍ଦାମ ନୃତ୍ୟ ଦେବରାଜଙ୍କ ଦୃଷ୍ଟି ଆକର୍ଷଣ କଲା । ତାଙ୍କ ମୁଖମଣ୍ଡଳରେ ଧୀରେ ହସ ଫୁଟିଉଠି ମିଳାଇଗଲା ।

କୈଳାସ-ଉପତ୍ୟକା ଢାକି ହୋଇ ରହିଛି ଗଗନଚୁମ୍ବୀ ଦେବଦାରୁ ଅରଣ୍ୟଦ୍ୱାରା । ସେଇ ଅରଣ୍ୟ ହଠାତ୍ ତରଙ୍ଗାୟିତ ହୋଇ ଉଠୁଛି ତଡ଼ିତ୍‌ଗତି କୃଷ୍ଣସାର ଯୂଥର ସ୍ୱେଚ୍ଛା ଲମ୍ଫଦ୍ୱାରା । ବାୟୁବାହିତ କସ୍ତୁରୀର ସୁଗନ୍ଧ ଦୀର୍ଘ ପଥ ଅତିକ୍ରମ କରି ଆସି ଘ୍ରାଣେନ୍ଦ୍ରିୟକୁ ପୁଲକିତ କରି ଦେଉଛି । ତା' ସହିତ ସମ୍ମିଳିତ ହେଉଛି, ଦେବତାତ୍ମା ହିମାଳୟର ଭିନ୍ନ ଭିନ୍ନ ଓଷଧୀ ବୃକ୍ଷ ନିର୍ଗତ ସୁଗନ୍ଧ ।

ଦେବରାଜଙ୍କର ହୃଦୟ ପ୍ରସନ୍ନତାରେ ପରିପୂର୍ଣ୍ଣ ହୋଇଯାଉଛି । ସେ ବଲ୍‌ଗା ନିୟନ୍ତ୍ରଣ ଭୁଲିଯାଇ ଶୋକପାଶୋରା ଏଇ ଅପସରା ଭୁବନର ସୌନ୍ଦର୍ଯ୍ୟ ଦେଖିବାରେ ଲାଗିଛନ୍ତି । ରୌପ୍ୟପତ୍ରର ସୂକ୍ଷ୍ମଖଣ୍ଡ ଭଳି ହିମାଳୟ ସ୍କନ୍ଧର ଉପବୀତ ଭଳି ନିମ୍ନଗାମୀ ସୁରଧୂନୀଙ୍କର ଉପଳ ବିଷମ ଶଯ୍ୟାର ନୃତ୍ୟଚପଳ ଧାର ତାଙ୍କର ଦୃଷ୍ଟି ଆକର୍ଷଣ କଲା ।

ସମ୍ବାଦ ମିଳିଛି, ଅଚିରେ ତ୍ରିପୁରାସୁରର ଥାଟ ସ୍ୱର୍ଗପୁର ଜୁର କରିବେ । ପାରିଜାତ ପୁଷ୍ପ, ଅନନ୍ତଯୌବନା ଶଚୀ ଆଉ ଦେବଭୋଗ୍ୟ ଅମୃତ-କୁମ୍ଭ ଏ ତିନୋଟି ପାଇଗଲେ, ତ୍ରିପୁରାସୁର ଅବଶ୍ୟ ଦେବତାମାନଙ୍କୁ ମୁକ୍ତି ଦେବ । ଅସୁରବ୍ରହ୍ମା ବଳରେ ବଳୀୟାନ୍ । ଦେବତାମାନେ ତାହାର ସାମାନ୍ୟତମ କ୍ଷତି କରିପାରିବେ ନାହିଁ, ଏହା ସେ ଜାଣେ । ପ୍ରାର୍ଥିତ ବସ୍ତୁ ରାକ୍ଷସକୁ ଦାନ କରିବାର ପ୍ରଶ୍ନ ଉଠୁନାହିଁ । ଯୁଦ୍ଧ ତେଣୁ ଅନିବାର୍ଯ୍ୟ । ପରାମର୍ଶ ପାଇଁ ଦେବରାଜ ନାରାୟଣଙ୍କ ପାଖକୁ ଯାଇଥିଲେ । ମାତ୍ର ବୈକୁଣ୍ଠ ଶୂନ୍ୟ । କେଉଁଠି ଅଛନ୍ତି ନାରାୟଣ କେହି ଜାଣନ୍ତି ନାହିଁ । ସେଇଠୁ ସେ ନିରାଶ ହୋଇ ଫେରୁଛନ୍ତି । ମନ ଅସ୍ଥିର ରହିଛି ।

ଯୁଦ୍ଧ ବିଗ୍ରହ ଭିତରେ ହିଁ ଇନ୍ଦ୍ରପଦର ଗରିମା ବାରମ୍ବାର ପରୀକ୍ଷିତ ହୋଇଛି, ଭୂଲୁଣ୍ଠିତ ହୋଇଛି । ସେତିକିବେଳେ ତାଙ୍କର ମନେ ହୋଇଛି ଅନ୍ୟ ଏକ ସ୍ପୃହଣୀୟ ଜୀବନର କଥା । ସେ ଜୀବନର ଆଦି ଅଛି, ମଧ୍ୟ ଅଛି ଅଛି ପୁଣି ଅନ୍ତ । ଶୈଶବ, କିଶୋର, ଯୌବନ ଆଉ ବାର୍ଦ୍ଧକ୍ୟର ନିତ୍ୟ ନବ ପରିବର୍ତ୍ତନର ରୋମାଞ୍ଚ ଅଛି । ଶୈଶବର ସରଳତା, ଅପାପବିଦ୍ଧ କୈଶୋରର ସ୍ୱପ୍ନ ଆଉ ଯୌବନର ଶିହରଣ ନେଇ ଯେଉଁ ଜୀବନ, ଝରାପତ୍ରର ବୃନ୍ତ ଭିତରୁ ନବମୁକୁଳର କ୍ରମବର୍ଦ୍ଧମାନ ପେଲବତାର ଯେଉଁ ଆକର୍ଷଣ, ଦେବତାର ଗତାନୁଗତିକ ଜୀବନରେ ତାହା କାହିଁ ? ଦେବତାର ଜୀବନରେ କେବଳ ପ୍ରାପ୍ତିର ସମାରୋହ । ହାତ ବଢ଼ାଇଲେ ସବୁ ସୁଲଭ । ଦୁର୍ଲ୍ଲଭ ପଦାର୍ଥଟିଏ ପାଇବାରେ ଯେଉଁ ମୂର୍ଚ୍ଛାଳିଆ ଆନନ୍ଦ ଦେବତା ତାହା କେତେ ଅନୁଭବ କରନ୍ତି ?

ମନ ହେଉଛି ଏ ସବୁ ଛାଡ଼ିଦେଇ କେଉଁଠି ଟିକିଏ ଦ୍ୱନ୍ଦ୍ୱହୀନ ଜୀବନର ସ୍ୱାଦୁ ଉପଭୋଗ କରିବା ପାଇଁ । ଉଚ୍ଚୈଶ୍ରବା ଅଶ୍ୱ, ଐରାବତ ଗଜ, ପାରିଜାତ ପୁଷ୍ପ, ବଜ୍ର, ଅଙ୍କୁଶ ଏସବୁ ଫିଙ୍ଗିଦେଇ ଅତି ସାଧାରଣ ଭାବରେ ଜୀବନକୁ ପାଖରୁ ଛୁଇଁ ଦେଖିବା ପାଇଁ । ସେ ଜାଣନ୍ତି, ତାହା ସେ କରିପାରିବେ ନାହିଁ । ଦେବଲୋକରେ ବିପ୍ଳବ ସୃଷ୍ଟି ହେବ । ଇନ୍ଦ୍ରପଦରେ କାପୁରୁଷତାର ଲାଞ୍ଛନ ଲାଗିଯିବ । ଦେବତାମାନେ ଧିକ୍‌କାର ଦେବେ । ଏସବୁ ଚିନ୍ତା କରିବା ହିଁ ହେଉଛି ତାଙ୍କ ପାଇଁ ବିଳାସ । ଦେବତାମାନେ କ'ଣ ସ୍ୱପ୍ନ ଦେଖନ୍ତି ?

ଦେବରାଜଙ୍କର ନିମ୍ନଦୃଷ୍ଟି ହଠାତ୍ ଗୋଟିଏ ସ୍ଥାନରେ ସ୍ଥିର ହୋଇଗଲା । ପୁଷ୍ପିତ ଅଶୋକ ଶାଖାରେ କମନୀୟ ଦେହଯଷ୍ଟି ଡାକିଦେଇ ଏଇ ଯେ ଆନମନା ସୁନ୍ଦରୀ ଦିଗ୍‌ବଳୟ ନିବଦ୍ଧ ଦୃଷ୍ଟି ହୋଇ ପ୍ରତୀକ୍ଷାମାଣା ସେ କିଏ ? ଅସ୍ତଗାମୀ ସୂର୍ଯ୍ୟର କନକ କିରଣରେ ବିକଚ ଶତଦଳସମ ମୁଖ ବିଭାସିତ । ନୀଳଜଳରେ ସୁବର୍ଣ୍ଣ ପଦ୍ମ । ଉଦାସ ନୟନରେ ନୀଳ ଇନ୍ଦିବରର ଠାଣି । ଆକର୍ଣ୍ଣ ବିସ୍ତୃତ ଘନକୃଷ୍ଣ ଭ୍ରୂଲତାରେ କନ୍ଦର୍ପ ଚାପର ଟଙ୍କାର-ତିଳପୁଷ୍ପ ଜିଣା ନାସିକାରେ ପାରିଜାତର ସୌକୁମାର୍ଯ୍ୟ । କଦମ୍ବ କୋରକତୁଲ୍ୟ ସଘନ ବକ୍ଷ । ତଥି ଉପରେ ରୁଦ୍ରାକ୍ଷମାଳାର କମନୀୟ ଶୋଭା । କ୍ଷୀଣ କଟି ନିମ୍ନକୁ ଓଲଟ ରମ୍ଭାବୃକ୍ଷ ତୁଲ୍ୟ ସୁସ୍ପଷ୍ଟ ଜଙ୍ଘା । ଯୁବତୀ କୁଳର ଆଦ୍ୟଦୃଷ୍ଟି କିଏ ଏଇ ନାରୀ ?

ଦେବରାଜ ଭୁଲିଗଲେ ବିପନ୍ନ ଦେବକୁଳର ଦମନୀୟ ସ୍ଥିତି । ତ୍ରିପୁରାସୁରର ଦୁର୍ଦ୍ଧର୍ଷ ସେନାର ଆକ୍ରମଣରେ ସ୍ୱର୍ଗପୁରର ଦୁର୍ଦ୍ଦଶା ସେତେବେଳେ ଆଉ ତାଙ୍କ ମନକୁ ଆସିଲା ନାହିଁ । ସେ ଅପଲକ ସ୍ଥିର ଦୃଷ୍ଟିରେ ସୌନ୍ଦର୍ଯ୍ୟର ଏଇ ଦୁର୍ଲ୍ଲଭ ଘଟାଘର ଆଡ଼େ ଅନାଇ ରହିଲେ । ବାସନାଭୋଗୀ ହୋଇ ତ ଏତେକାଳ କଟିଗଲା । ଏଥର ସେ ପାଖକୁ ଯିବେ । ଅନ୍ତତଃ ନୈବେଦ୍ୟକୁ ନିଜ ହାତରେ ଛୁଇଁ ଦେଖିବେ ।

ବର୍ତ୍ତମାନ ପାଇଁ ଏହାହିଁ ହେଉଛି ତାଙ୍କର ଏକମାତ୍ର କର୍ତ୍ତବ୍ୟ । ଯେଉଁ ପ୍ରଶାନ୍ତି ପାଇଁ ସେ ଏତେଦିନ ଯାଏ ବ୍ୟାକୁଳ ହୋଇ ବୁଲୁଥିଲେ, ମନେହେଉଛି ବିଶ୍ୱବିଧାତା ତାଙ୍କୁ ସେଇ ଶାନ୍ତି ପାଖରେ ପହଞ୍ଚାଇ ଦେଇଛନ୍ତି । ସୁନ୍ଦରକୁ ଦେଖିବାର, ମଧୁରକୁ ଚାଖିବାର ଅଧିକାର ସମସ୍ତଙ୍କର ଅଛି । ସେଇ ଅଧିକାର ବଳରେ ସେ ଏଇ ଦୁର୍ମିଳ ସୌନ୍ଦର୍ଯ୍ୟକୁ ଗ୍ରହଣ କରିବେ ।

ବିବେକ କହୁଛି ଏହା ଅନ୍ୟାୟ । କାହାର ପତ୍ନୀ, କାହାର କନ୍ୟା ନବୋଢ଼ା କି ଅନୂଢ଼ା କିଛି ନ ଜାଣି ତା' ଆଡ଼କୁ ହାତ ବଢ଼ାଇବା ପାପ । ସେ ଦେବରାଜ-ତାଙ୍କର ପତ୍ନୀ ତ୍ରିଲୋକସୁନ୍ଦରୀ ସାର । ତାଙ୍କ ସଭାରେ ଅନନ୍ତଯୌବନା ସାଗରସମ୍ଭବା ଅପ୍‌ସରାମାନଙ୍କର ନିତ୍ୟ ଲୀଳା । ସେ ଆକୃଷ୍ଟ ହେବେ ଏକ ସାଧାରଣ ମାନବୀ ଆଡ଼କୁ ! କ'ଣ କହିବେ ଦେବତା ମଣ୍ଡଳୀ ? କ'ଣ ଭାବିବେ ଦେବଗୁରୁ ? ସେ ପୁଣି କଣ୍ଟକଜିହ୍ୱ । ମନର ଚିନ୍ତାକୁ ମୁହଁରେ ପ୍ରକାଶ କରିବାରେ ହିଁ ତାଙ୍କର ସ୍ୱସ୍ତି ।

ସେ ଅନୁଭବ କରୁଛନ୍ତି, ତିନିଲୋକ ତାଙ୍କୁ ଧିକ୍‌କାର କରିବ । ଧର୍ମର ରକ୍ଷକ ହୋଇ ଭକ୍ଷକ ସାଜିବାର ପ୍ରୟାସକୁ କଟୁଭାଷାରେ ସମାଲୋଚନା କରିବ । ରାକ୍ଷସକୁଳର ନିପୀଡ଼ନରେ ସମଗ୍ର ସ୍ୱର୍ଗଲୋକ ଯେତେବେଳେ କମ୍ପମାନ, ସେତେବେଳେ ନେତାଙ୍କର ଏଇ ଦୈହିକ ଲାଳସା ନିଶ୍ଚୟ ହାସ୍ୟାସ୍ପଦ । ତେବେ ସେ ନିରୁପାୟ । ଇନ୍ଦ୍ରପଦର

ଗରିମା ତାଙ୍କର ଲୋଡ଼ାନାହିଁ । ସ୍ୱର୍ଗର ଐଶ୍ୱର୍ଯ୍ୟରେ ତାଙ୍କର ପ୍ରୟୋଜନ ନାହିଁ । ମନ ତାଙ୍କର ଏଇ ମୂହୂର୍ତ୍ତରେ ଚାହୁଁଛି, ଏଇ ରୂପସୀ ନାରୀର ନିବିଡ଼ ସାନ୍ନିଧ । ତାଙ୍କୁ ଧରି ସେ ଦେଶାନ୍ତରୀ ହେବେ ।

ପ୍ରଶ୍ନ ହେଉଛି, ଯଦି ଏଇ ନାରୀ ତାଙ୍କୁ ପ୍ରତ୍ୟାଖ୍ୟାନ କରେ ? ଇନ୍ଦ୍ରପଦର ଅହମିକା ଧୂଳିରେ ଲୋଟିବ ନାହିଁ ? ସାରା ଦୁନିଆ ତାଙ୍କୁ ଉପହାସ କରିବ ନାହିଁ । ମନ କହୁଛି ସେ ସୃଷ୍ଟିର ଶ୍ରେଷ୍ଠ ପୁରୁଷ । ନାରୀ ମନକୁ ଟଳାଇ ଦେବାଭଳି ରୂପର ତାଙ୍କଠାରେ ଅଭାବ ନାହିଁ । ତାଙ୍କ ଭଳି ସୁବୀର ସଂସାରରେ କେତେଅବା ଅଛନ୍ତି ? ଚୁମ୍ବକ ଲୁହାକୁ ଟାଣିବା ଭଳି ଯେ କୌଣସି ନାରୀକୁ ସେ ନିଜ ଆଡ଼କୁ ଟାଣି ପାରନ୍ତି ।

ପ୍ରଥମ ଦର୍ଶନରେ ନାରୀ ଟଉଳେ ପୁରୁଷର ଦୈହିକ ସୌନ୍ଦର୍ଯ୍ୟକୁ । ଗୁଣ ଆସେ ରୂପର ପଛରେ । ପୁଣି ଗୁଣର ତ ତାଙ୍କଠାରେ କୌଣସି କମି ନାହିଁ । ସେ ଭୟ କରିବେ କାହାକୁ ? ଏଭଳି ଦୁର୍ଲ୍ଲଭ ରତ୍ନଟିଏ ପାଇ ମଧ୍ୟ ଯଦି ସେ ତାଙ୍କୁ ପାଖରୁ ଟିକିଏ ଛୁଇଁ ନ ପାରି ଚାଲିଯାଆନ୍ତି, ତେବେ ସାରା ଦୁନିଆ ତାଙ୍କୁ କାପୁରୁଷ ବୋଲି କହିବ । କାପୁରୁଷମାନେ ଅନେକ କିଛି କରିପାରନ୍ତି ନାହିଁ ।

ମନୋଜବ ରଥ ଯେଉଁଠି ଅବତରଣ କଲା, ତାହା ଗୋଟିଏ ଆଶ୍ରମର ଅଦୂରବର୍ତ୍ତୀ ସ୍ଥାନ । ବୃକ୍ଷ ଅନ୍ତରାଳରେ ରଥଟିକୁ ଲୁଚାଇ ଦେବରାଜ ଲଘୁ ପଦକ୍ଷେପରେ ସେଇଆଡ଼େ ଚାଲିଲେ, ଯେଉଁଠି କିଛିକ୍ଷଣ ପୂର୍ବରୁ ସେ ରୂପର ପ୍ରଜ୍ୱଳିତ ଅଗ୍ନିଶିଖାଟିଏ ଦେଖିବାକୁ ପାଇଥିଲେ ।

ଦେବରାଜଙ୍କ ପଦକ୍ଷେପରେ ଅତ୍ୟନ୍ତ ସତର୍କତା । ମନରେ ଗୋପନ ଅଭିସାରର ଉତ୍କଣ୍ଠା । ବୃକ୍ଷ ଅନ୍ତରାଳରୁ ସେ ନିର୍ଦ୍ଧୂମ ଅଗ୍ନି ତେଜ ଭଳି ଦେଦୀପ୍ୟମାନ ସେଇ ରୂପର ଅଗ୍ନିଶିଖା ଆଡ଼କୁ ଅନାଇ ରହିଲେ । ତାଙ୍କର ମନେ ହେଉଥିଲା ଜନ୍ମ ଜନ୍ମ ଧରି ସେ ଏଇ ରୂପ ସୁଧାପାନ କରୁଥିଲେ ମଧ୍ୟ ତାଙ୍କର ନୟନ କେବେହେଲେ ପରିତୃପ୍ତ ହେବ ନାହିଁ । ତୃଷ୍ଣା-ତୃଷ୍ଣା ବଢ଼ାଏ ସିନା ।

ଦେବରାଜ ଆଗରେ ଯାହା ଦେଖୁଥିଲେ, ତାହା କୌଣସି ଆଶ୍ରମ ଭଳି ମନେ ହେଉଥିଲା । ଆଶ୍ରମ ତ ନିଶ୍ଚୟ, ମାତ୍ର ଗୁରୁକୁଳ ନୁହେଁ । କାରଣ ଏଇ ମୂହୂର୍ତ୍ତରେ ଆଶ୍ରମ ଜଣାଯାଉଛି, ଅସ୍ୱାଭାବିକ ଭାବରେ ଶାନ୍ତ ଆଉ ନିର୍ଜନ । ଅନ୍ତେବାସୀମାନେ ଥିଲେ ଏହା ହୁଅନ୍ତା ନାହିଁ । ଜଣା ଯାଉଛି କୌଣସି ମୁନି ନିର୍ଜନରେ ଭଜନ ସାଧନ କରିବା ନିମନ୍ତେ ଏଠାରେ ଆଶ୍ରମ କରି ରହିଯାଇଛନ୍ତି । ମାତ୍ର ଆଶ୍ରମରେ ନାରୀ !!

ଇନ୍ଦ୍ରଦେବ ନିର୍ନିମେଷ ନୟନରେ ସେଇ ଆଶ୍ରମ-ସୁନ୍ଦରୀ ଆଡ଼େ ଅନାଇ ରହିଥିବାବେଳେ ହଠାତ୍ ପବନ ଦେବତା ତାଙ୍କପ୍ରତି ସଦୟ ହୋଇ ଉଠିଲେ । ଉଭାବ

ଗତିରେ ସେଇ ସ୍ୱଚ୍ଛବସନା ସୁନ୍ଦରୀଙ୍କର ବକ୍ଷ-ବାସକୁ ଉଡ଼ାଇ ନେଲେ । ସୁନ୍ଦରୀ ସାମାନ୍ୟ ବିବ୍ରତ ହେଲେ ଠିକ୍, ମାତ୍ର ଉଦ୍‌ବିଗ୍ନ ହେଲେ ନାହିଁ । ଚଞ୍ଚଳ ଭ୍ରୂକ୍ଷେପ ଦ୍ୱାରା ଅଶିଷ୍ଟ ପବନକୁ ସାବଧାନ ମାତ୍ର କରିଦେଇ, ସେ ସେମିତି ଦଣ୍ଡାୟମାନ ରହିଲେ ।

ଦେବରାଜଙ୍କ ଦୁଇ ନୟନରୁ ସତେ ଯେମିତି ତରଳ ଲାଳସା ଝରି ପଡ଼ିବାକୁ ଲାଗିଲା । ନାରୀ ଦେହ ତାଙ୍କ ପାଇଁ ଏମିତି କିଛି ଗୋଟାଏ ଦୁର୍ମିଳ ବସ୍ତୁ ନୁହେଁ । କ୍ଷମତାରେ ଥିଲେ, ପଦପଦବୀରେ ରହିଲେ, ଏମିତି କେତେ ଘଟଣା ଘଟିଯାଏ ଯାହାର କେନ୍ଦ୍ରରେ ଥାଏ ନାରୀ । ଅବାରିତ ଉପଭୋଗ ହେଉଛି କ୍ଷମତାର ଅନ୍ୟନାମ । ସ୍ୱାଦ ପରିବର୍ତ୍ତନ ପାଇଁ ଗୋଟିଏ ସୁଲଳିତ ନାରୀ ଦେହ ଅପେକ୍ଷା ଉପଭୋଗ୍ୟ ଆଉ କ'ଣ ହୋଇପାରେ ?

ମାତ୍ର ଏଇ ନାରୀ ? ସେ କ'ଣ ଜୀବନରେ ଏଭଳି ଦେହ କେବେ ଦେଖିଛନ୍ତି ? ଦେବରାଜ ଭୁଲିଗଲେ ଯେ, ସେ ଦେବକୁଳର ଅଧିପତି, ସମଗ୍ର ସୃଷ୍ଟିର ଧର୍ମ ଅଧର୍ମ, ପାପ ପୁଣ୍ୟ, ନ୍ୟାୟ ଅନ୍ୟାୟର ଦାୟିତ୍ୱ ତାଙ୍କ ଉପରେ ରହିଛି । ଭୁଲିଗଲେ ଯେ, ରାତି ପାହିଲେ ଦୁର୍ଦ୍ଧର୍ଷ ତ୍ରିପୁରାସୁର ସ୍ୱର୍ଗରାଜ୍ୟ ଆକ୍ରମଣ କରି ତାଙ୍କଠୁ ଇନ୍ଦ୍ରପଦ ଛଡ଼ାଇ ନେବାର ଧମକ୍ ଦେଇଛି । ଯାଉ ସ୍ୱର୍ଗରାଜ୍ୟ, ହାତଛଡ଼ା ହୋଇଯାଉ ଇନ୍ଦ୍ରପଦ । ଏଇ ନାରୀକୁ ସଙ୍ଗରେ ନେଇ ସେ ଦେଶାନ୍ତରୀ ହେବେ । ସୃଷ୍ଟିର କେଉଁ ଏକ ନିର୍ଜନ କୋଣରେ କୁଟୀର ବିରଚି ଜୀବନ ବିତାଇ ଦେବେ । ଅପ୍ରାପ୍ତିର ବେଦନା ହୃଦରେ ଧରି ଜୀବନ କଟାଇ ପାରିବେ ନାହିଁ ।

ଦୁନିଆ ତାଙ୍କୁ ଲମ୍ପଟ କହିବ, ହୀନ ଚରିତ୍ର କହିବ, କହୁ ! ମାତ୍ର ଏଇ ସୁନ୍ଦରୀର ପାଦତଳର ଦୂର୍ବା ହୋଇ ସେ ସମସ୍ତ ନିନ୍ଦା, ଅପବାଦକୁ ଭୁଲିଯିବେ । କେବଳ ଦୁଇଟି ଆଖିର ଦୃଷ୍ଟିରେ ସେ ଏଇ ସୌନ୍ଦର୍ଯ୍ୟର କେତେଅବା ଦେଖି ପାରୁଛନ୍ତି ? ତାଙ୍କର ଯଦି ସହସ୍ର ନୟନ ଥାଆନ୍ତା ? ତେବେ କେଜାଣି ଅବା...

ଦେବରାଜ ବୃକ୍ଷାନ୍ତରାଳରୁ ବାହାରି ଆଶ୍ରମ ଅଭିମୁଖରେ ଚାଲିଲେ । ହଠାତ୍ ବୃକ୍ଷକାଣ୍ଡରେ ଅଳସ ଦେହ ଡାଳିଦେଇ ବିଶ୍ରାମ ସୁଖ ଉପଭୋଗ କରୁଥିବା ସେଇ କନ୍ୟାଙ୍କର ଦୃଷ୍ଟି ଆଗନ୍ତୁକଙ୍କ ଉପରେ ପଡ଼ିଲା । ତାଙ୍କ ଆଖିରେ ମୁଗ୍ଧ ପୁଲକିତ ବିସ୍ମୟ ଫୁଟି ଉଠିଲା । ନାରୀର ଏ ଦୃଷ୍ଟି ଦେବରାଜ ଚିହ୍ନନ୍ତି । ଅଳସ କନ୍ୟାର ବିସ୍ମୟ ବିହ୍ୱଳ ଦୃଷ୍ଟି ଯେ ତାଙ୍କର ରୂପର ନୀରବ ଆରତ୍ରିକା ରଚନା କରୁଛି, ଏଥିରେ ତାଙ୍କର ସନ୍ଦେହ ନ ଥିଲା । ତାଙ୍କର ଆତ୍ମବିଶ୍ୱାସ ଫେରି ଆସିଲା । ପ୍ରଥମ ଦୃଷ୍ଟିରେ ସେ ବାଜୀ ଜିତିଯାଇଛନ୍ତି ।

ବୃକ୍ଷର ଆଶ୍ରୟ ଛାଡ଼ି ବିପୁଳ ସ୍ତନଜଘନ ଭାରରେ ମନ୍ଥରଗମନା, ଶରତ ଚନ୍ଦ୍ରମା-ମୁଖୀ ସେଇ ନାରୀ ପାଦେ ପାଦେ ଆଗେଇ ଆସୁଥିଲେ । ଦେବରାଜଙ୍କ ହୃଦୟ ସେତେବେଳେ ଆଶା ଆଉ ଆଶଙ୍କାରେ ଦୃଢ଼ଶଙ୍କିତ ହେଉଥିଲା । ମନେ ହେଉଥିଲା ବକ୍ଷ ଭିତରୁ ହୃତ୍‌ପିଣ୍ଡ ସତେ ଯେମିତି ବାହାରକୁ ବାହାରି ଆସୁଚି । ସେ ନିଜକୁ ସ୍ଥିର ରଖିବାକୁ ଚେଷ୍ଟା କରୁଥିଲେ ବି ମୃଦୁ ବାତଚାଳିତ ଅଶ୍ୱତ୍ଥ ପତ୍ରଭଳି ତାଙ୍କର ଶରୀର ଥର ଥର ହୋଇ କମ୍ପୁଥିଲା । ମନେ ହେଉଥିଲା, ଶରୀର ତାଙ୍କର ନିଜ ଆୟତରେ ନାହିଁ ।

ନିଜର ବିମଳ ରୂପଛଟାରେ ସାୟାହ୍ନର ମ୍ଳାନ ପରିବେଶକୁ ଦୀପ୍ତିମନ୍ତ କରି ଆଗେଇ ଆସୁ ଆସୁ ସେଇ ନାରୀ ହଠାତ୍ ଗତି ବନ୍ଦ କଲେ । ଉଭୟଙ୍କ ମଧ୍ୟରେ ବ୍ୟବଧାନ ଖୁବ୍ ବେଶୀ ନ ଥିଲା ।

ଉଭୟେ ଉଭୟଙ୍କ ଆଡ଼କୁ ନିର୍ବାକ୍ ଦୃଷ୍ଟିରେ ଚାହିଁ ରହିଲେ । ସମୟ ନିସ୍ତରଙ୍ଗ ହୋଇ ଉଭୟଙ୍କ ସମ୍ମୁଖରେ ଝୁକି ରହିଥିଲା । ଯୂଥଭ୍ରଷ୍ଟ ହଂସଟିଏ ମନ୍ଦଗତିରେ ଆଗେଇ ଆସି ଆଶ୍ରମ କନ୍ୟାଙ୍କ ନିକଟରେ ଦଣ୍ଡାୟମାନ ରହିଥିଲା । ଅଦୂରରୁ ଶୁଣାଯାଉଥିଲା ରମଣୀକାଂକ୍ଷୀ କେକୀ କୁଳର ଉଲ୍ଲସିତ ହୁଙ୍କାର । ଅସ୍ପଷ୍ଟ ମନ୍ତ୍ରୋଚାରଣ ଭଳି ଉପଳଶଯ୍ୟାରେ ବହିଚାଲିଛି କ୍ଷୀଣସ୍ରୋତା ନିର୍ଝରିଣୀ । ଆଳବାଳର ଶେଷ ଜଳବିନ୍ଦୁ ଶୋଷି ନେଉଛି ଶୁକପକ୍ଷୀଟିଏ । କୃଷ୍ଣସାର ନିଜର ଶୃଙ୍ଗହାରା ପାର୍ଶ୍ୱରେ ଦଣ୍ଡାୟମାନା ମୃଗୀର ଉଦର ସଂବାହନ କରୁଛି ।

ଫୁଲ୍ଲାରବିନ୍ଦ ବଦନା ସେଇ ନାରୀ ଦେଖା ଯାଉଥିଲେ ଗୈରିକ ବସନା ଦେବୀ ସରସ୍ୱତୀଙ୍କ ପରି । ବାସବ ଭାବିଲେ ଯେ, ଏଥର ତାଙ୍କର କିଛି କହିବା ଉଚିତ । କ'ଣ କହିବେ, କିଭଳି ପ୍ରଥମେ ଆରମ୍ଭ କରିବେ, ଏଇ କଥାଟି ମାତ୍ର ତାଙ୍କର ମନକୁ ଆସୁନଥିଲା । ହୃଦୟ ବିଦୀର୍ଣ୍ଣ କରି ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା । ଶେଷରେ ଥରଥର କଣ୍ଠରେ ଦେବରାଜ ଆଗନ୍ତୁକାଙ୍କୁ ଲକ୍ଷ୍ୟ କରି କହିଲେ- ଦେବୀ...

ଆଗନ୍ତୁକା କ'ଣ କହିବାକୁ ଯାଇ ନିଜକୁ ସମ୍ବରଣ କରିନେଲେ । ତା'ପରେ ସେ କହିଲେ, ''ଗୌତମ ପତ୍ନୀ ଅହଲ୍ୟା, ଅତିଥିଙ୍କୁ ସ୍ୱାଗତ କରୁଛି ।''

ବାସବଙ୍କ ହୃଦୟର ସ୍ପନ୍ଦନ ବଢ଼ିଗଲା । ଏଇ ତେବେ ମହର୍ଷି ଗୌତମଙ୍କ ପତ୍ନୀ ଅହଲ୍ୟା ! ଅଦୃଷ୍ଟ ତାଙ୍କୁ ଏ କେଉଁଠିକୁ ନେଇ ଆସିଲା ? ଋଷିପତ୍ନୀ ଯେ ମାତୃସ୍ଥାନୀୟା । ସେ ଆଉ ଭାବି ପାରିଲେ ନାହିଁ । ଉତ୍‌ଥିତ ପାଦ କେଉଁଠି ଆଶ୍ରୟ ପାଇବ, ଏ ବିଷୟ ଏବେ ଆଉ ଭାବି ଲାଭ କ'ଣ ?

ଦେବରାଜ ପ୍ରଶ୍ନ କଲେ - ମହର୍ଷି ଗୌତମ ?

ବୀଣାଝିଣା କଣ୍ଠରୁ ଉତ୍ତର ଆସିଲା - ତୀର୍ଥାଟନରେ ।

-ଆଶ୍ରମରେ... ଦେବରାଜଙ୍କର ଦ୍ୱିତୀୟ ପ୍ରଶ୍ନ ।

ଆଶ୍ରମରେ ଏକାକୀ ମୁଁ... ଆଗନ୍ତୁକା ସାଧ୍ୱସ କଣ୍ଠରେ ଉତ୍ତର ଦେଲେ । ଦେବରାଜଙ୍କ ଦୃଷ୍ଟି ସହିତ ଅହଲ୍ୟାଙ୍କ ଦୃଷ୍ଟି ମିଶିଗଲା । ମନେହେଲା ଦେବରାଜଙ୍କ ଉପରେ ଆଞ୍ଜୁଳାଏ ଫୁଲ କିଏ ଯେମିତି ବର୍ଷା କରିଦେଲା । କମ୍ପିତ କଣ୍ଠରେ ଅହଲ୍ୟା କହିଲେ - କେଉଁ ରାଜକୁଳକୁ ବିରହବିଧୁର କରି ଅତିଥି ଏ ଦୀନ-ଆଶ୍ରମରେ ଉପସ୍ଥିତ ହୋଇଛନ୍ତି, ଜାଣିବାକୁ ବହୁ ଆଗ୍ରହ ହେଉଛି ଭଦ୍ର ।

ମୃଦୁ ହସି ଦେବରାଜ ଉତ୍ତର ଦେଲେ- ''ଶୁଣିଛି ଇନ୍ଦ୍ରପଦ କର୍ମ ଫଳ ଭିତ୍ତିକ । ଇନ୍ଦ୍ର ଆସନ୍ତି ଆଉ ଯାଆନ୍ତି । ତାଙ୍କ ପାଇଁ ସ୍ୱର୍ଗପୁରେ ସାମାନ୍ୟତମ ପ୍ରତିକ୍ରିୟା ମଧ୍ୟ ସୃଷ୍ଟି ହୁଏ ନାହିଁ ।''

ବିଚଳିତ ହୋଇ ଅହଲ୍ୟା ନିବେଦନ କଲେ, ''ଅପରାଧ ମାର୍ଜନା କରନ୍ତୁ ଦେବରାଜ । ଅଧୀନା ହଠାତ୍ ଆପଣଙ୍କୁ ଚିହ୍ନି ପାରିନାହିଁ । ଆସନ୍ତୁ ଆପଣଙ୍କ ପବିତ୍ର ପଦରଜରେ ଏଇ ଆଶ୍ରମ ଧନ୍ୟ ହେଉ ।''

ଅହଲ୍ୟାଙ୍କ ସହିତ ଯାଉ ଯାଉ ଦେବରାଜ କହିଲେ, ''ଯେଉଁ ଆଶ୍ରମରେ ଆପଣଙ୍କ ଭଳି ତ୍ରିଲୋକଲଲାମଭୂତା ସୁନ୍ଦରୀ ନାରୀଙ୍କର ଅହରହ ଆତଯାତ, ତାହା ସ୍ୱତଃ ଶୁଦ୍ଧ ଆଉ ପୂତ । ସେଥିପାଇଁ ଆଉ କାହାରି ସହାୟତା ପ୍ରୟୋଜନ ହୁଏନାହିଁ ଦେବୀ ।''

ଆଶ୍ରମର ସାଂଧ୍ୟ ପୂଜାର୍ଚ୍ଚନା ଶେଷ ହୋଇଥିଲା । ପର୍ଣ୍ଣକୁଟୀରରେ ସଯତ୍ନ ରଚିତ କୃଷ୍ଣାଜୀନ ଶଯ୍ୟା ଉପରେ ଦେବରାଜ ସୁଖାସନରେ ବସିଥିଲେ । ଅଦୂରରେ ବସିଥିଲେ ନତମୁଖୀ ଅହଲ୍ୟା । ଗୋଟିଏ କୋଣରେ ଇଙ୍ଗୁଦୀ ତୈଳର ପ୍ରଦୀପ ମୃଦୁମନ୍ଦ ଆଲୋକ ବିତରଣ କରୁଥିଲା ।

ଦୀର୍ଘଶ୍ୱାସ ପକାଇ ଦେବରାଜ କହିଲେ, ଆଶ୍ରମର ଏ ଆୟାସସାଧ୍ୟ ଜୀବନ, ମାସ ମାସ ବର୍ଷ ବର୍ଷ ଧରି ନିଃସଙ୍ଗତାର ଶ୍ୱାସରୁଦ୍ଧକାରୀ ଯନ୍ତ୍ରଣା, ଏ କୃଚ୍ଛ୍ର ସାଧନ କାହିଁକି ଦେବୀ ?

ଅହଲ୍ୟା ଶିହରି ଉଠିଲେ । କ'ଣ କହିବାକୁ ଚେଷ୍ଟା କରି ମଧ୍ୟ କହି ପାରିଲେ ନାହିଁ । ଇନ୍ଦ୍ର କହିବାକୁ ଲାଗିଲେ, ''ଗୋଟାଏ ମାତ୍ର ଜୀବନ । ପୂଜା ଅର୍ଚ୍ଚନା ବ୍ରତ

ଉପବାସ ଭିତରେ କଟାଇ ଦେବା ହେଉଛି ଚରମ ନିର୍ବୋଧତା । ପରିଣତ ବୟସରେ ହୁଏତ ମହର୍ଷି ଗୌତମ ତା' ପାରନ୍ତି । ମାତ୍ର ଏ ନବୀନ ବୟସରେ ତମେ...

ଅହଲ୍ୟା କହିଲେ, "ମୁଁ ମୋର କର୍ତ୍ତବ୍ୟ କରୁଛି ଦେବରାଜ ।"

ଦେବରାଜ କହିଲେ, "କାମନାର ଗଳାରୁଦ୍ଧ କରି ଯେଉଁମାନେ ମୁକ୍ତିର ମାର୍ଗ ଅନ୍ୱେଷଣ କରନ୍ତି, ମୋ ବିଚାରରେ ସେମାନେ ପାପ କରନ୍ତି । ଯେଉଁ ସ୍ରଷ୍ଟା ଶରୀର ଦେଇଛନ୍ତି, ସେଇ ମଧ୍ୟ ତା' ସହିତ ସ୍ୱାଭାବିକ କାମନା ଦେଇଛନ୍ତି । କାମନା ଜୀବନର ସ୍ୱାଭାବିକ ପ୍ରକାଶ । ଉପଭୋଗରେ ତା'ର ପୂର୍ଣ୍ଣତା-କୃଚ୍ଛ୍ର, ସାଧନାରେ ତା'ର ଆଗ୍ନେୟ ବିସ୍ଫୋରଣ-

ଅହଲ୍ୟା କ୍ଷୀଣ କଣ୍ଠରେ ବାଧାଦେଇ କହିଲେ - ମୁଁ ହିନ୍ଦୁନାରୀ ଦେବେନ୍ଦ୍ର । ପତିର ଧର୍ମ ଆଚରଣ କରିବା ମୋର ଧର୍ମ ।

ଇନ୍ଦ୍ର ଉଦ୍ଦୀପ୍ତ କଣ୍ଠରେ କହିଲେ, "ଶୁଷ୍କ ଅଶୋକ ତରୁରେ ସ୍ୱୟଂ କାମଦେବ ପତ୍ନୀ ରତି ଦୋହଦ ଦାନ କଲେ ମଧ୍ୟ ତହିଁରେ ମୁକୁଳ ଜାତହେବା ଏକ ଅସମ୍ଭବ ବ୍ୟାପାର । ଆଶ୍ରମ ତ୍ୟାଗ କରି ଥରେ ଦେବେନ୍ଦ୍ରର ପ୍ରମୋଦଶାଳାକୁ ଆସ । ସେଇଠି ତମେ ଅପ୍ସରାର ଚଟୁଳ ନୃତ୍ୟ ଆଉ ଫେନିଳ ଆସବପାତ୍ରରେ ଉପଭୋଗ କରିବ ଜୀବନର ପ୍ରକୃତ ସ୍ୱାଦ ।

ଅହଲ୍ୟା ଦୁଇକାନରେ ହାତଦେଇ କହିଲେ - ସେସବୁ ଚିନ୍ତା କରିବା ମୋ ପକ୍ଷରେ ପାପ ବାସବ ।

ତାଚ୍ଛଲ୍ୟ କରି ଇନ୍ଦ୍ର କହିଲେ, ଶିଥିଳ ମାଂସପେଶୀ ପଳିତ ଚର୍ମ ଲୁଳିତ ଇନ୍ଦ୍ରିୟକୁ ନେଇ ଏକ ଅଗ୍ନିଶିଖା ସହିତ କ୍ରୀଡ଼ା ରଚନା ପାପ ନୁହେଁ ? ବାତ୍ସାୟନଙ୍କୁ ଅଶ୍ଳୀଳ ବୋଲି କହି କାମଦେବଙ୍କର ଜୟଗାନ କରିବା ଅନ୍ୟାୟ ନୁହେଁ ? ତମେ ମୋତେ ପାପ ପୁଣ୍ୟର କଥା କୁହନାହିଁ ଦେବୀ ।"

କ୍ଲାନ୍ତ କଣ୍ଠରେ ଅହଲ୍ୟା କହିଲେ, "ତଥାପି ଏହାହିଁ ମୋର ନିୟତି । ଏ ଜୀବନକୁ ବରଣ କରିନେବା ପରେ ଏଥିରୁ ମୋର ମୁକ୍ତି ନାହିଁ । ଯୁଗ ଯୁଗର ସଂସ୍କାର ବେଢ଼ି ହୋଇ ମୋର ପାଦରେ ଛନ୍ଦା ହୋଇଛି । କେବଳ ମରଣ ହିଁ ମୋତେ ଏଥିରୁ ଅବ୍ୟାହତି ଦେଇପାରେ ।'

ଅହଲ୍ୟାଙ୍କ ପଦ୍ମପଲାଶ ନୟନରୁ ମୁକ୍ତାନିନ୍ଦି ଅଶ୍ରୁଧାର ବହିବାକୁ ଲାଗିଲା । ଇନ୍ଦ୍ର ପ୍ରକୃତରେ ତାଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରିଛନ୍ତି । ସୁପ୍ତ ଚେତନାର ନିର୍ବାପିତ

ଭସ୍ମକୁଣ୍ଡକୁ ଉଖାରି ତା' ଭିତରୁ ଅଗ୍ନିକଣା ବାହାର କରି ଆଣିଛନ୍ତି । ସେଇ ଅଗ୍ନି ଏବେ ଧୀରେ ଧୀରେ ଶିଖା ବିସ୍ତାର କରିଛି । ଅହଲ୍ୟା ଜାଣନ୍ତି, ଅଚିରେ ସେ ସେଇଥିରେ ଜଳିପୋଡ଼ି ଭସ୍ମ ହୋଇଯିବେ । ଭସ୍ମ ହୋଇଯିବ, ତାଙ୍କର ଏତେ ଆୟାସରେ ସଞ୍ଚିତ ପୁଣ୍ୟରାଶି । ସେ କ'ଣ କରିବେ ?

ଏତେକାଳ ଧରି ସେ ଯେଉଁ ଶାସ୍ତ୍ରପୁରାଣ ପଢ଼ିଥିଲେ, ଏଇ ମୁହୂର୍ତ୍ତରେ ସେ ସବୁ ମନେ ହେଉଛି ନିର୍ଜ୍ଜଳା ମିଥ୍ୟା । ଦେହର ଦାବି ହିଁ ତାଙ୍କ ଆଗରେ ବଡ଼ହୋଇ ଦେଖାଯାଉଛି । ସେ ତ ସହଜେ ନାରୀ- ଅବଳା- ଏ ବିଷମ ପରୀକ୍ଷାରୁ ଉଦ୍ଧାର ପାଇବାର ଶକ୍ତି କ'ଣ ତାଙ୍କର ଅଛି ?

ଇନ୍ଦ୍ର ନୀରବରେ ଅହଲ୍ୟାଙ୍କୁ ଲକ୍ଷ୍ୟ କରୁଥିଲେ । ରାତ୍ରିର ନିର୍ଜ୍ଜନତା ଭେଦ କରି ଶୁଣାଯାଉଛି ଝିଲ୍ଲୀର ନିରବଚ୍ଛିନ୍ନ ନିଃସ୍ୱନ ଆଉ ପୁଣି ରାତ୍ରିଚର ପଶୁପକ୍ଷୀଙ୍କର ସାମୟିକ ଚିତ୍କାର । ହସ୍ତୀର ବୃଂହଣ, ବ୍ୟାଘ୍ରର ଗର୍ଜ୍ଜନ- ସବୁ ଭିତରୁ ଶୁଣାଯାଉଛି ସେଇ ଆଦିମ ପିପାସାର ଆହ୍ୱାନ । ଅହଲ୍ୟାଙ୍କର ମନ ଭିତରେ ଯେଉଁ ବିପ୍ଳବ ସୃଷ୍ଟି ହୋଇଛି, ତାହା ତାଙ୍କ ନିକଟରେ ଅସ୍ପଷ୍ଟ ରହିନାହିଁ । ସେ ତରଳିବାକୁ ଆରମ୍ଭ କରିଛନ୍ତି । ଯୁଗ ଯୁଗର ସଂସ୍କାର ତାଙ୍କର ଗତିପଥରେ ପ୍ରତିବନ୍ଧକ ହୋଇ ଠିଆ ହୋଇଛି । ସେଇଥାକୁ କୌଣସିମତେ ହଟାଇ ପାରିଲେ ତାଙ୍କର କାମନା ପୂର୍ଣ୍ଣ ହେବ ।

ଅହଲ୍ୟା ରୁଦ୍ଧ କଣ୍ଠରେ କହିଲେ, ''ବାସବ, ଏଯେ ଅସମ୍ଭବ ।''

ଦୃଢ଼ କଣ୍ଠରେ ଇନ୍ଦ୍ର କହିଲେ, ''ସଂସାରରେ ଅସମ୍ଭବ ବୋଲି କିଛି ନାହିଁ ଦେବୀ । ଏ ସବୁ ସ୍ୱାର୍ଥପର ମଣିଷର ନିଜସ୍ୱ ଚିନ୍ତା । ଦେବଲୋକ ସଂସ୍କାର ମୁକ୍ତ, ଏକଥା ତ ତମେ ନିଶ୍ଚୟ ଜାଣିଥିବ । ସେଥିରେ ଥବା କେଉଁ ପ୍ରଜାତି ଅଶୁଦ୍ଧ ହୋଇଯାଇଛି ?''

ଅହଲ୍ୟା ନିର୍ବୋଧ ଅଜ୍ଞାନୀ ସାଧାରଣ ନାରୀ ନୁହନ୍ତି । ଶାସ୍ତ୍ରପୁରାଣରେ ତାଙ୍କର ମଧ କିଛି କିଛି ପ୍ରବେଶ ଅଛି । ନ୍ୟାୟ ନୀତି, ପାପ ପୁଣ୍ୟର କଥା ତାଙ୍କୁ ମଧ ଜଣାଅଛି । ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଯେତେବେଳେ ନିଜର କନ୍ୟା ସରସ୍ୱତୀଙ୍କ ଆଡ଼େ ଲାଳସାସିକ୍ତ ଦୃଷ୍ଟି ପକାଇଥିଲେ ସେତେବେଳେ କେଉଁଠି ଥିଲା ତାଙ୍କର ନୀତିବୋଧ ? ଚନ୍ଦ୍ର ଯେତେବେଳେ ଗୁରୁପତ୍ନୀ ହରଣ କରିଥିଲେ, ସେତେବେଳେ ତାଙ୍କୁ କ'ଣ ପାପପୁଣ୍ୟ, ନ୍ୟାୟ ଅନ୍ୟାୟର ପାଠ ଜଣାନଥିଲା ? ପାଳନକର୍ତ୍ତା ବିଷ୍ଣୁ ଯେତେବେଳେଅସୁର ପତ୍ନୀ ତୁଳସୀର ସତୀତ୍ୱ ଅପହରଣ କରିଥିଲେ, ସେତେବେଳେ କେଉଁଠି ଥିଲା ତାଙ୍କର ସଂସ୍କାର ? କେଉଁ ଦେବତା ଅବା ଏଇ ଦୋଷରୁ ମୁକ୍ତ ? ଛଳନାର ଅନ୍ୟତମ ସିନା ଦେବତ୍ୱ ।

ଦେବରାଜ ହୁଏତ ଠିକ୍ କଥା କହିଛନ୍ତି । ପରିସ୍ଥିତିର ପ୍ରୟୋଜନ ମିଟାଇବା ହିଁ ହେଉଛି ବୁଦ୍ଧିମାନ୍‌ର କାର୍ଯ୍ୟ । ସଂସାରରେ ପାପପୁଣ୍ୟ, ନୀତିଅନୀତି ଏସବୁ ଅସହାୟ, ଦୁର୍ବଳ ମଣିଷ ପାଇଁ । ଯେ ନୀତି ପ୍ରସ୍ତୁତ କରିବ, ସେ ତ ତା'ର ଉର୍ଦ୍ଧ୍ୱରେ ରହିବ ହିଁ ରହିବ । ପାପପୁଣ୍ୟର ସୀମାରେଖା ଯିଏ ନିର୍ଣ୍ଣୟ କରିବ, ସେ ତା'ର ବାହାରେ ରହିବା ହିଁ ସ୍ୱାଭାବିକ ।

ପ୍ରକୃତରେ ଗୌତମଙ୍କ ସଂସାରରେ ତାଙ୍କୁ ଯାହା ମିଳିଛି, ତାକୁ ଜୀବନ କୁହାଯାଇ ପାରିବ ନାହିଁ । ଆଚାର ବିଚାର, ବ୍ରତ ଉପବାସ, ପୂଜା ଅର୍ଚ୍ଚନାକୁ ନେଇ ଜୀବନର ଯେଉଁ ରୂପ, ତାହା ଏକ ଉଚ୍ଛଳ ଯୌବନା ତରୁଣୀ ପାଇଁ ନୁହେଁ । ମିଳନରେ ହିଁ ସଂସାରୀ ଜୀବନର ପୂର୍ଣ୍ଣତା । କୃଚ୍ଛ୍ରସାଧନା ଜୀବନର ଆଉ ଏକ ଦିଗ । ତା'ର ସମୟ ସ୍ୱତନ୍ତ୍ର ।

ଅହଲ୍ୟା କ'ଣ ଅନ୍ୟ ଏକ ଜୀବନର ସ୍ୱପ୍ନ ଦେଖିନାହାନ୍ତି ? ସଂସାରର ଆଉ ପାଞ୍ଚଜଣ ସାଧାରଣ ନାରୀଙ୍କର ସ୍ୱାଭାବିକ ଜୀବନ ପ୍ରତି ତାଙ୍କର କ'ଣ ଲୋଭ ହୋଇନାହିଁ ? ଅରଣ୍ୟଚାରୀ ଆଦିବାସୀ ତରୁଣ-ତରୁଣୀଙ୍କର ମୁକ୍ତ ଜୀବନଧାରା ତାଙ୍କ ରକ୍ତରେ କ'ଣ ଉତପ୍ତ ଅଗ୍ନିଶିଖାର ତରଳ ପ୍ଲାବନ ସୃଷ୍ଟି କରିନାହିଁ ? ବଳିଷ୍ଠ ପୁରୁଷର ଉଦ୍ଦାମ ଆଲିଙ୍ଗନ ଭିତରେ ନିଜକୁ ନିଷ୍ପେଷିତ କରିଦେବା ପାଇଁ, ତାଙ୍କର ମନ କ'ଣ ବ୍ୟାକୁଳ ହୋଇନାହିଁ ?

ମାତ୍ର ଯେତେଥର ସେ ନିଜର ବଞ୍ଚିତ ନାରୀତ୍ୱର ଦାବୀ ନେଇ ଗୌତମଙ୍କ ପାଖରେ ପହଞ୍ଚିଛନ୍ତି, ସେତେଥର ତାଙ୍କୁ ସାଧନାର କଥା, ସଂଯମର କଥା, ନଶ୍ୱରତାର କଥା ଶୁଣି ପଛକୁ ଫେରିବାକୁ ପଡ଼ିଛି । ଦେହ ନଶ୍ୱର, ସଂସାର ଅନିତ୍ୟ- ଏ କଥା ସେ ଜାଣନ୍ତି । ମାତ୍ର କେବେ କ'ଣ ଘଟିବ, ଏଥିପାଇଁ ବର୍ତ୍ତମାନକୁ ପୂରାପୂରି ଅସ୍ୱୀକାର କରିଯିବା କଥାଟିରେ ତାଙ୍କର ହୃଦ୍‌ବୋଧ ହୁଏନାହିଁ । ମୃତ୍ୟୁର ଶତେକ ବର୍ଷ ପୂର୍ବରୁ ଆପାଦମସ୍ତକ କମ୍ବଳ ଘୋଡ଼ିହୋଇ ତା'ର ଆବାହନ କରିବା ବ୍ୟବସ୍ଥା ତାଙ୍କୁ ମନେହୁଏ- ନିତ୍ୟାନ୍ତ ହାସ୍ୟାସ୍ପଦ ।

ତଥାପି ସେ ଏ ଜୀବନକୁ ମାନି ନେଇଥିଲେ । ଏକଥା ସତ୍ୟ ଯେ ସେ ମହର୍ଷି ଗୌତମଙ୍କୁ ଦୀର୍ଘକାଳ ସହ୍ୟ କରି ପାରୁନଥିଲେ । ଯଥାସମ୍ଭବ ତାଙ୍କର ସଂସର୍ଗ ଏଡ଼ାଇ ଯନ୍ତ୍ରବତ୍ ନିଜର କର୍ତ୍ତବ୍ୟ କରି ଚାଲିଥଲେ । ତହିଁରେ ଗୌରମଙ୍କର କୌଣସି ବିକାର ନ ଥିଲା । ଦେହର ଭାଷା ସେ ହୁଏତ କିଛିଟା ବୁଝୁଥିଲେ, ମାତ୍ର ମନର ଭାଷା ପଢ଼ିବାକୁ କୌଣସି ଶିକ୍ଷା ତାଙ୍କର ନ ଥିଲା । ସେ ବୁଝୁଥିଲେ ସବୁ ଠିକ୍ ଅଛି । ସବୁ ଚାଲିଛି ତାଙ୍କରି ବ୍ୟବସ୍ଥା ପ୍ରକାରେ ।

ଅହଲ୍ୟାଙ୍କ କାନରେ ମୁଗ୍ଧପୁରୁଷର ସ୍ତୁତି ବଜ୍ରଧ୍ୱନି ତୁଲ୍ୟ ନିନାଦିତ ହେଉଥିଲା । ଇନ୍ଦ୍ର କହୁଥିଲେ, ''ଯୌବନରେ ବାର୍ଦ୍ଧକ୍ୟଶୋଭୀ ବଲ୍‌କଳ ବଦଳରେ ସୂକ୍ଷ୍ମଚୀନାଂଶୁକ ହିଁ ହେଉଛି ତମର ଉପଯୁକ୍ତ ପରିଧାନ । ଥରେ ମୋ ସହିତ ଅମରାବତୀ ଚାଲ । ଶଚୀ ହେବେ ତମର ନର୍ମ ସହଚରୀ । ଅପ୍‌ସରାମାନେ ହେବେ ତମର ପରିଚାରିକା । ଦେବପୁରୀ ତୁମକୁ କିଭଳି ସ୍ୱାଗତ ଜଣାଉଛି, ତମେ ଦେଖିବ ।

ଅହଲ୍ୟାଙ୍କ ପ୍ରତିରୋଧର ବନ୍ଧ ଭାଙ୍ଗି ପଡ଼ିଥିଲା । ସେ କହିଲେ ଦେବେନ୍ଦ୍ର, ସଂଯମର ଏଇ ନିଚ୍ଛିଦ୍ର ପୃଥିବୀ ଭିତରେ ଅହଲ୍ୟା ପ୍ରକୃତରେ ଶ୍ୱାସରୁଦ୍ଧ ହୋଇ ପଡ଼ିଲାଣି । ତମର ଏ ଯେଉଁ ଆଞ୍ଜୁଳାଏ ସ୍ୱଚ୍ଛ ବାୟୁ, ତାକୁ ତେଣୁ ସେ ବର୍ତ୍ତମାନ ଗ୍ରହଣ କରି ନେଉଛି । କାଲି ହୁଏତ ଇତିହାସ କହିବ ଅହଲ୍ୟା ଅସତୀ, ଦେହବିଳାସିନୀ, ମହର୍ଷି ଗୌତମଙ୍କର ପତ୍ନୀ ହେବାର କୌଣସି ଯୋଗ୍ୟତା ତା'ର ନ ଥିଲା । ତାକୁ ମୁଁ ମଥାପାତି ଗ୍ରହଣ କରିନେବି । ଭବିଷ୍ୟତ ସମ୍ଭାବନାରେ ମୁଁ ଆଉ ମୋର ବର୍ତ୍ତମାନକୁ ହା-ହୁତାଶମୟ କରିପାରିବି ନାହିଁ । ତେବେ ମୋର ମଧ ସର୍ତ୍ତ ଅଛି ।''

ଅଧୈର୍ଯ୍ୟ ହୋଇ ଇନ୍ଦ୍ର କହିଲେ, ''ତମର ସମସ୍ତ ସର୍ତ୍ତ ପାଳନ କରିବାର ପ୍ରତିଶ୍ରୁତି ମୁଁ ତୁମକୁ ଦେଉଛି । ଅବିଳମ୍ବେ ପ୍ରକାଶ କର ।''

ଅହଲ୍ୟା କହିଲେ, ''ମୁଁ ହିନ୍ଦୁନାରୀ, ପତି ବ୍ୟତୀତ ଅନ୍ୟ କୌଣସି ପୁରୁଷ ସହିତ ମିଳିତ ହେବା ମୋ ପକ୍ଷରେ ସମ୍ଭବ ନୁହେଁ । ପୁଣି ଏ ହେଉଛି ଗୌତମଙ୍କ ଆଶ୍ରମ । ତାଙ୍କ ଛଡ଼ା ଏ ଆଶ୍ରମରେ ଅନ୍ୟ କାହାରି ସଂସର୍ଗରେ ଆସିବା ମୋ ପକ୍ଷରେ ସମ୍ଭବ ନୁହେଁ ।

ଇନ୍ଦ୍ର ଚକିତ ହେଲେ । ସର୍ତ୍ତର ଦ୍ୱିତୀୟ ଚରଣଟି କୌଣସି ସମସ୍ୟା ନୁହେଁ । ମାତ୍ର ପ୍ରଥମାର୍ଦ୍ଧ ? ଯଦି ଗୌତମ ହିଁ ଅହଲ୍ୟାଙ୍କ ଜୀବନର ଏକମେବାଦ୍ୱିତୀୟ ପୁରୁଷ, ତେବେ ସେଠାରେ ଇନ୍ଦ୍ରଙ୍କର ସ୍ଥାନ କେଉଁଠି ? ସେ ତ ଆଉ ଗୌତମ ହୋଇପାରିବେ ନାହିଁ । ସେ ନିର୍ବିକାର ଭାବରେ ବସିଥିବା ଅହଲ୍ୟାଙ୍କ ଆଡ଼କୁ ଅନାଇ ଅଗତ୍ୟା କହିଲେ-ଦେବୀ !

ଅହଲ୍ୟା ବାଧାଦେଇ କହିଲେ, ''ହୁଏତ ଗୌତମ, କିମ୍ବା କେହି ନୁହେଁ ।''

ଇନ୍ଦ୍ର କହିଲେ, ''କିନ୍ତୁ ଏ କିପରି ସମ୍ଭବ ?''

ଅହଲ୍ୟା ଉତ୍ତର ଦେଲେ, ''ତା' ତ ମୁଁ କହିପାରିବି ନାହିଁ । ମୋର କହିବା କଥା ମଧ ନୁହେଁ । ଆପଣ ଦେବରାଜ । ମର୍ତ୍ତ୍ୟର ଏକ ସାମାନ୍ୟ ମାନବୀର ଦୁଃଖରେ ଆପଣ ବିଚଳିତ । ପ୍ରତିକାର କିଭଳି କରିବେ ତା' ବୁଝିବା ତ ଆପଣଙ୍କ ଦାୟିତ୍ୱ ।''

ଇନ୍ଦ୍ର ଅସହାୟ ଭାବରେ ଅହଲ୍ୟାଙ୍କ ଆଡ଼େ ଅନାଇଲେ । ତାଙ୍କର ମନେହେଲା, ଅହଲ୍ୟାଙ୍କ ପ୍ରଶାନ୍ତ ମୁଖମଣ୍ଡଳରେ ସୂକ୍ଷ୍ମ ହାସ୍ୟର କ୍ଷୀଣ ରେଖା ଯେମିତି ପ୍ରକଟିତ ହୋଇ ମୁହୂର୍ତ୍ତକ ମଧ୍ୟରେ ମିଳାଇଗଲା । ଅହଲ୍ୟା କ'ଣ ତେବେ ତାଙ୍କୁ ଉପହାସ କରୁଛନ୍ତି । କିମ୍ବା ମୂଷିକକୁ ହତ୍ୟା କରିବା ପୂର୍ବରୁ ମାର୍ଜାର ତା' ସହିତ ଯେମିତି କିଛିକ୍ଷଣ ନର୍ମକ୍ରୀଡ଼ା ରଚନା କରେ, ଅହଲ୍ୟା ତାଙ୍କୁ ନେଇ ସେଇଆ କରୁଛନ୍ତି ?

ଅହଲ୍ୟାଙ୍କ ଉଦାତ୍ତ କଣ୍ଠରୁ ଶୁଣା ଯାଉଥିଲା- କେହି ଯେପରି କହି ନ ପାରେ, ଅହଲ୍ୟା ଦ୍ୱିଚାରିଣୀ । ଅଗ୍ନିକୁ ସାକ୍ଷୀରଖି ଯେଉଁ ଗୌତମଙ୍କୁ ସେ ଥରେ ଗ୍ରହଣ କରିନେଇଛି, ଜୀବନରେ, ମରଣରେ, ସତ୍ୟରେ, ସ୍ୱପ୍ନରେ ସେ ହିଁ ତା'ର ଗତି, ଇହକାଳରେ ସେଇ-ପରକାଳରେ ସେଇ, ହୋଇପାରେ ସେ ଛାୟା ପୁରୁଷ ।

ଛାୟା ପୁରୁଷ ! ପୁଣି ଗୌତମଙ୍କର । ଅହଲ୍ୟା କ'ଣ କୌଣସି ଗୂଢ଼ ବିଷୟର ଇଙ୍ଗିତ ଦେଉଛନ୍ତି ? ଅହଲ୍ୟାଙ୍କୁ ବୁଝିବା ପ୍ରକୃତରେ କଷ୍ଟକର । ନାରୀ ମନଗହନର ପ୍ରକୃତ ରୂପ କେଉଁ ପୁରୁଷ କେବେ ଅବା ଦେଖିବାକୁ ପାଇଛି ?

ହଠାତ୍ ବିଦ୍ୟୁତ୍ ଚମକ ଭଳି ଗୋଟିଏ ଚିନ୍ତା ଦେବରାଜଙ୍କ ମନକୁ ଆସିଲା । ସେ ଦେବତା-ଦେବରାଜ କାମରୂପୀ । ସେ କୌଣସି ରୂପ ପରିଗ୍ରହ କରିବା ତାଙ୍କ ପକ୍ଷରେ ଅତିସାମାନ୍ୟ ବ୍ୟାପାର । ତେବେ କଣ...

ତରୁଣୀ ରାତ୍ରି ଦ୍ରୁତଗତିରେ ପ୍ରୌଢ଼ତ୍ୱ ଆଡ଼କୁ ଅଗ୍ରସର ହେଉଛି । ଅଚିରେ ରାତ୍ରିର କଳା ଯବନିକା ଅପସରି ଯିବ । ତା'ରି ଭିତରୁ ଆତ୍ମପ୍ରକାଶ କରିବ ଉଷାର ସୁବର୍ଣ୍ଣ ମୁକୁଟ । ଯେଉଁ ରାତ୍ରି ନିଧୁବନ ବିଳାସରେ ପ୍ରମତ୍ତ ହୋଇ ଉଠିବାର ଥିଲା, ତାହା ପରିଣତ ହେବାକୁ ଯାଉଛି ଏକ ନିଷ୍ଫଳ ଦୁଃସ୍ୱପ୍ନରେ । ଇନ୍ଦ୍ର ମନସ୍ଥିର କରି ଚକ୍ଷୁ ମୁଦ୍ରିତ କଲେ ।

ଅହଲ୍ୟାଙ୍କର ଦୀର୍ଘନୟନ ବିସ୍ଫାରିତ ହୋଇ ଉଠିଲା । ଏ କ'ଣ ସେ ଦେଖୁଛନ୍ତି ? ତାଙ୍କ ଆଗରେ ସଶରୀରେ ଦଣ୍ଡାୟମାନ ରହିଛନ୍ତି ତାଙ୍କର ସ୍ୱାମୀ ଗୌତମ । ସେ କେମିତି ଏଠାକୁ ଆସିବେ ? ତାଙ୍କର ତ ଏତେ ବେଳକୁ ନୈମିଷାରଣ୍ୟରେ ଘୋର ତପସ୍ୟାରେ ନିମଗ୍ନ ରହିବା କଥା । ଏତେ ଅଳ୍ପ ସମୟ ଭିତରେ ଦେବରାଜ ଅବା କୁଆଡ଼େ ଅନ୍ତର୍ହିତ ହୋଇଗଲେ ?

ଗୌତମଙ୍କ ସ୍ୱଭାବ ଗମ୍ଭୀର, ମୁଖମଣ୍ଡଳରେ ବିଳୋଳ ହାସ୍ୟ । ଶରୀରରେ ମୃଦୁ କମ୍ପନ । ସ୍ଖଳିତ କଣ୍ଠରେ ସେ ଡାକିଲେ, "ଦେବୀ, ଦେବୀ ଅହଲ୍ୟା ।"

ଆଶ୍ଚର୍ଯ୍ୟ; ପର୍ବତ ଶିଖରେ ପଦ୍ମ ବିକଶିତ ହେବା କେବେ ଅବା ସମ୍ଭବ ହୋଇପାରେ । ମାତ୍ର ଗୌତମଙ୍କ ମୁହଁରେ ଏଭଳି ଆବେଗମୁଖର ଡାକ ! ଏ କିଭଳି ସମ୍ଭବ ? ଅହଲ୍ୟା କିଛି ବୁଝିପାରୁ ନଥିଲେ । ଅସମୟରେ ତପସ୍ୟାରୁ ଫେରି ଆସିଥିବା

ସ୍ୱାମୀଙ୍କୁ ସେ କେଉଁଭଳି ଭାବରେ ଅଭ୍ୟର୍ଥନା ଜଣାଇବେ, ତା' ବି ତାଙ୍କର ଚିନ୍ତାର ଗଳିପଥକୁ ଆସୁନଥିଲା ।

ଇନ୍ଦ୍ରଙ୍କୁ ସେ ଜଣାଇ ଦେଉଥିଲେ ଗୌତମ କିମ୍ବା ଅନ୍ୟ କେହି ନୁହେଁ । ଇନ୍ଦ୍ର ସମୟ ବୁଝି ଭୀରୁ ଭଳି ପଳାୟନ କରିଛନ୍ତି । ଦୈବ ପ୍ରେରିତ ଭଳି ହଠାତ୍ ଆସି ଉପସ୍ଥିତ ହୋଇଛନ୍ତି ଗୌତମ ନିଜେ । କିନ୍ତୁ ଏ ଅସମ୍ଭବ ସମ୍ଭବ ହେଲା କିପରି ? ପୁଣି ଗୌତମଙ୍କ ମୁହଁରେ ସ୍ମିତହାସ୍ୟ ? ଅବିଶ୍ୱାସ୍ୟ !!

କମ୍ପିତ ପଦକ୍ଷେପରେ ଅହଲ୍ୟାଙ୍କ ଆଡ଼କୁ ଅଗ୍ରସର ହେଉ ହେଉ ଗୌତମ କହୁଥିଲେ ପ୍ରିୟେ, ଚାରୁଶୀଳେ- କଣ୍ଠ ତାଙ୍କର ଅସ୍ୱାଭାବିକ ଭାବେ କୋମଳ ଶୁଭୁଥିଲା । ଅହଲ୍ୟା ଆଶ୍ଚର୍ଯ୍ୟ ହେଲେ । ଭାବୁଥିଲେ ଗୌତମଙ୍କର ଏ ହେଲା କ'ଣ ?

ଗୌତମ ଅହଲ୍ୟାଙ୍କ ହାତ ଧରିଥିଲେ । ତାଙ୍କର ସ୍ୱେଦସିକ୍ତ ହସ୍ତରେ ମୃଦୁ କମ୍ପନ । ଗାଢ଼ ଭାବରେ ତାଙ୍କୁ ଆଲିଙ୍ଗନ ପାଶରେ ବାନ୍ଧି ଚକିତ ଅହଲ୍ୟାଙ୍କର ଅଧର ନିପୀଡ଼ନ କରୁକରୁ ଗୌତମ କହୁଥିଲେ, ''ନାରୀର ଅଧର ପଲ୍ଲବର କୋମଳ ସ୍ପର୍ଶ ହିଁ ହେଉଛି ସୃଷ୍ଟିର ଏକମାତ୍ର ସତ୍ୟ, ସାଧନ ମିଥ୍ୟା, ଭଜନପୂଜନ ସବୁ ମିଥ୍ୟା ।''

ଗୌତମଙ୍କର ଆଗ୍ରାସୀ ଆଲିଙ୍ଗନର କଠିନତା ଭିତରେ ଅହଲ୍ୟାଙ୍କର ଚିର ବୁଭୁକ୍ଷୁ ଶରୀର ମଧ୍ୟ ବେତସ ଲତାଭଳି କମ୍ପିବାକୁ ଆରମ୍ଭ କରିଥିଲା । ନିଜ ଭିତରେ ସେ ଅନୁଭବ କରୁଥିଲେ ଆଦ୍ୟ ଆଷାଢ଼ର ପ୍ରଥମ ବାରିପାତରେ ମାଟିର ରୋମାଞ୍ଚ । ସେ କାମନା କରୁଥିଲେ ଏ ଆଲିଙ୍ଗନ ଆହୁରି ନିବିଡ଼ ହେଉ, ସ୍ପର୍ଶ ହେଉ ଆହୁରି କଠିନ । ଇନ୍ଦ୍ରଙ୍କର ସମସ୍ତ ଅପବାଦ ମିଥ୍ୟା ପ୍ରମାଣିତ ହେଉ ।

ଏକ ଅନାସ୍ୱାଦିତ ପୁଲକରେ ଅହଲ୍ୟାଙ୍କର ସମସ୍ତ ଶରୀର ଭରି ଯାଉଥିଲା । ସେ ଧୀରେ ଧୀରେ ଚେତନା ହରାଉଥିଲେ ।

କୃଷ୍ଣାଜୀନ ଶଯ୍ୟାରେ ଗୌତମଙ୍କ ଗାଢ଼ ଆଶ୍ଳେଷ ଭିତରେ ଅହଲ୍ୟାଙ୍କର ନିଦ୍ରାଭଙ୍ଗ ହୋଇଥିଲା । ସାରାଶରୀର ବ୍ୟାପୀ ଏକ ଅନନୁଭୂତ ସୁଖାବହ କ୍ଳାନ୍ତି । ଗୌତମ ତାଙ୍କୁ ଆହୁରି ନିବିଡ଼ ଭାବରେ ଜଡ଼ାଇ ଧରି ଅସ୍ପଷ୍ଟ ସ୍ୱରରେ କ'ଣ କହି ଯାଉଛନ୍ତି । ତାଙ୍କର ଉତପ୍ତ ନିଶ୍ୱାସ ଅହଲ୍ୟାଙ୍କ ମୁଖମଣ୍ଡଳରେ, ବକ୍ଷରେ, ଚାରିଆଡ଼େ । ଅହଲ୍ୟା ଭାବୁଛନ୍ତି, ଏଇଭଳି ରାତ୍ରି ତାଙ୍କ ଜୀବନରେ କେବେ ଆସିଥିଲା ? ଏଇଥିପାଇଁ ଶୂନ୍ୟ ଶଯ୍ୟାରେ କେତେ ବିନିଦ୍ର ରଜନୀ ତାଙ୍କୁ ଯାପନ କରିବାକୁ ପଡ଼ିଛି । ଗୌତମଙ୍କ ଭିତରେ ଏତେ ଉଷ୍ଣତା ଥିଲା, ସେକଥା ସେ ଇତି ପୂର୍ବରୁ ଜାଣି ନ ଥିଲେ ତ । ଆଜି ହଠାତ୍...

ଆଜି ହଠାତ୍ ଦେବରାଜଙ୍କର ଆଶ୍ରମକୁ ଆଗମନ, ତାଙ୍କୁ ପ୍ରଣୟ ନିବେଦନ-- ସହସା ତାଙ୍କର ଅନ୍ତର୍ଦ୍ଧାନ ହୋଇଯିବା ଏବଂ ଗୌତମଙ୍କର ନୂଆ ରୂପରେ ଆତ୍ମପ୍ରକାଶ କରିବା, ଏସବୁ କେମିତି ସ୍ୱପ୍ନ ଭଳି ମନେ ହେଉଛି । ଗୌତମ କହୁଛନ୍ତି, ନୈମିଷାରଣ୍ୟରେ

ମୃଗଦମ୍ପତିଙ୍କର ପ୍ରଣୟ ଲୀଳା ଦର୍ଶନରେ ତାଙ୍କର ମନ ବିଚଳିତ ହୋଇ ଉଠିବାରୁ ସେ ଅହଲ୍ୟାଙ୍କ ନିକଟକୁ ଫେରି ଆସିଛନ୍ତି । ସେ ପ୍ରଥମେ ଗୃହୀ, ତା'ପରେ ସନ୍ୟାସୀ । ଗୃହସ୍ଥଧର୍ମ ପାଳନ କରିବା ହିଁ ହେଉଛି, ତାଙ୍କର ପ୍ରଥମ କର୍ତ୍ତବ୍ୟ । ଏସବୁ ତ ଠିକ୍ କଥା । ମାତ୍ର ଏତେଦିନ ପର୍ଯ୍ୟନ୍ତ ଏଇ ସଦ୍‌ବୁଦ୍ଧିଟିକକ ତାଙ୍କର କେଉଁଠି ଥିଲା ? ଅରଣ୍ୟ ପଶୁର ପ୍ରଣୟଲୀଳା କ'ଣ ସେ ଇତିପୂର୍ବରୁ ଦେଖି ନ ଥିଲେ ?

ହଠାତ୍ ଅହଲ୍ୟାଙ୍କ ମନରେ ସନ୍ଦେହର ଅଗ୍ନିଶିଖାଟିଏ ଧିକିଧିକି ହୋଇ ଜଳିବାକୁ ଆରମ୍ଭ କଲା । ଖୁବ୍ ଅଳ୍ପ ହେଲେ ମଧ ଇତିପୂର୍ବରୁ ଗୌତମଙ୍କର ଯେଉଁ ସ୍ପର୍ଶ ସେ ପାଇଛନ୍ତି, ତହିଁରେ ଏତେ ଉଷ୍ଣତା ଥିବା ଭଳି ତାଙ୍କର ସ୍ମରଣ ହେଉନାହିଁ ତ । ଏ ତେବେ କ'ଣ ଗୌତମଙ୍କ ଛଦ୍ମବେଶରେ ଅନ୍ୟ କେହି ? ଏ କ'ଣ ଗୌତମବେଶୀ କୌଣସି ଯକ୍ଷରକ୍ଷ ଗନ୍ଧର୍ବ କିନ୍ନର ଅବା ଦେବତା ? ସେ କ'ଣ ତେବେ ଦ୍ୱିଚାରିଣୀ ହୋଇଛନ୍ତି ?

ଅହଲ୍ୟା ଆଗକୁ ଆଉ ଚିନ୍ତା କରି ପାରୁନଥିଲେ । ଗୌତମ ହୁଅନ୍ତୁ, ଅବା ଯେ କେହି ହୁଅନ୍ତୁ, ସେ ନାରୀତ୍ୱର ପ୍ରଥମ ମୂଲ୍ୟ ଦେଇଛନ୍ତି, ତାକୁ ସାର୍ଥକ କରିଛନ୍ତି । ଜୀବନରେ ଯେ ଏତେ ସୁଖ ଥାଇପାରେ, ତାହାର ପ୍ରଥମ ସ୍ୱାଦ ଚଖାଇଛନ୍ତି । ଏଥିପାଇଁ ସେ ତାଙ୍କ ନିକଟରେ କୃତଜ୍ଞ ।

ବିରାମଦାୟିନୀ ରାତ୍ରି ଅତିକ୍ରାନ୍ତ ହେବାକୁ ଯାଉଛି । ନିଦ୍ରୋତ୍‌ଥିତ ପକ୍ଷୀକୁଳର ପ୍ରଥମ କାକଳି ବନଭୂମିର ନିସ୍ତବ୍ଧତା ଭଙ୍ଗକରି ଆବହ ସଙ୍ଗୀତ ରଚନା କରି ସାରିଲାଣି । ଏଥର ପୂର୍ବତୋରଣ ଭେଦ କରି ଉଷାର ମହୁଡ଼ ଦେଖାଯିବ । ଏଇ ବ୍ରାହ୍ମମୂହୂର୍ତ୍ତରେ ପ୍ରତିଦିନ ଶଯ୍ୟା ତ୍ୟାଗ କରିବା ହେଉଛି ଅହଲ୍ୟାଙ୍କର ଅଭ୍ୟାସ । ଆଜି କିନ୍ତୁ ଏକ ଆଳସ୍ୟ ତାଙ୍କର ସାରା ଅଙ୍ଗରେ ଲାଗି ରହିଛି । ମନେ ହେଉଛି, ଆଜିର ଏ ରାତି ଆଦୌ ନ ପାହାନ୍ତା କି ? ତାଙ୍କର ମନ ଜାଣି ଗୌତମ ବାହୁର ବନ୍ଧନକୁ ଆହୁରି ନିବିଡ଼ କରି ଆଣିଲେ । ଅହଲ୍ୟାଙ୍କର ସମସ୍ତ ଚିନ୍ତା ହଜିଗଲା ।

ଗୌତମଙ୍କ କାନରେ ବାଜୁଥିଲା ଅହଲ୍ୟାଙ୍କର ସେଇ ଇଙ୍ଗିତପୂର୍ଣ୍ଣ ବାଣୀ । ଜୀବନରେ, ମରଣରେ, ସ୍ୱପ୍ନରେ, ସତ୍ୟରେ ଏକମାତ୍ର ଗୌତମ ହିଁ ଅହଲ୍ୟାର ପ୍ରାଣର ଦୋସର । ହୋଇପାରେ ସେ ଗୌତମଙ୍କର ଛାୟା ପୁରୁଷ । ଏହା ଅପେକ୍ଷା ଅହଲ୍ୟା ଆଉ କେତେ ସ୍ପଷ୍ଟ ହୋଇ ପାରିଥାଆନ୍ତେ ? ଲଜ୍ଜା ହେଉଛି ନାରୀର ଭୂଷଣ । ତାହା କଟାଇ ସ୍ପଷ୍ଟ ଭାଷାରେ ନିଜକୁ ପ୍ରକାଶ କରିବା କ'ଣ ଏଡ଼େ ସହଜ ହୋଇଛି ? ବୁଦ୍ଧିମାନ ପୁରୁଷ ପାଇଁ ସୂଚନା ହିଁ ପର୍ଯ୍ୟାପ୍ତ ।

ଅହଲ୍ୟା ନିଜର ଶପଥ ରକ୍ଷା କରିଛନ୍ତି । ସେ ମଧ ଅହଲ୍ୟାଙ୍କ ଶରୀରର ସମସ୍ତ ମାଦକତା ଶୋଷି ନେଇଛନ୍ତି । ତାଙ୍କର ମନ କାମନା ପୂର୍ଣ୍ଣ ହୋଇଛି । ଅହଲ୍ୟା ତାଙ୍କୁ

ଯେଉଁ ସୁଖ ଦେଇଛନ୍ତି, ଏଥିପାଇଁ ସେ ତାଙ୍କ ପାଖରେ କୃତଜ୍ଞ । ଏଥର ସେ ବିଦାୟ ନେବେ । ହୁଏତ ଆଉ ଅହଲ୍ୟାଙ୍କ ସହିତ ତାଙ୍କର ଦେଖାହେବ, ନହୋଇ ବି ପାରେ । ସେଥିରେ କିଛି ଯାଏ ଆସେ ନାହିଁ । ମୁହୂର୍ତ୍ତଜୀବୀ ଦେବତାର ହୃଦୟରେ ପ୍ରେମ ଜାଗେ ନାହିଁ । ସେମାନେ ଭୋଗ କରନ୍ତି, ଦାୟିତ୍ୱ ନିଅନ୍ତି ନାହିଁ ।

ଅଯତ୍ନବର୍ଦ୍ଧିତ ପୁଷ୍ପଶ୍ରୀ ମଣ୍ଡିତ ଲତାଟିଏ ଅନାଦରରେ ଭୂଇଁରେ ଲୋଟୁଥିଲା । ସେଇଆକୁ ସେ କ୍ଷଣକ ପାଇଁ ଉପରକୁ ଉଠାଇଛନ୍ତି । ବକ୍ଷରେ ସ୍ଥାନ ଦେଇ ଆଶ୍ଳେଷି ଧରିଛନ୍ତି । ଲତାର ସୁରଭିକୁ ନିଜ ଭିତରକୁ ଟାଣି ନେଇଛନ୍ତି । ନିଜର ଶକ୍ତି ଆଉ ସାମର୍ଥ୍ୟକୁ ଅନୁଭବ କରିବା ପାଇଁ ସୁଯୋଗ ଦେଇଛନ୍ତି ।

ଏଥର ତାଙ୍କର ସମୟ ଶେଷ ହୋଇଛି । ସେ ଫେରିଯିବେ, ତାଙ୍କର କ୍ଷମତା, ପ୍ରତିପତ୍ତିର ସେଇ ନିତିଦିନିଆ ଜଗତକୁ । ଅହଲ୍ୟା ପଛରେ ରହିଯିବେ । ହୁଏତ ଏଇ ଗୋଟିଏ ରାତ୍ରିର ଅନୁଭୂତିକୁ ସମ୍ବଳ କରି ଜୀବନ କାଟିବେ । ଏହାହିଁ ହେଉଛି ଅହଲ୍ୟାଙ୍କର ନିୟତି । ଗୌତମ ଶେଷଥର ପାଇଁ ଅହଲ୍ୟାଙ୍କ ଅଧରରେ ଅଧର ଥାପି ତାଙ୍କ କାନ ପାଖରେ ମୃଦୁ କଣ୍ଠରେ କହିଲେ, ''ଦେବୀ, ଦେବୀ ଅହଲ୍ୟା...

ହଠାତ୍ କାହାର କର୍କଶ କଣ୍ଠର ନିନାଦରେ ଆଶ୍ରମର ନିର୍ଜ୍ଜନତା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା । ସେଇ କଣ୍ଠରୁ ନିର୍ଗତ ହେଉଥିଲା- ଗୌତମୀ, ଆର୍ଯ୍ୟା ଗୌତମୀ ।

କଣ୍ଠସ୍ୱର ନୁହେଁ ତ, ସତେ ଯେମିତି ବଜ୍ରନିର୍ଘୋଷ । ଅହଲ୍ୟାଙ୍କ ତନ୍ଦ୍ରାଚ୍ଛନ୍ନତା ପ୍ରଥମ ଆହ୍ୱାନରୁ ହିଁ ଦୂର ହୋଇ ସାରିଥିଲା । ସେ ତଡ଼ିତ୍ ସ୍ପୃଷ୍ଟ ପରି ଶଯ୍ୟା ଉପରେ ଉଠି ବସିଲେ । ସେ ଜାଣନ୍ତି, ସଂସାରରେ କେବଳ ଜଣେ ହିଁ ତାଙ୍କୁ ଏଇ ନାମରେ ସମ୍ବୋଧନ କରନ୍ତି । ସେ ହେଉଛନ୍ତି ମହର୍ଷି ଗୌତମ ।

ଗୌତମ ଯେବେ ବାହାରୁ ଆସୁଛନ୍ତି, ତେବେ ତାଙ୍କର ଏଇ ଶଯ୍ୟାସଙ୍ଗୀ... ହଠାତ୍ ଶୂନ୍ୟଶଯ୍ୟା ଆଡ଼କୁ ଅନାଇ ଆତଙ୍କରେ ଅହଲ୍ୟାଙ୍କର ଶରୀର କମ୍ପିବାକୁ ଆରମ୍ଭ କଲା । ଉନ୍ମୁକ୍ତ ବାତାୟନ ଦେଇ ବାହାରକୁ ପଳାଉଛି ହୃଷ୍ଟପୁଷ୍ଟ ମାର୍ଜାରଟିଏ । ତା'ରି ଆଡୁ ଭାସି ଆସୁଛି- ବିଦାୟ ଦେବୀ ଅହଲ୍ୟା- ଦେବରାଜ ଇନ୍ଦ୍ର ତମ ନିକଟରେ ଋଣୀ ।

ଏଣେ ବାହାରୁ ବାରମ୍ବାର ବଜ୍ରଗମ୍ଭୀର କଣ୍ଠରୁ ଧ୍ୱନିତ ହେଉଛି, ଗୌତମୀ, ଅହଲ୍ୟା !!!

ନିଜର ବିସ୍ରସ୍ତ ବେଶବାସକୁ ସଂଯତ କରିବାକୁ ଭୁଲିଯାଇ ସ୍ତବ୍ଧ ଅହଲ୍ୟା ବସି ରହିଥିଲେ ପାଷାଣ ପ୍ରତିମା ତୁଲ୍ୟ ।



# ଋତୁର ନାମ ବସନ୍ତ

ମୃଗୁଣୀ ଧାଉଁଛି ।

ଦିଗ୍‌ବିଦିଗ ଶୂନ୍ୟ-ମହାଶୂନ୍ୟରେ ପବନ ବେଗରେ ଉଡ଼ିଚାଲିଛି ଅସହାୟା ଭୟତ୍ରସ୍ତା ମୃଗୁଣୀଟି । ଥରେ ଥରେ ମାତ୍ର ମାଟିରେ ତା'ର ପାଦ ପଡ଼ିଯାଉଛି । କ୍ଷୁଦ୍ର ପୁଚ୍ଛଟି ଆତଙ୍କରେ ମାଂସଳ ଦୁଇ ଝାଂଟ ମଧ୍ୟରେ ଆଶ୍ରୟ ନେଇଛି । ଥରଥର ହୋଇ କମ୍ପୁଚି ତା'ର ଅଷ୍ଟାଙ୍ଗଶରୀର । ଭୟଗ୍ରୀବାକୁ ଥରେ ଥରେ ଫେରାଇ ସେ ଅବସ୍ଥାକୁ ଦେଖି ନେଉଛି । ପଛରେ ସେମିତି ଧାଉଁଛି ତା'ର ସର୍ବସ୍ୱ ଅପହରଣ କରି ନେବା ପାଇଁ ସର୍ବଗ୍ରାସୀ ମହାକାଳ । ତା'ର ସେଇ ଲୋଲୁପ ବିସ୍ତାରିତ ମାଂସ ଲୋଭୀ ବ୍ୟାଦିତ ମୁଖରୁ ଥପ୍‌ଥପ୍ ହୋଇ ସ୍ରବିତ ହେଉଛି ଲାଳ । ସୁତୀକ୍ଷ୍ଣ କରାଳ ଦଂଷ୍ଟ୍ରା ମଧ୍ୟରେ କୋମଳ ମୃଗ ମାଂସକୁ ଚାପି ଦେବା ନିମନ୍ତେ ସେ ଯେମିତି ବଦ୍ଧପରିକର ।

ମୃଗୁଣୀର ଶରୀରରୁ ଶେଷ ଶକ୍ତି ନିଃଶେଷିତ ହେବାରେ ଲାଗିଛି । ସେ ଜାଣେ-ଥରେ ସେଇ ନିଷ୍ଠୁର ଲୁଣ୍ଠନ କର୍ତ୍ତାର କବଳିତ ହୋଇଗଲେ, ସେ ନିଃସ୍ୱ ହୋଇଯିବ । ନିଜର ବୋଲି କହିବାକୁ ତା'ର କିଛି ନ ଥିବ । ଯେକୌଣସିମତେ ତାକୁ ଆତ୍ମରକ୍ଷା କରିବାକୁ ହିଁ ପଡ଼ିବ । ଜୀବନ ମରଣର ଏଇ ସନ୍ଧିକ୍ଷଣରୁ ଯେକୌଣସି ମତେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ । କାମାର୍ତ୍ତ ପୁରୁଷର ପ୍ରଚଣ୍ଡ ରିରଂସା ନିକଟରୁ ଦୂରକୁ ପଳାଇବାକୁ ପଡ଼ିବ । ମାତ୍ର ସେ କ'ଣ ପାରିବ ?

ଅନନ୍ତକାଳ ଧରି ଏଇଭଳି ଧାଉଁଥିଲେ ମଧ୍ୟ ଅନୁସରଣକାରୀ କଦାପି ନିବୃତ୍ତ ହେବ ନାହିଁ । ମୃଗୁଣୀକୁ ପାଇବାର ଲାଳସା ଯେ ପର୍ଯ୍ୟନ୍ତ ତା'ର ପୂର୍ଣ୍ଣନ ହୋଇଛି ସେ ପର୍ଯ୍ୟନ୍ତ ତା'ର ସ୍ୱସ୍ତି ନାହିଁ । ମୃଗୁଣୀ ଏକଥା ଜାଣେ । ସେ ଆହୁରି ମଧ୍ୟ ଜାଣେ, ତା'ର ଦୁର୍ବଳ ଶରୀର ଖୁବ୍ ବେଶୀ ସମୟଯାଏ ଆକ୍ରମଣକାରୀକୁ ପ୍ରତିରୋଧ କରି ପାରିବ ନାହିଁ । ପ୍ରବଳ ହାତରେ ଯୁଗ ଯୁଗ ଧରି ଦୁର୍ବଳର ଯେଉଁ ଦଶା ହୋଇଛି ତାହାର ମଧ୍ୟ ସେଇ ଦଶା ହେବ । ତା' ପୂର୍ବରୁ କୌଣସି ନିରାପଦ ଆଶ୍ରୟ ତା'ର ପ୍ରୟୋଜନ । କେଉଁଠି ମିଳିବ ସେଇ ନିରାପଦ ଆଶ୍ରୟ ଟିକକ ? କେଉଁଠିକି ଗଲେ, ସେ ନିଜର ମହାମୂଲ୍ୟବାନ୍ ସତୀତ୍ୱ-ରତ୍ନକୁ ରକ୍ଷା କରିପାରିବ ? ବରଦ ହସ୍ତ ପ୍ରସାରି ଦେଇ କିଏ ତାକୁ ଅଭୟ ଦେବ ?

କିଛିକ୍ଷଣ ପୂର୍ବରୁ ଦେବରାଜ ଇନ୍ଦ୍ରଙ୍କ ଦ୍ୱାରରୁ ତାକୁ ନିରାଶ ହୋଇ ଫେରିବାକୁ ପଡ଼ିଛି । ବଜ୍ରଧର ଦେବ ସୁନାଶିର-ଯେ କି ବୃତ୍ରଭଳି ଭୟଙ୍କର ରାକ୍ଷସକୁ ହତ୍ୟା କରିଥିଲେ, ହତ୍ୟା ମଧ କରିଛନ୍ତି ଆହୁରି ଅସଂଖ୍ୟ ଦୁରାଚାରୀଙ୍କୁ- ସେ ତାକୁ ଶରଣ ଦେଇ ସୁଦ୍ଧା ଖାଲି ହାତରେ - ଫେରାଇ ଦେଇଛନ୍ତି । ସ୍ୱାର୍ଥ ନ ଥାଇ କିଏ ଅବା କାହିଁକି ନିଜକୁ ବିପଦ ମୁହଁକୁ ଠେଲି ଦେବ ? ଦେବତା ହେଉ ଅବା ମଣିଷ ହେଉ -ବିନା ସ୍ୱାର୍ଥରେ କିଏ ଅବା କାହିଁକି ପର ପାଇଁ ବିପଦ ବରଣ କରିବ ?

ସ୍ୱାର୍ଥମୂଳା-ମେଦିନୀ ।

ଇନ୍ଦ୍ରତ ପ୍ରଥମେ ତାକୁ ଆଶ୍ରୟ ଦେଇଥିଲେ । ଯେକୌଣସି ପ୍ରକାରେ ଉଦ୍ଧତ ଲମ୍ପଟ କବଳରୁ ତାକୁ ରକ୍ଷା କରିବେ ବୋଲି ପ୍ରତିଶ୍ରୁତି ମଧ ଦେଇଥିଲେ । ମାତ୍ର ତାହା ରକ୍ଷା କରି ପାରିଲେ ନାହିଁ ।

ଇନ୍ଦ୍ର ଯଦି ପ୍ରଥମରୁ ସେଇ ଲମ୍ପଟ ଉପରେ ଆକ୍ରମଣାତ୍ମକ ମନୋଭାବ ଦେଖାଇ ଥାଆନ୍ତେ, ତେବେ ଅବା କ'ଣ ହୋଇଥାଆନ୍ତା । ମାତ୍ର ସେ ତାକୁ ନୀତି ଉପଦେଶ ଶୁଣାଇଲେ । ପାପପୁଣ୍ୟର କଥା କହିଲେ । ଚୋରମାନେ ଯଦି ଧର୍ମ କଥା ଶୁଣନ୍ତେ ତେବେ ସୃଷ୍ଟି କେଉଁ ଦିନଠୁଁ ସ୍ୱର୍ଗରେ ପରିଣତ ହୋଇ ସାରନ୍ତାଣି ।

ଅଥବା ସ୍ୱର୍ଗ ପୁରୀରେ କେଉଁ ନ୍ୟାୟ ଅବା ଅଛି ?

ନ୍ୟାୟର ସ୍ୱରୂପ ତ ସେ ନିଜେ କିଛିକ୍ଷଣ ପୂର୍ବରୁ ଶୁଣିଆସିଛି ।

ଇନ୍ଦ୍ରଙ୍କ ମୁହଁରୁ ନୀତିବାଣୀ ଶୁଣି ସେଇ ଲମ୍ପଟ ଟହଟହ ହସିଥିଲା । ତାଚ୍ଛଲ୍ୟ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ କହିଥିଲା - ''ନିଜ ଚରିତ୍ରର ବିଜ୍ଞାପନ ସ୍ୱଦେହରେ ଧରି ବୁଲୁଥିବା ଦେବତାର ମୁହଁରେ ଏ ନୀତିବାଣୀ ! ଦିନରାତି ଆସବ ପାନ ପ୍ରମତ୍ତ ଅପ୍‌ସରାଯୂଥର ଜାନୁଜଘନ ଛାୟାରେ ସୁସୁପ୍ତ, ଦେବତା ପୁଣି ଶୁଣାଇବ ନୈତିକତାର କଥା ! ବାସବ, ତୁମେ ମୋର ଖାଇବା ପତ୍ରରେ ଧୂଳି ଦେଇ ମୋର ମୁହଁ ଆଉ ଖୋଲାଅ ନାହିଁ ।''

ଛଦ୍ମବେଶୀ ମୃଗ ଆଡ଼କୁ ଚାହିଁ ଇନ୍ଦ୍ରଙ୍କର ବାକ୍ୟ ସ୍ଫୁରି ନ ଥିଲା । ହୁଏତ ସେ ମୃଗର ପ୍ରକୃତ ସ୍ୱରୂପ ଜାଣିପାରି ଥିଲେ । ତେଣୁ ପୁଣି ସେଇ ଆକାଶ ପଥ । ପୁଣି ସେଇ ନିରାଶ୍ରୟତା ।

ଏଇ ତେବେ ଦେବତାର ପ୍ରକୃତ ରୂପ ! ନିଜର ଗୋପନ ଅପରାଧର ଆତଙ୍କରେ ସଦା ସନ୍ତ୍ରସ୍ତ ଦେବକୁଳ ଅନ୍ୟକୁ ଆଶ୍ରୟ ଦେବେ କ'ଣ ? ଅବିଚାରିତ ଭୋଗ ଏବଂ

ସଦା ସ୍ୱାଧିକାରପ୍ରମତ୍ତ ଦେବ-ସଂସ୍କୃତିର ଏହାହିଁ ହେଉଛି ପ୍ରକୃତ ରୂପ । ଶକ୍ତି ଆଉ ସାମର୍ଥ୍ୟ ଯେଉଁଠି ସ୍ୱେଚ୍ଛାଚାରିତାର କୁଟିଳ ମାର୍ଗରେ ନିୟତ ଧାବମାନ, ସେଠାରେ ନିରାଶ୍ରୟର କଥା ଭାବୁଛି କିଏ ?

ହୁଏତ ସତତ ଅସୁରକ୍ଷା ଭାବନା ପୀଡ଼ିତ ଦେବଗଣ ମୁହୂର୍ତ୍ତଜୀବୀ ହେବା ହିଁ ହେଉଛି ସେମାନଙ୍କର ନିୟତି । କିଏ କେଉଁଠି କେତେବେଳେ ଦେବପଦର ଆସନଟି ଛଡ଼ାଇ ନେବ, ଏଇ ଭାବନାରେ ସେମାନେ ସର୍ବଦା ବ୍ୟାକୁଳ । ଏଥିରେ ବିଶ୍ୱଜନୀନତାର ଚିନ୍ତା ଆସିବ କେମିତି ?

ମୃଗୁଣୀ ପବନ ଗତିରେ ଆକାଶ ମାର୍ଗରେ ଉଡ଼ି ଯାଉଥିଲା ବେଳେ ଏଇ ସବୁକଥା ଚିନ୍ତା କରୁଥିଲା । ପଛରେ କାମାନ୍ଧ ମୃଗ । ଇନ୍ଦ୍ରଙ୍କର ବିଦାୟକାଳୀନ ବାକ୍ୟ ମୃଗୁଣୀର କାନରେ ବାଜୁଥିଲା । ମୃଗକୁ ସମ୍ବୋଧନ କରି ସେ କହିଥିଲେ, "ରକ୍ଷକ ଯେତେବେଳେ ଭକ୍ଷକର ଭୂମିକାରେ ଅବତୀର୍ଣ୍ଣ ହୁଏ, ସେତେବେଳେ ସଂସାରରୁ ପାପ ପୁଣ୍ୟର ସୀମାରେଖା ଚିରଦିନ ପାଇଁ ବିଲୁପ୍ତ ହୋଇଯାଏ । ଆପଣ ମୁହୂର୍ତ୍ତକର ଆନନ୍ଦ ପାଇଁ ଏ ଯେଉଁ କାମ କରିବାକୁ ଯାଉଛନ୍ତି, ତହିଁରେ ଆକାଶ ଛିଡ଼ିପଡ଼ିବ, ପବନ ସ୍ତବଧ ହୋଇଯିବ । ସୃଷ୍ଟି ରସାତଳଗାମୀ ହେବ । ଆପଣ ଶାନ୍ତ ହୁଅନ୍ତୁ । ନିଜ-ଗୃହକୁ ବାହୁଡ଼ି ଯାଆନ୍ତୁ ।"

ଗର୍ବିତ ମୃଗ ଉତ୍ତର ଦେଇଥିଲା, ମୁଁ ସ୍ରଷ୍ଟା, ମୁଁ ମହାକାଳ, ମୁଁ ସର୍ବଶକ୍ତିମୟ । ମୋର ଆଚରଣ ଉପରେ କଳଙ୍କର ଦାଗ ଲଗାଇବ, ଏଭଳି ଶକ୍ତି କାହାର ଅଛି ?

ଇନ୍ଦ୍ର ଶେଷ ଚେଷ୍ଟା ସ୍ୱରୂପ କହିଥିଲେ - କିନ୍ତୁ ଅଗମ୍ୟ ଗମନ ?

ଅଟ୍ଟହାସ୍ୟ କରି ମୃଗ କହିଥିଲା, "ସେଇଥିପାଇଁ ତ ମୋର ଏ ମୃଗବେଶ । ପଶୁ ମାତ୍ରକେ ହେଉଛନ୍ତି ବିବେକର ଅତୀତ । ସେମାନଙ୍କ ଆଚରଣରେ ସବୁ ଯଥାର୍ଥ । ସବୁ ଗ୍ରହଣୀୟ । ଶାସ୍ତ୍ର ସ୍ୱୟଂ ଏହାକୁ ସମର୍ଥନ କରନ୍ତି ।"

ନିରୂପାୟ ଇନ୍ଦ୍ର ଏଥର ନୀରବରେ ମୃଗୁଣୀ ଆଡ଼କୁ ଅନାଇ ଥିଲେ । ତାଙ୍କର ଆଉ କିଛି କହିବାର ନ ଥିଲା ।

ଧାବମାନା ମୃଗୀ ନିଜ ଅଦୃଷ୍ଟ ବିଷୟରେ ଚିନ୍ତା କରୁଥିଲା । ସ୍ୱୟଂ ବିଧାତା ପୁରୁଷଙ୍କର କନ୍ୟା ରୂପରେ ସେ ସୃଷ୍ଟିର ଆଲୋକ ଦେଖିଥିଲା । ଦେବତାମାନଙ୍କର ଶୈଶବ ନ ଥିଁଏ । ସ୍ୱୟଂ ବିଶ୍ୱଦେବ ନିଜ କଳା କୁଶଳତାର ସମସ୍ତ ଶକ୍ତି ଖଟାଇ ଯେଉଁ ଦିବ୍ୟ ମୂର୍ତ୍ତିଟିକୁ ସେଦିନ ଗଢ଼ିଥିଲେ, ସେଇ ଯେ ହେବ ବିଶ୍ୱସଂସାରର ଶ୍ରେଷ୍ଠ କଳାକୃତି- ଏଥିରେ ସନ୍ଦେହ କରିବାର କ'ଣ ଅଛି ?

କାଟିରେ ସ୍ୱର୍ଣ୍ଣ ଇନ୍ଦୁର ଆଭା, ମୁଖମଣ୍ଡଳରେ ଫୁଲ୍ଲାରବିନ୍ଦର ଦୀପ୍ତି, ନୟନ ଯୁଗ୍ମରେ ନୀଳଇନ୍ଦିବରର ଠାଣି, ଅଧରରେ ପକ୍ୱବିମ୍ବ ଫଳର କାନ୍ତି, ନିର୍ମେଘ ଆକାଶରେ ସ୍ଫୁରିତ ବିଦ୍ୟୁଦ୍ଦାମ ତୁଲ୍ୟ ଅଧର କୋଣରେ ମୁନିମନଟଳା ମନ୍ଦହାସ, ସୁଗଠିତ ଦୀପ୍ତିବନ୍ତ ମୋତିପୁଞ୍ଜ ତୁଲ୍ୟ ଦନ୍ତପଂକ୍ତି, କନ୍ଦର୍ପ ପାଶନିନ୍ଦୀ କନକଫରୁଆ ସଦୃଶ କର୍ଣ୍ଣ ଦ୍ୱୟ, ଭ୍ରମର କୃଷ୍ଣ କୁଞ୍ଚିତ କବରୀ, ତିଳଫୁଲଜିଣା ନାସା, କମ୍ବୁଗ୍ରୀବା - ଗୋଟିଏ ଅଙ୍ଗରେ ନିର୍ଦ୍ଦୋଷ ଏତେ ଉପାଦାନ ।

ବିପୁଳ ସ୍ତନଜଘନ ଆଉ ଶ୍ରୋଣୀଭାରରେ ଅଳସଗମନା ସିଂହକଟୀ, ଆଉ ପିକବଚନା, ଯୁବତୀ ବିଷୟରେ ସ୍ରଷ୍ଟାଙ୍କର ଶ୍ରେଷ୍ଠ ସୃଷ୍ଟି ସେଇ ନାରୀ କେତେ ଦେବତାଙ୍କର ଦିନର ସ୍ୱସ୍ତି ଆଉ ରାତ୍ରିର ନିଦ୍ରାହରଣ କରିଛି, କିଏ ତା'ର ହିସାବ ରଖିଛି ?

ତା' ସହିତ ପଦେ କଥା ହେବା ପାଇଁ, ତା'ର ସାମାନ୍ୟ ସ୍ମିତ ହସ ପାଇଁ, ନୟନ କୋଣର ଟିକିଏ କଟାକ୍ଷ ପାଇଁ, କେତେ ଯେ ଦେବତା, ଗନ୍ଧର୍ବ, ଯକ୍ଷ, କିନ୍ନର ସତତ ବ୍ୟାକୁଳ, କିଏ କେତେ ବାହାନାରେ ତା'ର ସାନ୍ନିଧ ଟିକିଏ ପାଇବା ପାଇଁ କେତେ ପ୍ରକାର ଉଦ୍ୟମ କରୁଥିଲେ, ସେ ସବୁ ଜାଣି, ସେ କ'ଣ ଅହଙ୍କାରରେ ସ୍ଫୀତ ହୋଇନାହିଁ ? ନିଜର ଜନ୍ମଦାତାଙ୍କୁ ଶତ ସହସ୍ର ଧନ୍ୟବାଦ ଜଣାଇ ନାହିଁ ? ନିଜର ଭାଗ୍ୟକୁ ଅନ୍ୟମାନଙ୍କ ସହିତ ତୁଳନା କରି ଗର୍ବରେ ଫାଟି ପଡ଼ିନାହିଁ ?

ଅଥଚ ଯେଉଁ ରୂପ ପାଇଁ ତା'ର ଏତେ ଅହଂକାର ସେଇ ରୂପ ଯେ ଶେଷରେ ତା ପାଇଁ ଅଭିଶାପରେ ପରିଣତ ହେବ, ଏକଥା କ'ଣ ସେ ଜାଣିଥିଲା ? କିଏ ବା କାହିଁକି ଭାବିବ ଯେ, ନିଜେ ରୋପିଥିବା ବୃକ୍ଷର ଫଳ ଖାଇବା ପାଇଁ ରୋପକ ଧର୍ମାଧର୍ମ ପାପପୁଣ୍ୟର ବିଚାର କରିବ ନାହିଁ ?

ଦିନେ ନିଜର ସୌଭାଗ୍ୟରେ ମୁଗ୍ଧ କସ୍ତୁରୀ ମୃଗ ତୁଲ୍ୟ ସେ ଅନ୍ୟମାନଙ୍କୁ ଦୟାର ଦୃଷ୍ଟିରେ ଦେଖୁଥିଲା । ଆଜି ତା'ର ଦୁର୍ଭାଗ୍ୟ-ତାକୁ ସୃଷ୍ଟିର ଅସହାୟା ନାରୀଟିକୁ ମଧ ଈର୍ଷା କରିବା ନିମନ୍ତେ ବାଧ କରିଛି । ଏତେ ବିଡ଼ମ୍ବନା ତା'ର ଭାଗ୍ୟରେ କିଏ ଲେଖି ଦେଲା ?

ଅଥବା ଯିଏ ସମଗ୍ର ସୃଷ୍ଟିର ଭାଗ୍ୟ ନିୟନ୍ତା, ସେଇ ନିଜେ ତ ତା'ର ସ୍ରଷ୍ଟା, ତା'ର ପିତା । ନିଜ କନ୍ୟା ପାଇଁ ଏଇଭଳି ବିଧାନ ଦେଲା ବେଳେ ତାଙ୍କର ହାତ ଟିକିଏ ହେଲେ କମ୍ପିଲା ନାହିଁ ? ମନ ଟିକିଏ ହେଲେ ବିଚଳିତ ହେଲା ନାହିଁ ? ଏ ଭଳି ଅଘଟଣ ଘଟିବା ପୂର୍ବରୁ ତା'ର ମୃତ୍ୟୁ ହେଲା ନାହିଁ ?

କିନ୍ତୁ ମୃତ୍ୟୁ ବା ତାକୁ ଗ୍ରାସ କରିବ କିପରି ? ସେ ଯେ ଅମୃତର ସନ୍ତାନ-ଦେବତା ! ଥରେ ଜନ୍ମ ନେଲା ପରେ ଏ ଜୀବନର ଆଉ ଶେଷ ନାହିଁ । ଆନନ୍ଦ, ବେଦନା, ସୁଖ, ଦୁଃଖ, ସବୁ ତାକୁ ଭୋଗ କରିବାକୁ ପଡ଼ିବ । ଶତ ଅପମାନ ଲାଞ୍ଛନାର ଦୁର୍ବହ ଭାର ବହି ବଞ୍ଚିବାର ଇଚ୍ଛା ନ ଥିଲେ ମଧ କ୍ଳାନ୍ତ ପଶୁ ଭଳି ଜୀବନର ଭାରକୁ ଟାଣି ଟାଣି ଆଗେଇବାକୁ ପଡ଼ିବ ।

କିଏ କହେ ଦେବ ଲୋକରେ ଶୋକ ନାହିଁ, ଦୁଃଖ ନାହିଁ ବୋଲି ? ଦେବଲୋକର ଦୁଃଖକୁ କେବେ ଯଦି ଏକତ୍ର କରାଯାଏ, ତେବେ ତାହା ସହସ୍ର ରଶ୍ମି ସୂର୍ଯ୍ୟଙ୍କୁ ମଧ ଆଚ୍ଛନ୍ନ କରି ପକାଇବ । ଏ ଦୃଷ୍ଟିରୁ କେତେ ଭାଗ୍ୟବାନ୍ ମରଣଶୀଳ ମାନବମାନେ ।

ଗୋଟିଏ ବୋଲି ଜୀବନ । ସୁଖ ଆଉ ଦୁଃଖର ଧୂପ ଛାୟାରେ ଚାହୁଁ ଚାହୁଁ ଶେଷ ହୋଇଯାଏ । ନ ହେଲା ଅବା ସୁଖ । ସବୁ ଦୁଃଖର ତ ପୁଣି ଶେଷ ଅଛି । ସେଇଠୁ ପୁଣି ନୂଆ-ଜୀବନ, ନୂଆ ସପନ ନୂଆ ଜାଗରଣ ।

ଅଖଣ୍ଡ ଆଶା ଆଉ ସମ୍ଭାବନା ହେଉଛି ମାନବର ଅନ୍ୟ ନାମ ।

ଅଶ୍ରୁବିହୀନ ଉପଲବ୍‌ଧିକୁ ନେଇ ଦେବତାର ଦୟନୀୟ ଜୀବନ ।

ହାୟ; ସେ ଯଦି ସାଧାରଣ ମାନବୀଟିଏ ହୋଇଥାଆନ୍ତା !

ପ୍ରତି ନିୟତ ସୁଖର ଦୋଳାରେ ଝୁଲିବାର ଯେଉଁ ଯନ୍ତ୍ରଣା ସେଥିରୁ ତ ଅନ୍ତତଃ ମୁକ୍ତି ମିଳିଥାଆନ୍ତା !

ସେଦିନ ମଧ ସେ ସେମିତି ଯଶୋବନ୍ତପୁରର ଉଦ୍ୟାନରେ ଦୋଳାରେ ଝୁଲୁଥିଲା । ଜୀବନ ସମ୍ପର୍କରେ ଗତ ରାତ୍ରିରେ ଯେଉଁ ଅପୂର୍ବ ଅନୁଭୂତି ହୋଇଥିଲା, ତାରି ସ୍ମୃତିର ରୋମନ୍ଥନ କରୁଥିଲା । ଚିର-ଯୌବନର ଏଇ ରାଜ୍ୟରେ ଭୋଗ ହେଉଛି, ଶରୀରର ଏକମାତ୍ର ପରିଣତି । ଦେବକନ୍ୟା ହୋଇ ଏତକ କ'ଣ ସେ ଜାଣି ନ ଥିଲା ? ଜନ୍ମଲଗ୍ନରୁ ଅଜସ୍ର ମୁଗ୍‌ଧ ସ୍ତାବକର ତାକୁ ଘେରି ଯେଉଁ ଗୁଞ୍ଜରଣ, ତାହାର ଶେଷ କେଉଁଠି ଏ ଉପଲବ୍‌ଧି କ'ଣ ତାହାର ହୋଇ ନ ଥିଲା ?

ସେ ଜାଣେ ଦେବତାର ଜୀବନରେ ପ୍ରେମ ନ ଥାଏ । ଯାହା ଥାଏ, ତାହା ହେଉଛି ତୀବ୍ର ଲାଳସା । ସେତକ ମେଣ୍ଟିଗଲେ କେହି କାହାର ନୁହନ୍ତି । ତୃଷା ମେଣ୍ଟିଯିବା ପରେ, ନୂଆ ତୃଷା ନେଇ ଦେବପୁରୁଷମାନେ ନୂତନ ମଧୁଚକ୍ରର ସନ୍ଧାନରେ ଉଡ଼ିଯାଆନ୍ତି । ପ୍ରେମରେ ଆନୁଗତ୍ୟ ପାଇଁ କେହି କେବେ ସେମାନଙ୍କ ଆଡ଼କୁ ଆଙ୍ଗୁଳି ଉଠାଏ ନାହିଁ ।

ଏତେ କଥା ଜାଣିବା ପରେ ସେ ବା କାହିଁକି ଚରମ ସୁଖ ଉପଲବ୍ଧିରୁ ନିଜକୁ ବଞ୍ଚିତ କରିଥାଆନ୍ତା ? ମୁହୂର୍ତ୍ତକ ପାଇଁ ହେଲେ ସୁଦ୍ଧା ଅନ୍ୟର ମୁଗ୍ଧ ଆଖିରେ ନିଜର ମୂଲ୍ୟ ବିଚାର କରାଇ ନେବାର ସୁଯୋଗକୁ ପ୍ରତ୍ୟାଖ୍ୟାନ କରିଥାଆନ୍ତା ?

ମକର ଉଦ୍ୟାନର ସ୍ଫଟିକ ଶିଳା ଉପରେ ବସି ସେ ନିଜ ଜୀବନ ସମ୍ପର୍କରେ ଚିନ୍ତା କରୁଥିବା ବେଳେ ସେଇ ସ୍ମରଣୀୟ ଘଟଣାଟି ଘଟି ଯାଇଥିଲା । ଅସ୍ତ ସୂର୍ଯ୍ୟର କନକ କିରଣରେ ସମଗ୍ର ଉଦ୍ୟାନ ଉଦ୍‌ଭାସିତ । ଅସ୍ଫୁଟ ମନ୍ତ୍ରୋଚାରଣ ଭଳି ଗୁଞ୍ଜନ ସୃଷ୍ଟି କରି ଝରଣା ବହିଚାଲିଛି ଉପଳ ଉପଳରେ ଚରଣ ଚିହ୍ନ ଥାକି । ବସନ୍ତର ମୃଦୁ ମନ୍ଦ ସମୀରଣ ସୁନ୍ଦରୀ ଦେବକନ୍ୟାର ଅଳକଗୁଚ୍ଛକୁ ନେଇ ନର୍ମ କ୍ରୀଡ଼ା ରଚନା କରୁଛି । ହାତରେ ଲୀଳାକମଳ, ଚୂଡ଼ା ପାଶରେ ନବକୁରୁବକ, ଚାରୁ କର୍ଣ୍ଣରେ କୋମଳ ଶିରୀଷପୁଷ୍ପ, ସୀମନ୍ତରେ କଦମ୍ବ- ତରୁଣୀ ଦେଖୁଛି ଜଳବିମ୍ବରେ ନିଜର ପ୍ରତିବିମ୍ବକୁ । ଯେତେ ଦେଖିଲେ ବି ଆଶା ମେଣ୍ଟୁ ନାହିଁ । ଏଇ ମୁହୂର୍ତ୍ତରେ ନିଜ ରୂପର ବନ୍ଦନା କୌଣସି ମୁଗ୍ଧ ପୁରୁଷର ମୁହଁରେ ଶୁଣିବା ପାଇଁ ଭାରି ମନ ହେଉଛି ।

ପ୍ରିୟଜନର ସ୍ତୁତି ତ ସୌନ୍ଦର୍ଯ୍ୟର କଷଟୀ ।

ଏତିକିବେଳେ ସେ ଆସିଲା । ଉଦ୍ୟାନର ଶୁଷ୍କପତ୍ର ଉପରେ ଭୀରୁ ପାଦ ଚାଲି ତା' ଆଗରେ ବିନୀତ ଭଙ୍ଗୀରେ ଠିଆହେଲା । ଚକ୍ଷୁରେ ତା'ର ମୋହମୟ ଆବେଶ । ମୁଗ୍ଧ ପୁରୁଷର ନୀରବ ଆରତ୍ରିକାରେ ତରୁଣୀର ଦେହରେ ସୃଷ୍ଟି ହେଲା ଶତ କଦମ୍ବର ରୋମାଞ୍ଚ । ଲୋଧ୍ର-ରଜଃ ପାଣ୍ଡୁର ଆନନଶ୍ରୀ ଲଜ୍ୟାରୁଣ ହୋଇଉଠିଲା । ତା' ଆଖିରେ ମଧ ଫୁଟି ଉଠିଲା ମୁଗ୍ଧ ପୁଲକିତ ବିସ୍ମୟ । ପୁରୁଷ ଅଙ୍ଗରେ ଏତେ ରୂପ !

ସେ ଜାଣେ, ଦେବତାମାନେ କାମରୂପ । ଇଚ୍ଛାନୁସାରେ ରୂପ ଧାରଣର ଶକ୍ତି ହେଉଛି ଦେବତ୍ୱ । ପୁଣି ଦେବଲୋକ ହେଉଛି ସୌନ୍ଦର୍ଯ୍ୟର ନିତ୍ୟ ଲୀଳା ଭୂମି । ତଥାପି ସେ ମୁଗ୍ଧ ହେଲା । ଅପୂର୍ବ ଆବେଶରେ ତରଳିବାକୁ ଆରମ୍ଭ କଲା ।

ପୁରୁଷ ଭୀରୁ ପାଦଚାଲି ଆଗକୁ ବଢ଼ିଲା । ଦୀର୍ଘ ପଦ୍ମପଳାଶ ନେତ୍ରରେ ସୃଷ୍ଟିର ସମସ୍ତ ମୁଗ୍ଧତା ଫୁଟାଇ କହିଲା- ''ବରୁଣ-ପୁତ୍ର ରୁହୁର ଅଭିବାଦନ ଗ୍ରହଣ କରନ୍ତୁ ଦେବୀ ।'' କଣ୍ଠ ସ୍ୱରରେ ଏତେ ମାଦକତା ? ଚୁମ୍ବକ ଲୌହକୁ ଆକର୍ଷଣ କଲା ଭଳି ତରୁଣୀର ସ୍ପନ୍ଦିତ ହୃଦୟ ନିଜର ଅଜ୍ଞାତସାରରେ ବରୁଣ-ପୁତ୍ର ଆଡ଼କୁ ଟାଣି ହୋଇଯାଉଥିଲା । ଚନ୍ଦ୍ରକାନ୍ତ ମଣି-ଜ୍ୟୋତ୍ସ୍ନାରେ ତରଳିଗଲା ଭଳି ସେ ତରଳିବାକୁ ଆରମ୍ଭ କରିଥିଲା ।

ତା'ର ମନେ ହୋଇଥିଲା - ଏଇ ସେଇ ପୁରୁଷ-ତା'ର ବାଞ୍ଛିତ ପୁରୁଷ-ଜୀବନର ପ୍ରଥମ ପୁରୁଷ। ଏହାରି ଅପେକ୍ଷାରେ ସେ ଏତେଦାଳ ବସିଥିଲା - ଏଇ ହେଉଛି ତା'ର ଶତ ବିନିଦ୍ର ରଜନୀର ଶେଷ ପରିଣତି। ଏହାରି କପାଟ ବକ୍ଷରେ ନିଜକୁ ଲୀନ କରିଦେବା ପାଇଁ ସେ ଏତେଦିନ ସ୍ୱପ୍ନ ଦେଖି ଆସିଛି। ଏହାରି ବଳିଷ୍ଠ ଜଂଘାର ନିପୀଡ଼ନରେ-ଉଦ୍ଧତ ଯୌବନର ଆଘାତରେ କୌମାର୍ଯ୍ୟର-ଶେଷ ବିନ୍ଦୁରେ ପହଞ୍ଚିଯିବାକୁ କାମନା କରି ଆସିଛି।

ମୁଗ୍ଧ ପୁରୁଷର କଣ୍ଠରୁ ପୁନର୍ବାର ଶୁଣାଯାଇ ଥିଲା ନାରୀ ବନ୍ଦନା-ଯାହାକୁ ନେଇ ଯୁଗଯୁଗ ଧରି ପୁରୁଷକୁଳ ନାରୀ ଉପରେ ପ୍ରଭାବ ବିସ୍ତାର କରି ଆସିଛନ୍ତି।-

ରୁହୁ କହୁଥିଲା, ''ସମ୍ମୁଖରେ ସୀମାହୀନ ଜଳ ଭଣ୍ଡାର ଥାଇ ତୃଷାରେ ବିକଳ ହେବାର ଦୁଃଖ ମୁଁ ଆଉ ସହ୍ୟ କରି ପାରୁନାହିଁ। ଜଳ ଯଦି ବିଷାକ୍ତ ହୁଏ, ତେବେ ମୁଁ ଜଳିପୋଡ଼ି ଧ୍ୱଂସ ହୋଇଯିବି। ଯଦି ତାହା ହୁଏ ଅମୃତ, ତେବେ ମୋର ଜନ୍ମ ସାର୍ଥକ ହେବ। ମୋତେ ତୁମ ପାଦ ତଳର ଦାସ କରିବ ସୁନ୍ଦରୀ ?

ତରୁଣୀର ମନୋଭାବ ତା'ର ମୁଗ୍ଧ ଛଳଛଳ ଆବେଶ ମଦିର ଦୃଷ୍ଟି, ବେପଥୁ-ସାଧ୍ୱସଭାବରୁ ହିଁ ପ୍ରକଟିତ ହୋଇ ପଡ଼ିଥିଲା। ସାହସୀ ପୁରୁଷ ଏଥର ଆଗକୁ ବଢ଼ି ତରୁଣୀର କାନ୍ଧରେ ନିଜର ହାତ ରଖିଲା। ତରୁଣୀକୁ ନିବିଡ଼ ଆଶ୍ଳେଷରେ ବାନ୍ଧିନେଲା।

ସ୍ପର୍ଶ ! ! ପ୍ରଥମ ପୁରୁଷର ମୋହମୟ ସ୍ପର୍ଶ !

ତରୁଣୀର ଭୀରୁ ବକ୍ଷରେ ଶତ ଆଗ୍ନେୟଗିରିର ଉଦ୍‌ଗୀରଣ। ଲୌହ କଠିନ-ଚିନ୍ତା ତରଳ ଧାର ହୋଇ ବହିଯାଉଛି। ପୁରୁଷର ଉତପ୍ତ ଆଲିଙ୍ଗନରେ ତରୁଣୀ ରୁଦ୍ଧଶ୍ୱାସ। ତଥାପି ଚାହୁଁଛି, ଆହୁରି ନିବିଡ଼ ହେଉ ଏଇ ଆଲିଙ୍ଗନ, ଆହୁରି ଅନ୍ତରଙ୍ଗ ହେଉ ଏଇ ନିପୀଡ଼ନ। ଏଇ ଅବସ୍ଥାରେ ଯଦି ବା ଜୀବନର ଶେଷ ମୁହୂର୍ତ୍ତ ଆସି ଯାଉଛି, ତଥାପି ତାହା ଶ୍ରେୟସ୍କର।

ଉତପ୍ତ ଦୁର୍ଦ୍ଧର୍ଷ ନିଦାଘ ଶେଷରେ ମେଘ ମେଦୁର ବର୍ଷା ଯେମିତି ପୃଥିବୀରେ ରୋମାଞ୍ଚ ସୃଷ୍ଟି କରେ, ତୃଷିତ ପୃଥିବୀ ଯେମିତି ବ୍ୟଗ୍ର ବାହୁମେଲି ବର୍ଷାର ପ୍ରଥମ ସ୍ପର୍ଶକୁ ନିଜ ଭିତରେ ଗ୍ରହଣ କରି ଥାଏ, ତରୁଣୀ ସେମିତି ତରୁଣକୁ ଗ୍ରହଣ କରି ନେଇଥିଲା।

ଜୀବନ ପୂର୍ଣ୍ଣତାର ଛୁଆଁରେ ଝଲସି ଉଠିଥିଲା।

ସେଇ ବିଷୟ ଚିନ୍ତା କରୁଛି ତରୁଣୀ। ରୁହୁ କ'ଣ ପୁଣି ଫେରିବ ? ଯେଉଁ ବାଟରେ ଥରେ ଯାଆନ୍ତି, ଦେବତାମାନେ ଲେଉଟି ପୁଣିଥରେ ସେ ବାଟରେ ପାଦ ପକାନ୍ତି ନାହିଁ ବୋଲି ସେ ଶୁଣିଛି। ରୁହୁ କ'ଣ ଏହାର ବ୍ୟତିକ୍ରମ ହେବ ?

ପୁଣି କ'ଣ ସେ ଆସ୍ୱାଦନ କରିବାର ସୁଯୋଗ ପାଇବ, ଦୁଇଟି ତନୁ ଏକ ହୋଇଯିବାର ସେଇ ମୂର୍ଚ୍ଛାଳିଆ ଆନନ୍ଦ ? ତନୁ ପଛରେ ଯେଉଁଠି ମନ ଥାଏ, ସେଠି ଜଣେ ଜଣକ ପାଖକୁ ବାରମ୍ବାର ଆକୃଷ୍ଟ ହୋଇ ଆସେ । ଦେବତାଙ୍କର ପ୍ରଥମଟି ତ ଥାଏ, ଦ୍ୱିତୀୟଟି - ବୋଧହୁଏ ନାଃ, ମନର ବିମ୍ବରେ ସେଠି ନିଜଛଡ଼ା ଅନ୍ୟ କାହାରି ଛାଇ ପଡ଼େ ନାହିଁ ।

ତଥାପି ରୁହୁ ଯାହା ଦେଇଛି, ବିମୁଗ୍ଧା ତରୁଣୀର ପ୍ରଥମ ଅନୁଭୂତି ହିସାବରେ ତାହା ମନ୍ଦ ନୁହେଁ । ସେଇ ତ ତା'ର ହୃଦୟକୁ ସବୁଜିମାରେ ଭରି ଦେଇଛି । ଛାତି ଭିତରେ କ'ଣ ଯେମିତି ଗୋଟାଏ ଅନୁଭୂତ ହେଉଛି । ଚଳଚଞ୍ଚଳ ଆଖି ରହି ରହି ବୁଲି ଆସୁଛି ନିଜର ଚାରିପଟେ । ଦୃଷ୍ଟିରେ ଫୁଟି ଉଠୁଛି ଉଦାସ ଭାବ- କ'ଣ ଯେମିତି ଥିଲା- ଅଥଚ ନାହିଁ-ଥିଲାବେଳେ ସମଗ୍ର ସୃଷ୍ଟି ଯେମିତି ଭରି ଯାଇଥିଲା, ସ୍ନିଗ୍ଧ, ସୁମଧୁର ଆଲୋକ-ଛାୟାରେ-ନଥିବାରୁ ସବୁ ଯେମିତି ମନେ ହେଉଛି ଅନ୍ଧାର-ସେଇ ଅନ୍ଧାର ଭେଦ କରି ଦୃଷ୍ଟି ପହଁରି ଯାଉଛି ସୀମାହୀନ ଦିଗନ୍ତ ଆଡ଼େ- କାଳେ କିଏ ଆସୁଥିବ ମଧୁର ଚରଣ ପାତରେ ଆଲୋକ ଆଉ ଉଲ୍ଲାସର ରେଣୁ ବୁଣି ବୁଣି...

ଏହାରି ନାମ ତେବେ ପ୍ରତୀକ୍ଷା...

ତରୁଣୀର ମୁଖମଣ୍ଡଳ ସ୍ନିଗ୍ଧ ହାସ୍ୟରେ ମଣ୍ଡି ହୋଇଯାଉଛି...

ହଠାତ୍ ଗୋଟାଏ ଅସ୍ୱସ୍ତିକର ଅନୁଭୂତି ତା'ର ହୃଦୟକୁ ଆଚ୍ଛନ୍ନ କରି ଦେଉଛି । ସ୍ୱପ୍ନର ଜଗତରୁ ସେ ଫେରି ଆସୁଛି ବାସ୍ତବ ଇଲାକାକୁ ।

ଅଦୂରରେ ଯିଏ ଠିଆହୋଇ ଏକ ଦୃଷ୍ଟିରେ ତା' ଆଡ଼କୁ ଅନାଇ ରହିଛନ୍ତି, ତାଙ୍କ ଦୃଷ୍ଟିରେ ଫୁଟି ଉଠିଛି ବିହ୍ୱଳତା । ତାହା ସ୍ୱାଭାବିକ ନୁହେଁ । ଦୃଷ୍ଟିର ତାରତମ୍ୟ ମାପି ପାରିବାର ବୁଦ୍ଧି ତା'ର ଅଛି । କେଉଁ ଚାହାଣୀରୁ କ'ଣ ଫୁଟି ବାହାରେ ସୁନ୍ଦରୀ ତରୁଣୀ ହିସାବରେ ତାହା ବୁଝିପାରିବାର ଅଭିଜ୍ଞତା ମଧ୍ୟ ତା'ର ରହିଚି । ଜନ୍ମ ଲଗ୍ନରୁ ଏଇଭଳି ଅୟୁତ ମୁଗ୍ଧ ଦୃଷ୍ଟିର ଆଗରେ ତା'ର ଗତାଗତ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ମାତ୍ର ଯେଉଁ ଦୃଷ୍ଟିରୁ ବାତ୍ସଲ୍ୟ, ସ୍ନେହ ମମତା ଝରି ପଡ଼ିବାର କଥା ଅନ୍ତତଃ ଏଯାବତ୍ ସେଇଆ ବାହାରିଛି, ସେଇଠୁ ବାସନା ମଦିର ବିଲୋଳ କଟାକ୍ଷ- ସେ ଆଉ ଭୁଲ୍ ଦେଖୁ ନାହିଁ ତ ?

ନାଃ ବିଭ୍ରମ ନୁହେଁ । ଏ ଦୃଷ୍ଟିର ପ୍ରତିଶ୍ରୁତି ତା'ର ଅଜଣା ନୁହେଁ । କୌଣସି ତରୁଣୀର ଅଜଣା ନୁହେଁ । ମାତ୍ର ଏହା କିପରି ସମ୍ଭବ ?

ଜନ୍ମଦାତା ପିତା ନିଜର ଆତ୍ମଜା ପ୍ରତି ଏଭଳି ମନୋଭାବ ପୋଷଣ କରି ପାରନ୍ତି ?

ଏଇ ମୁହୂର୍ତ୍ତରେ କିଛି ଗୋଟାଏ ନ କଲେ, ଅଘଟଣ ଘଟିଯିବ । କଳଙ୍କ ଲାଗିବ-ପବିତ୍ର ଦେବ କୁଳରେ । ବିଧାତାଙ୍କର ଶୁଭ୍ର ଯଶ, ପାଣ୍ଡିତ୍ୟ, ବୁଦ୍ଧିମତ୍ତା-କାଳକାଳକୁ ମସୀଲିପ୍ତ ହୋଇଯିବ ।

ଧାତା କନ୍ୟା ଶୁଣିଛନ୍ତି ଉନ୍ମତ୍ତ-ପୁରୁଷର କାଣ୍ଡଜ୍ଞାନ ଶୂନ୍ୟତାର ବିବରଣୀ । ଚିର ବସନ୍ତର ଏଇ ରାଜ୍ୟରେ କାଳକାଳରୁ କେତେ ଯେ ଅଘଟଣ ଘଟି ଆସୁଛି, ତା'ର ବିବରଣୀ ତାଙ୍କ ପାଖରେ ଅଭାବ ନାହିଁ । ବର୍ତ୍ତମାନ ଏହି ସ୍ଥାନରୁ ପଳାଇ ନ ଗଲେ, ଭୟଙ୍କର ପରିସ୍ଥିତି ସୃଷ୍ଟି ହୋଇଯାଇ ପାରେ ।

ସଂଧ୍ୟା ତଡ଼ିତ୍ ଗତିରେ ଅନ୍ତଃପୁର ଆଡ଼େ ଛୁଟିଲେ ।

ମାତ୍ର ସେଥିରେ ବା ରକ୍ଷା ମିଳୁଛି କେଉଁଠି ?

ଋତୁମତୀ ଗାଭୀ ପଛରେ ଉନ୍ମତ୍ତ ବୃଷଭ ଧାଇଁଲା ଭଳି ପଛେ ପଛେ ଅନୁସରଣ କରୁଛି ସେଇ ମୋହଗ୍ରସ୍ତ ପୁରୁଷ-ଯାହାର ନାମ ବିଧାତା-ବ୍ରହ୍ମା-ଚତୁର୍ମୁଖ-ସଂଧ୍ୟାବାଳୀର ଜନ୍ମଦାତା-

ଭାଗ୍ୟର ବିଡ଼ମ୍ବନା ଆଉ କାହାକୁ କହନ୍ତି ?

ବୁଦ୍ଧିଭ୍ରଷ୍ଟ ସେଇ ପୁରୁଷର ମୁହଁରୁ ଆଗ୍ନେୟଗିରିର ଉତପ୍ତ ଧାତୁ ସ୍ରୋତ ଭଳି ବାହାରି ଆସୁଛି ଚାଟୁବାଣୀ-ମାୟାବିନୀ ପ୍ରକୃତି, ପରମରସ ସୃଷ୍ଟିର ଅନନ୍ୟ ନାୟିକା, ତୋ'ର କଟାକ୍ଷ ପାତରେ କିଣାକିଙ୍କରର କି ଅବସ୍ଥା ହୋଇଛି, ଥରେ ମାତ୍ର ଚାହିଁ ଦେଖ । ଭୁଜବନ୍ଧର ଗାଢ଼ ଆଲିଙ୍ଗନ ଦେଇ ମୋର ସନ୍ତପ୍ତ ହୃଦୟରେ ଶାନ୍ତିବାରି ସେଚନ କର ।

ଉନ୍ମତ୍ତତାର ସେଇ ଧାରା ପ୍ରବାହରେ ସଂଧ୍ୟାଙ୍କର ସାରା ଶରୀର ବାତାହତ ରମ୍ଭାପତ୍ର ତୁଲ୍ୟ ଥରିବାକୁ ଆରମ୍ଭ କରିଥିଲା । ତୀବ୍ର ଜୁଗୁପ୍ସାରେ ତାଙ୍କର ଶରୀରରେ ଶିହରଣ ସୃଷ୍ଟି ହେଉଥିଲା । ମନେ ହେଉଥିଲା ଆଉ କିଛିକ୍ଷଣ ସେ ଏଇ ଅବସ୍ଥାରେ ରହିଲେ ଜ୍ଞାନହରାଇ ତଳେ ପଡ଼ିଯିବେ ।

ସଂଧ୍ୟା ନିଜ ଶରୀରର ଶେଷ ଶକ୍ତି ସଂଗ୍ରହ କରି କୌଣସି ମତେ ନିଜକୁ ସ୍ଥିର କରିବାକୁ ଚେଷ୍ଟା କଲେ । ଥର ଥର ଦୁଇ ହାତ ଯୋଡ଼ି ବାଷ୍ପରୁଦ୍ଧ କଣ୍ଠରେ କହିବାକୁ ଆରମ୍ଭ କଲେ - ଚତୁର୍ବେଦର କର୍ତ୍ତା, ସୃଷ୍ଟିର ସର୍ଜନାକାରୀ, ସର୍ବଶାସ୍ତ୍ରଜ୍ଞ ବେଦବର

ବ୍ରହ୍ମାଙ୍କୁ ଧର୍ମର କଥା, ନୀତିର କଥା ଶୁଣାଇବି, ଏତେ ବଡ଼ ଔଦ୍ଧତ୍ୟ ମୋର ନାହିଁ । ହେ ଦେବବର, ରକ୍ଷକ ଯଦି ଭକ୍ଷକର ଭୂମିକାରେ ଅବତୀର୍ଣ୍ଣ ହୁଏ, ପାଳନକର୍ତ୍ତା ଯଦି ଧ୍ୱଂସର ପ୍ରମତ୍ତ ଉଲ୍ଲାସରେ ମାତି ଉଠେ, ସମୁଦ୍ର ଯେବେ କୂଳଲଂଘନ କରେ, ତେବେ ଏ ସୃଷ୍ଟି ରହିବ କାହାକୁ ଆଶ୍ରା କରି ? ଆପଣ ସତ୍ୟ, ମିଥ୍ୟା, ପାପ ପୁଣ୍ୟ ଧର୍ମାଧର୍ମ ଦିବାରାତ୍ରିର ନିୟାମକ - ଆପଣ ସ୍ୱୟଂ ଯଦି ଧର୍ମ ଲଂଘନ କରନ୍ତି, ତେବେ ସଂସାର ରହିବ କି ଭଳି ?

ମାତ୍ର ରିରଂସାର ପ୍ରଚଣ୍ଡ ତାପ ଯାହାର ହୃଦୟକୁ ଉତପ୍ତ କରିଛି, ତା' ଉପରେ ଅବା ଏ ନୀତିବାଣୀର କି ପ୍ରଭାବ ପଡ଼ନ୍ତା ? ବିଧି ନିଷେଧର ପ୍ରଦର୍ଶନ, ସେ ସବୁକୁ ଅସ୍ୱୀକାର କରିବାର ଏକ ପ୍ରଲୋଭନ ସିନା । ଧନ୍ୟ ସେ କନ୍ଦର୍ପ । କେଡ଼େ ବଡ଼ ବଡ଼ ଧୈର୍ଯ୍ୟର ବନ୍ଧକୁ କାମନାର ତୀବ୍ର ସ୍ରୋତରେ ଭସାଇ ନେଇଛି । ବାଧା ପାଇ କାମନାର ତୀବ୍ର ଶିଖା ଦାଉ ଦାଉ ହୋଇ ଜଳି ଉଠିଛି । ସ୍ଥାନ କାଳପାତ୍ର ବିସ୍ମୃତ ଦେବବର ବ୍ରହ୍ମାଙ୍କର ମୁଖରୁ ନିଃସୃତ ହୋଇଛି ଲାଳସାସିକ୍ତ ବାଣୀ, "କାମନାର ତୀବ୍ର ଦହନକୁ ଶାନ୍ତ କରିବା ପାଇଁ ମୋତେ ଯଦି ରସାତଳକୁ ଯିବା ପଡ଼େ, ତେବେ ସେଥିପାଇଁ ମଧ୍ୟ ମୁଁ ପ୍ରସ୍ତୁତ । ମୁଁ ଧର୍ମ, ମୁଁ ପୁଣି ଅଧର୍ମ, ମୁଁ ପାପ, ମୁଁ ହିଁ ପୁଣ୍ୟ । ତମେ ମୋତେ ଆଉ ନୀତିର କଥା ଶୁଣାଅ ନାହିଁ ସୁନ୍ଦରୀ ।

ହାୟରେ ବିଧାତା, ଏ ଲାଞ୍ଛନା ଭୋଗ କରିବା ପୁଣି ତାଙ୍କରି ଲଲାଟରେ ଲେଖାଥିଲା ? ଯାହା ହେଲେ ପଛେ ହେଉ, କାମ ପ୍ରମତ୍ତ ଏଇ ପୁରୁଷର ଅଭିଶାପ ବାଣୀରେ ସେ ପଛେ ଧ୍ୱଂସ ହୋଇ ଯାଆନ୍ତୁ, ମାତ୍ର ସେ କେବେ ହେଲେ ଏଇଭଳି ସୃଷ୍ଟିଛଡ଼ା ପ୍ରସ୍ତାବରେ ସମ୍ମତ ହେବେ ନାହିଁ ।

କ୍ରୁଦ୍ଧା ନାରୀର କଣ୍ଠରୁ ଏଥର ଉଚ୍ଚାରିତ ହେଲା ତୀବ୍ର ଭର୍ତ୍ସନା । ସଂଧ୍ୟା କହୁଥିଲେ- ଶୁଣିଛି, ଅନିଚ୍ଛୁକା ନାରୀ ସହିତ ଯେଉଁ ପୁରୁଷ ବଳାତ୍କାର କରିବାକୁ ଉଦ୍ୟମ କରେ, ତା'କୁ ରୌରବ ନର୍କରେ ମଧ୍ୟ ସ୍ଥାନ ମିଳେ ନାହିଁ । ତମେ ପୁଣି ମୋର ପିତା- ପୂର୍ବଜନ୍ମର କେଉଁ ପାପରେ ମୁଁ ତୁମ ଭଳି ଏକ ନିର୍ଲଜ ପଶୁଠାରୁ ଜନ୍ମ ନେଲି, ତାହା କେବଳ ତୁମେ ହିଁ ଜାଣ । ତମର କାଳକୁ ଭୟ ନାହିଁ, କୂଳକୁ ଭୟନାହିଁ । ଇତିହାସ ପ୍ରତି ସମ୍ମାନ ନାହିଁ । ମୃତ୍ୟୁ ହିଁ ହେଉଛି, ତମର ଏକମାତ୍ର ପରିଣାମ ।

ଅଟ୍ଟହାସ୍ୟରେ ଫାଟି ପଡ଼ି ବ୍ରହ୍ମା ନାମଧେୟ ସେଇ ପୁରୁଷଟି କହିଥିଲା- କାମନାର ବେଗକୁ ରୁଦ୍ଧ କରିବାର ମନ୍ତ୍ର ମୋତେ ଜଣାନାହିଁ । ତେଣୁ ତ ମୁଁ ଦେବତା । ଯାହା ଯେତେବେଳେ ଚାହିଁଛି, ପାଦ ପାଖରେ ସେସବୁ ଆପେ ଆସି ପହଞ୍ଚି ଯାଇଛି । ସଂଯମର ବଲ୍‌ଗାରେ କାମନାର ଅଶ୍ୱକୁ ନିୟନ୍ତ୍ରଣ କରିବାର କୌଶଳ ମୋତେ ଜଣାନାହିଁ ।

ସନ୍ଧ୍ୟାଙ୍କର ସମସ୍ତ ଉଦ୍ୟମ ନିଷ୍ଫଳ ହୋଇ ସାରିଥିଲା । ଅସହାୟା ନାରୀର ନେତ୍ରରୁ ନିରବଚ୍ଛିନ୍ନ ଅଶ୍ରୁଧାରା ବହି ବକ୍ଷ ତିନ୍ତାଉଥିଲା । କ'ଣ କରିବେ, କିପରି ଏହି ଅଭୂତପୂର୍ବ ପରିସ୍ଥିତିରୁ ଆତ୍ମରକ୍ଷା କରିବେ, କିଛି ବୁଝିପାରୁ ନଥିଲେ । ଇତି ମଧ୍ୟରେ କାମାନ୍ଧ ପୁରୁଷ ମଧ୍ୟ ଧୈର୍ଯ୍ୟହରା ହୋଇ ପଡ଼ିଥିଲା । ବାଜପକ୍ଷୀ ଯେମିତି ତା'ର ଶିକାର ଉପରକୁ ଲମ୍ଫ ପ୍ରଦାନ କରେ, ଠିକ୍ ସେଇଭଳି ସେଇ ବିବାନ୍ଧ ପୁରୁଷ-ଅସହାୟା ଯୁବତୀ ଉପରକୁ ଡେଇଁ ପଡ଼ିଲା । ଗାଢ଼ ଆଲିଙ୍ଗନରେ ଅନିଚ୍ଛୁକା ତରୁଣୀକୁ ବାନ୍ଧି ତା'ର କମ୍ପିତ ଅଧରରେ ବାରମ୍ବାର କାମନାର ସ୍ୱାକ୍ଷର ଆଙ୍କିବାକୁ ଲାଗିଲା । ଭୀରୁ ତରୁଣୀର ଉନ୍ନତ ବକ୍ଷୋଜ-କାମାନ୍ଧ ପୁରୁଷର ଲାଳସାସିକ୍ତ ଜିହ୍ୱାର ଦଂଶନରେ ନିପୀଡ଼ିତ ହେବାକୁ ଲାଗିଲା ।

ସମଗ୍ର ଚରାଚର ହାହାକାର କରି ଉଠିଲା ।

ତଥାପି ଆକାଶ ଛିଡ଼ି ପଡ଼ିଲା ନାହିଁ ।

ପୃଥିବୀ ରସାତଳଗାମୀ ହେଲା ନାହିଁ ।

ମହାଶୂନ୍ୟରେ ମିଳାଇଗଲା ଅସହାୟା ଅବଳାର କରୁଣ ରୋଦନ ଧ୍ୱନି ।

ଅତ୍ୟାଚାରୀର ଶିରଚ୍ଛେଦ କରିବା ପାଇଁ ସୁଦର୍ଶନ ଚକ୍ର ଧାଇଁ ଆସିଲା ନାହିଁ ।

କେବେ ଆସେ ବି ନାହିଁ ।

ହଠାତ୍ ସନ୍ଧ୍ୟା ବାଳୀର ମନରେ ବିଦ୍ୟୁତ୍ ଝଲକ ପରି ଚିନ୍ତାଟିଏ ଖେଳିଗଲା । ଦେବତାଙ୍କ ପରି ସେ ମଧ୍ୟ କାମରୂପୀ । ଛଦ୍ମବେଶରେ ଏଠୁ ପଳାଇ ଯାଇ କାହା ନିକଟରେ ତ ଆଶ୍ରୟ ପ୍ରାର୍ଥନା କରାଯାଇ ପାରିବ । ଅନ୍ତତଃ ଏ ଦିଗରେ ଶେଷ ଉଦ୍ୟମ କରାଯାଇ ପାରିବ ।

ତା'ପରେ ଯାହା ହେବ, ଦେଖାଯିବ ।

ସନ୍ଧ୍ୟାବାଳୀ ସହସା ଏକ ମୃଗୀ ରୂପ ଧରି ବ୍ରହ୍ମା କବଳରୁ ଖସି ପଳାଇବାକୁ ଲାଗିଲା । ବ୍ରହ୍ମା କ୍ଷଣକ ପାଇଁ ହତବାକ୍ ହୋଇ ପଳାୟମାନା ମୃଗୁଣୀ ଆଡ଼େ ଅନାଇଲା । ଆଶା ଭଙ୍ଗର ବେଦନା, ତା' ହୃଦୟର କ୍ରୋଧକୁ ବହୁଗୁଣିତ କରି ପକାଇଲା ।

ଦନ୍ତରେ ଦନ୍ତ ଘର୍ଷଣ କରି କ୍ରୁଦ୍ଧ ପୁରୁଷ ଗର୍ଜନ କରି ଉଠିଲା - ଆଃ !

ତା'ପରେ ସେ ମଧ୍ୟ ମନୋଜବ ଗତିରେ ମୃଗୁଣୀର ଅନୁଧାବନ କରିବାକୁ ଲାଗିଲା, ମୃଗ ରୂପରେ ।

ଆଗରେ ଭୟଭୀତା - ମୃଗୁଣୀ ।

ପଛରେ କାମ ମୋହିତ ମୃଗ ।

ସମ୍ମୁଖରେ ଦିବସର ଉଜ୍ଜ୍ୱଳ ଆଲୋକ-

ପଛରେ କୁହୁନିଶିର ନିରନ୍ଧ୍ର ଅନ୍ଧକାର ।

ଆଗରେ ସାକାର ରୂପରେ ତିତିକ୍ଷା,

ପଛରେ କୃତାନ୍ତ ରୂପରେ ଜିଘାଂସା ।

ଅନନ୍ତକାଳ ଧରି ଚାଲିଛି ଏହି ଦ୍ୱନ୍ଦ୍ୱ । ଜିଘାଂସାର କ୍ରୂର କବଳରେ ପଡ଼ି ତିତିକ୍ଷା କାଳ କାଳ ଧରି ଆର୍ତ୍ତନାଦ କରି ଚାଲିଛି । କାଳରୁ କାଳାନ୍ତରକୁ, ଯୁଗରୁ ଯୁଗାନ୍ତରକୁ ଗଡ଼ି ଚାଲିଛି ଏହି ଅସମ ପ୍ରତିଯୋଗିତା - କେହି ଶୁଣନ୍ତି ନାହିଁ, କେହି ପ୍ରତିବାଦ କରନ୍ତି ନାହିଁ ।

ପ୍ରବଳର ପ୍ରଚଣ୍ଡ ଚାପରେ ଦୁର୍ବଳଟି ପିଷ୍ଟ ହେଉଥାଏ ।

ଏହା ହିଁ ହେଉଛି, ତା'ର ନିୟତି, ଏକମାତ୍ର ଜାଗତିକ ସତ୍ୟ ।

ସେଇଠୁ ଦେବ ସୁନାଶିରଙ୍କର ସୁଧର୍ମା ସଭା, ସୃଷ୍ଟିରେ ନ୍ୟାୟର ଧ୍ୱଜଟେକି, ସେ ଅବା ଧର୍ମ ରକ୍ଷା କରି ପାରିଲେ କୋଉଠୁ ? ତାଙ୍କର କ'ଣ ଧାତାଙ୍କର ଅଭିଶାପର ଭୟ ନାହିଁ ? ପଦଚ୍ୟୁତିର ଆଶଙ୍କା ନାହିଁ ? ପ୍ରତି ନିୟତ 'ଏଇ ଗଲା ହାତରୁ ବଜ୍ର ଅଙ୍କୁଶ'ର ଆତଙ୍କ ନାହିଁ ?

ଯିଏ ନିଜେ ଅସୁରକ୍ଷା ଭାବନାରେ ପୀଡ଼ିତ ସିଏ ବା କିଭଳି ଦେଇ ପାରିବ ନିର୍ଣ୍ଣୟ ?

ତେଣୁ ସେଠାରୁ ଶୂନ୍ୟ ମନରେ ପ୍ରତ୍ୟାବର୍ତ୍ତନ ।

ଏହା ପରେ କ'ଣ ? କିଏ ରକ୍ଷା କରିବ ଏଇ ଅସହାୟା ଅବଳାକୁ ? ଶରୀରର ଶେଷ ଶକ୍ତି ନିଃଶେଷ ହୋଇଆସୁଛି । ପ୍ରାଣ ପ୍ରତି ଯେତିକି ବା ମାୟା ଥିଲା, ତାହା ପରିବର୍ତ୍ତିତ ହୋଇଛି ପ୍ରଚଣ୍ଡ ଘୃଣାରେ । ଯେମିତି ହେଉ, ଏ ଦୁର୍ଭୋଗର ଶେଷ ଦେଖିବାକୁ ହେବ ।

ଯେଉଁ ପୁରୁଷଟି ଇନ୍ଦ୍ରିୟର କ୍ଷଣିକ ତୃପ୍ତି କାମନାରେ ଅନ୍ଧ ହୋଇ ତାଙ୍କ ପଛରେ ପବନ ଗତିରେ ଧାଇଁଛି, ସନ୍ଧ୍ୟା ଜାଣନ୍ତି, ମୋହର ଅନ୍ଧକାର କଟିଗଲା ପରେ ନିଜର କୁକର୍ମ ପାଇଁ ତା'ର ଅନୁତାପ ଆସିବ । ସେତେବେଳେ ସେ ନିଜେ ଏଥିପାଇଁ ଧରଣୀକୁ ଦ୍ୱିଧା ହେବା ନିମନ୍ତେ ଅନୁରୋଧ କରିବ ।

ମାତ୍ର ସେତେବେଳକୁ ଯାହା ହେବାର କଥା ହୋଇ ସାରିଥିବ। କାଳର ଇତିହାସରେ ଯୋଡ଼ାଯାଇ ସାରିଥିବ ଏକ ନୂତନ ପୃଷ୍ଠା। କଳଙ୍କର କାଳିରେ ଲେଖା ସରିଥିବ ସମ୍ପର୍କର ଏକ ମସୀ ଲିପ୍ତ ଅଧ୍ୟାୟ।

ସଂଧ୍ୟା ତାହା ହେବାକୁ ଦେବେ ନାହିଁ। ଅନ୍ତତଃ ଇତିହାସର ଏଇ ନୂତନ ଅଧ୍ୟାୟର ଏକ ଚରିତ୍ର ହେବା ଅପେକ୍ଷା ସେ ନିଜକୁ ଶେଷ କରି ଦେବାକୁ ଶ୍ରେୟସ୍କର ମଣିବେ।

ମାତ୍ର କଥା ହେଉଛି, ତାଙ୍କର ଏ ସ୍ୱାଧୀନତା ଅଛି କି ? କୌଣସି ଦେବତାର ଥାଏ କି ?

ଧାଇଁ ଧାଇଁ ସଂଧ୍ୟା ବାଳୀ ନିମ୍ନକୁ ଅନାଇଲେ। ତଳେ ଦେଖାଯାଉଛି ଦିଗନ୍ତ ବିସ୍ତାରୀ ପର୍ବତମାଳା-ଧ୍ୟାନୀ ଯୋଗୀ ଭଳି ଶୃଙ୍ଗ ବିସ୍ତାର କରି, ତୁଷାର ମୁକୁଟ ପିନ୍ଧି ବସି ରହିଛନ୍ତି ପୁରାଣ ପୁରୁଷ ପରି ପର୍ବତ ରାଜ।

ଏଇ ତେବେ ସେଇ ଦେବତାତ୍ମା ହିମାଳୟ। ଏହାରି ବକ୍ଷରେ ବାସ କରନ୍ତି କୈଳାସ ପତି ଅକର୍ମୀ କର୍ମଦାୟୀ ଯୋଗୀଶ୍ୱର ଚନ୍ଦ୍ର ଶେଖର।

ଯଦି ଦୈବାତ୍ ତାଙ୍କ ଚରଣରେ ନିଜର ଦୟିନୀ ନିବେଦନ କରିବାର ସୁଯୋଗ ମିଳନ୍ତା ତେବେ ସେ କ'ଣ କରି ପାରନ୍ତେ ନାହିଁ ଏହାର ପ୍ରତିକାର ? ଅଥବା ସେ ମଧ ଇନ୍ଦ୍ରଙ୍କ ଭଳି ହାତ ଗୋଟାଇ ନିଜର ଅସହାୟତା ପ୍ରକାଶ କରିବେ ?

ତାଙ୍କ ଭଳି ପାପିନୀର ଭାଗ୍ୟରେ କ'ଣ ଶିବ ଦର୍ଶନର ସୁଯୋଗ ମିଳିବ ?

ମୃଗୁଣୀ-ରୂପୀ ସଂଧ୍ୟାବାଳୀ ଚକିତ ନେତ୍ରରେ ନିମ୍ନ ମୁଖୀ ହୋଇ ଉପସିତ ସନ୍ଧାନ କରିବାକୁ ଲାଗିଲେ।

କୈଳାସ ପୁରୀର ଶୋଭା ଦୂରରୁ ତାଙ୍କର ଦୃଷ୍ଟିରେ ପଡ଼ିଲା। ଆକାଶ କୋଳରେ ଅଳକା ପୁରୀ ଭଳି ହିମାଳୟ ବକ୍ଷରେ ଧବଳ ଅଭ୍ର ଖଣ୍ଡ ଭଳି ଶୋଭା ପାଉଛି ଶିବାଳୟ ଏଇ କୈଳାସ। ସଂଧ୍ୟା ନିଶ୍ଚୟ ଥରେ ଦେବଦେବଙ୍କୁ ସାକ୍ଷାତ କରିବା ନିମନ୍ତେ ଶେଷ ଚେଷ୍ଟା କରିବେ। ତାଙ୍କର ଅନ୍ତରାତ୍ମା କହୁଛି, ସେଇଠି ଅଛି ତାଙ୍କ ମୁକ୍ତିର ଚାବି କାଠି।

ନ ହେଲେ ହିମାଳୟର ଏଇ ଉତ୍ତୁଙ୍ଗ ଶୃଙ୍ଗରୁ ଭୂମିକୁ ଲକ୍ଷ୍ୟକରି ଲମ୍ଫ ଦେବେ। ଶେଷକୁ ଯାହା ଥିବ ତାଙ୍କର କପାଳରେ।

ସଂଧ୍ୟା କୈଳାସରେ ଅବତରଣ କଲେ।

ଆଗରେ ତାଙ୍କର ଜୁଟାଜୁଟ ମଣ୍ଡିତ ଚନ୍ଦ୍ରଲାଞ୍ଛନ ସର୍ପ ଭୂଷିତ ଗଙ୍ଗାଧର। ସଂଧ୍ୟାଙ୍କର ନିଜର ସୌଭାଗ୍ୟ ଉପରେ ବିଶ୍ୱାସ ଆସୁ ନଥିଲା। ସେ କେବଳ 'ମହାପ୍ରଭୁ' ବୋଲି ଉଚ୍ଚାରଣ କରି ତୁଷାର ଶଯ୍ୟାରେ ଲୋଟି ପଡ଼ିଲେ।

ନିଜର ବରାଭୟ ହସ୍ତ ହତଚେତନ ନାରୀଟିର ମସ୍ତକରେ ସ୍ଥାପନ କରି ତ୍ରିଲୋକ ପତି କହିଲେ, ପୁତ୍ରି, ବ୍ରହ୍ମା ନନ୍ଦିନୀ ! ତାଙ୍କର ନୟନ ନିମୀଳିତ ହୋଇ ଆସୁଥିଲା।

ସଂଧ୍ୟାଙ୍କର ମନେ ହେଉଥିଲା, ତାଙ୍କ ଶରୀରରେ ଆଉ କୌଣସି କ୍ଲାନ୍ତି ନାହିଁ। ମହାଦେବଙ୍କର ମମତାମୟ ସ୍ପର୍ଶରେ ଶରୀର ତାଙ୍କର ହୋଇଛି ପ୍ରଫୁଲ୍ଲ ଆଉ ସତେଜ।

ମହେଶ ନୟନ ମେଲି ଦେଖିଲେ ମୃଗ ରୂପୀ ଧାତାଙ୍କୁ। କ୍ରୋଧରେ ତାଙ୍କର ତୃତୀୟ ନୟନରୁ ସତେ ଯେମିତି ସ୍ଫୁଲିଙ୍ଗ ନିର୍ଗତ ହେଲା ଭଳି ଲାଗୁଥିଲା।

ସମଗ୍ର ସୃଷ୍ଟି ଥର ଥର ହୋଇ କମ୍ପିବାକୁ ଲାଗିଲା। ଆକାଶରୁ ଉଲ୍‌କାପାତ ହେଲା। ବଜ୍ର ବିଦ୍ୟୁତ୍ ଭରଙ୍କାଦ ଧ୍ୱନିରେ ଆକାଶ ପାତାଳ ପ୍ରକମ୍ପିତ ହେବାକୁ ଲାଗିଲା। ପାତାଳରେ ବାସୁକି ଆର୍ତ୍ତନାଦ କାରିବାକୁ ଲାଗିଲେ। 'ହେ ଦେବ ! ପାର୍ବତୀପତି, କ୍ରୋଧ ସମ୍ବରଣ କରନ୍ତୁ'- ଦେବତାମାନେ ମାତ୍ର ଏତିକି କହୁ କହୁ ଶିବ ନେତ୍ରବହ୍ନି ବ୍ରହ୍ମାଙ୍କୁ ମୁଠାଏ ପାଉଁଶରେ ପରିଣତ କରି ଦେଲା।

ପ୍ରସନ୍ନ ମୁଖରେ ବାୟୁତାଡ଼ିତ ବେତସ ଲତାଭଳି କମ୍ପୁଥିବା ମସ୍ତକରେ ହସ୍ତ ସ୍ଥାପନ କରି ଦେଇ କହିଲେ, ''ପୁତ୍ରି, ସବୁ ଅନ୍ଧାର ଶେଷ ହୁଏ, ଆଲୋକୋଜ୍ଜ୍ୱଳ ପ୍ରଭାତରେ, ଭୟ କ'ଣ ?''



# ହେ ସ୍ୱର୍ଗ ବିଦାୟ

ବିଲଙ୍କା ନଗରର ଉପକଣ୍ଠରେ ସଂଧ୍ୟା ନଇଁଥିଲା । ପଶ୍ଚିମ ଆକାଶର ବର୍ଣ୍ଣିଳ ମହୋତ୍ସବ ମଧ୍ୟରେ ସଂବୃତ କିରଣ ମରିଚିମାଳୀ ଅସ୍ତ ଯାଉଥିଲେ କ୍ଳାନ୍ତ ଏବଂ ଅବସନ୍ନ ଏକ ଯୋଦ୍ଧାଭଳି ।

ପୂର୍ବ ଆକାଶରେ ଦ୍ୱାଦଶୀର ଚନ୍ଦ୍ର ଦାୟିତ୍ୱ ଗ୍ରହଣ କରିବା ନିମନ୍ତେ ଆସି ଉପସ୍ଥିତ ହୋଇ ଗଲେଣି । କାହିଁ କେତେଦୂର ସାତସମୁଦ୍ର ତେର ନଈ ପାରି ଅଯୋଧ୍ୟାର ଆକାଶରେ ମଧ୍ୟ ଆଜି ଏମିତି ଚନ୍ଦ୍ର ଉଠିଥିବ ।

ଯୁଦ୍ଧକ୍ଷେତ୍ରରୁ ପ୍ରତ୍ୟାବୃତ୍ତ ହୋଇ ନିଜର କ୍ଳାନ୍ତ ଦେହକୁ କୁଶ ଶଯ୍ୟାରେ ଲୋଟାଇ ଦେଇ ରାମଚନ୍ଦ୍ର ଅଯୋଧ୍ୟାର କଥାହିଁ ଭାବୁଥିଲେ । ଦୁନିଆ ଆଖିରେ ସେ ସାର୍ବଭୌମ ନରପତି-ତ୍ରିଲୋକ ବିଜୟୀ ଲଙ୍କାପତି ରାବଣର ଉନ୍ନତ ଶିରକୁ ଭୂଇଁରେ ଲୋଟାଇ ସେ ନିଜ ପତ୍ନୀଙ୍କୁ ଉଦ୍ଧାର କରିବା ଦିନଠୁଁ ସାରା ସଂସାର ତାଙ୍କର ଜୟଗାନରେ ମୁଖର ଅଥଚ ସେ ନିଜେ ଜାଣନ୍ତି, ଏଥିପାଇଁ ତାଙ୍କୁ କି ମୂଲ୍ୟ ଦେବାକୁ ପଡ଼ିଛି ।

ବହୁ ତପସ୍ୟା ଫଳରେ କୁଆଡ଼େ ରାଜକୁଳରେ ଜନ୍ମନେବାର ସୌଭାଗ୍ୟ ମିଳେ । ପୁଣି ସୂର୍ଯ୍ୟପ୍ରଭବ-ପବିତ୍ର ରଘୁକୁଳରେ ଜନ୍ମନେବା ପାଇଁ କେତେ ଜନ୍ମର ପୁଣ୍ୟଫଳ ଯେ ଲୋଡ଼ା ପଡ଼ିଥିବ, ଏକଥା ଭାବିହୁଏନାହିଁ । ଅଥଚ ତାଙ୍କର ଭାଗ୍ୟବିଧାତା କିଶୋର ବୟସରୁ ତାଙ୍କୁ ନେଇ ଯେଉଁ ଖେଳ ଖେଳିବାକୁ ଆରମ୍ଭ କରିଛନ୍ତି, ଏଥିରେ ନିଜକୁ ସେ କିଭଳି ଭାଗ୍ୟବାନ ମନେ କରିବେ ?

ଧୂଳିଖେଳର ବୟସ କଟି ନଥିଲା,ବିଶ୍ୱାମିତ୍ର ମହର୍ଷି ଆସି ଅସୁର ବିନାଶ ନିମନ୍ତେ ନେଇ ଗଲେ । ସଂଘର୍ଷମୟ ପଥରେ ସେଇ ଯେ ଯାତ୍ରା ଆରମ୍ଭ ହେଲା, ତା' ଆଜି ପର୍ଯ୍ୟନ୍ତ ଶେଷ ହେଲା ନାହିଁ । ସୀତା ଲାଭ ନିମନ୍ତେ ସଂଘର୍ଷ । ବିନା କାରଣରେ ପରଶୁରାମଙ୍କ ସହିତ ଯୁଦ୍ଧ । ପ୍ରତି ନିୟତ ସଂଘର୍ଷ । ଅଯୋଧ୍ୟାରେ ତ ସଂଘର୍ଷର ଚରମ ରୂପ ତାଙ୍କୁ ଦେଖିବାକୁ ପଡ଼ିଲା ।

ଯେଉଁ ପିତା ତାଙ୍କୁ ନିଜ ପ୍ରାଣଠାରୁ ଅଧିକ କରି ଦେଖୁଥିଲେ, ଶେଷରେ ସେ ହିଁ ହେଲେ ତାଙ୍କ ମୃତ୍ୟୁର ନିମିତ୍ତ ଭାଗୀ । ସେ ଯଦି ବନ ଗମନ ନିମନ୍ତେ ଏମିତି ଏକ ତରବରିଆ ନିଷ୍ପତ୍ତି ଗ୍ରହଣ ନ କରି ମାତା କୈକେୟୀଙ୍କ ପ୍ରସ୍ତାବର ବିରୋଧ

କରିଥାଆନ୍ତେ, ତେବେ ଦୁନିଆ ହୁଏତ ତାଙ୍କୁ ନିନ୍ଦା କରିଥାଆନ୍ତା, ମାତ୍ର ସେ ପିତୃହରା ହୋଇ ନଥାନ୍ତେ ତ । ଅନ୍ତତଃ ପକ୍ଷେ ବେଦନା ସହଣୀୟ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ, ଦଶରଥ ନିଶ୍ଚୟ ଅକାଳରେ ଝରିପଡ଼ି ନ ଥାନ୍ତେ ।

ପିତୃ ସତ୍ୟ ପାଳନ ନିମନ୍ତେ ତାଙ୍କର ସତ୍ୟନିଷ୍ଠତା ପାଇଁ ଆଜି ସାରା ସଂସାର ତାଙ୍କୁ ଧନ୍ୟ ଧନ୍ୟ କରୁଛି । ମାତ୍ର ସେ ନିଜେ ତ ଜାଣନ୍ତି, ପିତା ତାଙ୍କରି ପାଇଁ ହିଁ ମୃତ୍ୟୁବରଣ କରିଛନ୍ତି । ଏ ଦୁଃଖ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଭୁଲିପାରିବେ କି ?

ଅରଣ୍ୟ ବାସର ସେଇ ସଂଘର୍ଷମୟ ଦିନଗୁଡ଼ାକ ସମ୍ପର୍କରେ ଯେତେ କମ୍ ଚିନ୍ତା କରାଯାଏ, ସେତେ ଭଲ । କାହିଁ ସମୁଦ୍ର ମଝିରେ ଲଙ୍କା ଦ୍ୱୀପ-କାହିଁ ପଞ୍ଚବଟୀ କୁଟୀରରେ ସୀତା । ଭାଗ୍ୟର ବିଡ଼ମ୍ବନାରୁ ଭୂନନ୍ଦିନୀ ଅପହୃତା ହେଲେ । ପୁଣି ଚାଲିଲା ସଂଘର୍ଷ ।

ନିର୍ଦ୍ଦୋଷ ବାଳିର ମୃତ୍ୟୁକାଳୀନ ଅଭିଯୋଗ କ'ଣ ମିଛ ଥିଲା ନା ତାକୁ କେବେ ଭୁଲିହେବ ।ପତିହରା ତାରା ଆଉ ପିତୃହରା ଅଙ୍ଗଦର ସେଇ ଘୃଣାପୂର୍ଣ୍ଣ ଦୃଷ୍ଟି ସତେ ଯେମିତି ଆଜିପର୍ଯ୍ୟନ୍ତ ତାଙ୍କୁ ଗୋଡ଼ାଉଛି ।ବାହାରେ ଯାହା କହିଲେ ମଧ ସେ ନିଜ ପାଖରେ ଅସ୍ୱୀକାର କରିବେ କେମିତି ଯେ, ନିଜର ସ୍ୱାର୍ଥ ନିମନ୍ତେ ହିଁ ସେ ନିର୍ଦ୍ଦୋଷ ବାଳିକୁ ହତ୍ୟା କରିଛନ୍ତି । ରାବଣକୁ କାଖରେ ଧରି ସଂଧ୍ୟା ତର୍ପଣ କରିଥିବା କିମ୍ବା ନିଜ ପୁଅ ଅଙ୍ଗଦକୁ ଖେଳଣା ରୂପରେ ସେଇ ଦଶଶିରକୁ ଅର୍ପଣ କରିଥିବା... ବାଳୀ ଇଚ୍ଛା କରିଥିଲେ, ଆଖି ପିଛୁଳାକେ ରାବଣକୁ ତାଙ୍କ ପାଦ ତଳେ ପକାଇ ଥାଆନ୍ତେ । ମାତ୍ର ସେ ତ ଜାଣନ୍ତି; ସେଥିରେ ତାଙ୍କର ଯଶ ଆଉ କୀର୍ତ୍ତିର ପ୍ରଚାର ହୋଇ ନଥାନ୍ତା । ସେଇଥିପାଇଁ ତ ଏ ରାଜନୀତି-ଶାସ୍ତ୍ର କହୁଛି ଯୁଦ୍ଧରେ କପଟାଚାର ବୋଲି କିଛି ନାହିଁ । ଯୋଦ୍ଧାଠାରୁ ଯାହା ଅପେକ୍ଷିତ, ତା ପାଇଁ ତାହାହିଁ ହେଉଛି ସବୁଠାରୁ ବଡ଼ ସତ୍ୟ- ଏକମାତ୍ର କର୍ତ୍ତବ୍ୟ । ହୋଇପାରେ ତାହା ପାପ ଅବା ପୁଣ୍ୟ । ଦଶଗ୍ରୀବର ପାପର ଘଡ଼ାପୂର୍ଣ୍ଣ ହୋଇଥିଲା । ତା'ରି ପାପରେ ସୁବର୍ଣ୍ଣ ଲଙ୍କା ଶ୍ମଶାନ ହେଲା । ସେ କେବଳ ନିମିତ୍ତ ଭାଗୀ ହୋଇ ରହିଲେ ।

ସୀତାଙ୍କୁ ଗ୍ରହଣ କରିବା ନିମନ୍ତେ ଏଥର ତାଙ୍କ ମନରେ ଦ୍ୱିଧା ଦେଖାଦେଲା । ସେ କ'ଣ ତେବେ ସୀତାଙ୍କୁ ସନ୍ଦେହ କରୁଥିଲେ ? ସୀତା ଯେ ପ୍ରତ୍ୟୁଷର ଶିଶିରଭିଜା ଯୁଇ ଫୁଲ ଭଳି ଶୁଭ୍ର ଆଉ କଳଙ୍କହୀନ ଏ କଥା ତାଙ୍କ ଅପେକ୍ଷା ଅଧିକ କିଏ ଜାଣିଥିଲା ? ମାତ୍ର ଦଶରଥ ପୁତ୍ର ରାମଙ୍କର ସତ୍ତା ତ ଦୁଇଭାଗରେ ବିଭକ୍ତ ହୋଇ ସାରିଥିଲା । ବ୍ୟକ୍ତି ରାମ ସୀତାଙ୍କର ସ୍ୱାମୀ-ତାଙ୍କର ନିରାପତ୍ତା ଦାୟିତ୍ୱର ଅଧିକାରୀ । ନିଜ ଜୀବନକୁ ବାଜି ଲଗାଇ ତାହା ସେ କରିବେ, କରୁଛନ୍ତି ମଧ । ମାତ୍ର ଅଯୋଧ୍ୟାପତି

ରାମଚନ୍ଦ୍ର ପ୍ରଜାମାନଙ୍କର ପ୍ରତିଭୂ, ସେମାନଙ୍କର ରୁଚି ଅନୁସାରେ ତାଙ୍କୁ ଚଳିବାକୁ ପଡ଼ିବ । ରାକ୍ଷସ ଗୃହବାସର ଅପବାଦରେ ସୀତାଙ୍କ ପ୍ରତି ସେମାନେ ଯଦି ସାମାନ୍ୟ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି, ତେବେ ସେ କ୍ଷେତ୍ରରେ ନିଜ ପବିତ୍ରତାର ପ୍ରମାଣ ସୀତାଙ୍କୁ ନିଜେ ଦେବାକୁ ପଡ଼ିବ । ବ୍ୟକ୍ତି ରାମଙ୍କର ହୃଦୟ ଫାଟିଯିବ ମାତ୍ର ପାଟି ଫିଟିବ ନାହିଁ । ରାଜା ରାମ ନୀରବ ରହିବାକୁ ବାଧ୍ୟ ।

ତେଣୁ ଅଗ୍ନି ପରୀକ୍ଷା । ସେ ଦିନ ସାରା ସଂସାର ଛିଛି କରି ଉଠିଥିଲା । ରାମଚନ୍ଦ୍ର ନିଜେ କୋଉ ସୀତାଙ୍କ ଆଡ଼କୁ ଅନାଇ ପାରିଥିଲେ ? ବ୍ୟକ୍ତିଗତ ନିନ୍ଦା ଆଉ ସମାଲୋଚନା ଭିତରେ ତାଙ୍କୁ ତଥାପି ଆତ୍ମସନ୍ତୋଷ ମିଳିଥିଲା-ଏଥର ସୀତାଙ୍କ ଶୁଚିତା ସମ୍ପର୍କରେ କେହି ପଦେ ହେଲେ ଉଚ୍ଚାରଣ କରି ପାରିବେ ନାହିଁ ।

ତା'ପରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ । ଅଭିଷେକ ସମାରୋହ । ସ୍ୱପ୍ନଭଳି କଟି ଯାଇଥିଲା କେଇଟିଦିନ । ସମ୍ବାଦ ତ ମଝିରେ ମଝିରେ ମିଳୁଥିଲା । ବିଳଙ୍କାର ସେଇ ସହସ୍ରଶିର ରାବଣ ବଳଦର୍ପରେ ସ୍ୱର୍ଗମର୍ତ୍ତ୍ୟ ପାତାଳରେ ହାହାକାର ସୃଷ୍ଟି କରିଛି । ସ୍ୱର୍ଗର ଦେବତାମାନେ ମଧ୍ୟ ତାର ଅତ୍ୟାଚାରରେ ତ୍ରାହି ତ୍ରାହି ଡାକ ଛାଡୁଛନ୍ତି । ପୃଥିବୀ ଦୁଃଖୀ ହୋଇ ଯାଇଛି ପୁନର୍ବାର ଏବଂ ଏଇ କ୍ଷତ ତାଙ୍କୁହିଁ ଆରୋଗ୍ୟ କରିବାକୁ ପଡ଼ିବ ।

ମୁକୁଟମଣ୍ଡିତ ରାଜଶିରର ଲଲାଟରେ ନିରବଚ୍ଛିନ୍ନ ଶାନ୍ତି କାହିଁ ? ପୁଣି ସେଇ ଯୁଦ୍ଧକ୍ଷେତ୍ରର ବିଭୀଷିକା । ଅସ୍ତ୍ର ଶସ୍ତ୍ରର ଝଙ୍କାର । ଆହତର ଆର୍ତ୍ତନାଦ । ମୃତ୍ୟୁର ଯନ୍ତ୍ରଣା । ଶିବା ଶକୁନିର ଉଲ୍ଲାସ । ଆହା, ପୃଥିବୀ ପୃଷ୍ଠରୁଯୁଦ୍ଧର ବିଭୀଷିକାକୁ କେହି ନିଜ ହାତରେ ଲିଭାଇ ଦିଅନ୍ତା ନାହିଁ ? ରକ୍ତସ୍ରୋତରେ ଏ ସୁନ୍ଦର ସୃଷ୍ଟିକୁ ଭସାଇ କ'ଣ ମିଳେ ?

ମିଳେ କେବଳ ଅହଙ୍କାରର ପରିତୃପ୍ତି ।ଯୁଦ୍ଧ ନିବୃତ୍ତ ରାମଚନ୍ଦ୍ର ଶଯ୍ୟାରେ ଶୋଇରହି ଚିନ୍ତା କରୁଥିଲେ । ଯେତେପ୍ରକାର କୌଶଳ ତାଙ୍କୁ ଜଣାଥିଲା, ତାହାସେ ପ୍ରୟୋଗ କରି ସାରିଛନ୍ତି । ତଥାପି ଦୈତ୍ୟ ଦୁର୍ଜ୍ଜେୟ ରହିଛି ।

ହନୁମାନର ସାନ୍ତ୍ୱନା ତାଙ୍କୁ ସ୍ୱସ୍ତି ଦେଇପାରି ନାହିଁ । ନିଜ ଉପରୁ ତାଙ୍କର ଭରସା ତୁଟି ତୁଟି ଆସୁଛି । ଦଶଶିରକୁ ସଂହାର କରିବାରେ ପରେ ତାଙ୍କ ମନରେ ଯେଉଁ ଅହଙ୍କାର ସୃଷ୍ଟି ହୋଇଥିଲା, ତାହା ଏଥର ବାଷ୍ପଭଳି ମିଳାଇ ଯିବାକୁ ଆରମ୍ଭ କରିଛି । ଆତ୍ମଗ୍ଲାନିରେ ତାଙ୍କର ମୁଣ୍ଡ ନଇଁ ଯାଇଛି ।

ଭଗବାନ୍ ଜାଣନ୍ତି ଏ ଭଳି ଏକ ଯୁଦ୍ଧରେ ଅନାହୂତ ଜଡ଼ିତହୋଇ ପଡ଼ିବା ତାଙ୍କର କାମ୍ୟ ନ ଥିଲା । ଯୁଦ୍ଧ ବିଗ୍ରହରେ କଟିଯାଇଥିବା ତାଙ୍କର ପୂର୍ବାହ୍ନର ଉତ୍ତର ପର୍ବକୁ ତେଣୁ ସେ ଯଥା ସମ୍ଭବ ନିରୁପଦ୍ରବ ନିର୍ଦ୍ୱନ୍ଦ୍ୱ ରୂପରେ କଟାଇବାକୁ ଚାହିଁଥିଲେ ।

ମାତ୍ର କାହିଁ ଶାନ୍ତି ?ଶାନ୍ତିର ପଛରେ ଗୋଡ଼ାଇଲେ ହୁଏତ ମରିଚିକା ପଛରେ ଗୋଡ଼ାଇବା ଭଳି ଅସଫଳ ହିଁ ହେବାକୁ ପଡ଼େ ।ସେଥିରେ ଶୋଷ ବଢ଼େ ସିନା ପାଣି ମିଳିବ କୁଆଡୁ ?

ଦେବତାମାନେ ହିଁ ତାଙ୍କର ଏ ଦୁର୍ଦ୍ଦଶା ପାଇଁ ଦାୟୀ । ଦୈତ୍ୟର ଉତ୍ପାତରେ ସେମାନେ ଅସ୍ଥିର ହୋଇ ପଡ଼ିଥିଲେ ।ଏହାକୁ ସଂହାର କରିବା ସେମାନଙ୍କର ଶକ୍ତିର ବହିର୍ଭୂତ ଥିଲା ।

କେମିତି ବା ସେ ସେମାନଙ୍କୁ ନାସ୍ତିକରି ଖାଲି ହାତରେ ଫେରାଇ ଦେଇଥାଆନ୍ତେ ? ଯୁଗେ ଯୁଗେ ଦେବକୁଳ ଯେତେବେଳେ ଲାଂଛିତ ହୋଇଛି, ସେତେବେଳେ ଦେବତାମାନେ ରଘୁକୁଳର ଶରଣାପନ୍ନ ହୋଇଛନ୍ତି । ରଘୁବଂଶର ମହାନ ପରମ୍ପରାର ସେ ଜଣେ ଅନୁଗତ ଶିଷ୍ୟ । ସେହି ମହାନ ପରମ୍ପରାର ଆବରଣ ଯେପର୍ଯ୍ୟନ୍ତ ତାଙ୍କୁ ଆଚ୍ଛାଦିତ କରି ରଖିଛି, ସେପର୍ଯ୍ୟନ୍ତ ସେ ଜୀବନ ବିନିମୟରେ ସୁଦ୍ଧା ତାହାର ମର୍ଯ୍ୟାଦା ରକ୍ଷା କରିବେ ।

ଯୁଦ୍ଧର ବିଭୀଷିକା ତାଙ୍କର ଶ୍ରେୟ ନୁହେଁ । ଉତ୍ତେଜନା ଏବଂ ଉଲ୍ଲାସର ଘନଘଟା ମଧ୍ୟରେ ଅଶାନ୍ତ ଚିତ୍ତ ତାଙ୍କର ବୁନ୍ଦାଏ ଶାନ୍ତିବାରି ନିମନ୍ତେ କିଭଳି ତୃଷାର୍ତ୍ତ ହୋଇ ରହିଛି, ତାହା କିଏ ବୁଝିଲା ? ଯେଉଁ ବିଧାତା କ୍ଷତ୍ରିୟର ଲଲାଟପଟରେ ଯୁଦ୍ଧ ବିଗ୍ରହର ରକ୍ତାକ୍ଷରା ଭବିତବ୍ୟ ଲେଖିଦେଲା, ତା' ଚରଣରେ କୋଟି କୋଟି ନମସ୍କାର । ତାଙ୍କ ପାଇଁ ଜୀବନରୁ ମୁକ୍ତି ହିଁ ହେଉଛି ଯୁଦ୍ଧରୁ ମୁକ୍ତି ।

ଜନ୍ମ ଲଗ୍ନରୁ ତାଙ୍କୁ ଏମିତି ଶିକ୍ଷା ଦିଆଯାଇଛି । ଯୁଦ୍ଧପାଇଁ ତାଙ୍କର ଚିନ୍ତା ନାହିଁ । ଜୀବନ ତ ତାଙ୍କ ପାଇଁ ଆଉ ବିଳାସର କ୍ଷେତ୍ର ନୁହେଁ, ବରଂ ସଂଗ୍ରାମର ଏକ ପୌରୁଷବ୍ୟଞ୍ଜକ କ୍ଷେତ୍ର । ଅସ୍ତ୍ର ହାତରେ ଯୁଦ୍ଧକ୍ଷେତ୍ରରେ ମୃତ୍ୟୁକୋଳରେ ଢଳିପଡ଼ିବା ଅପେକ୍ଷା କ୍ଷତ୍ରିୟର ଆଉ ବାଂଛିତ କ'ଣ ଥାଇପାରେ ?

ଚୌଦ ବର୍ଷର ବନବାସରେ ଜୀବନ ଆଉ ମୃତ୍ୟୁର ସଂଘାତ ସୂତ୍ରରେ ଦୋଳାୟମାନ ଅସହାୟ ନିଃସଙ୍ଗ ଅବସ୍ଥା ଅପେକ୍ଷା ବର୍ତ୍ତମାନ ତାଙ୍କର ସ୍ଥିତି ଅଧିକ ସୁଦୃଢ଼ । ଦୁଷ୍ଟ ଲଙ୍କେଶ୍ୱରଙ୍କୁ ମାରିବା ନିମନ୍ତେ ଯୁଦ୍ଧ ଯାତ୍ରାରେ ବାହାରିବା ନିମନ୍ତେ ସେ ସର୍ବାଂଶରେ ପ୍ରସ୍ତୁତ ।

ତାଙ୍କୁ ଚିନ୍ତାରେ ପକାଇଛି ବୈଦେହୀଙ୍କର ଆପେକ୍ଷମୂଳକ ଅନୁଯୋଗ । ଅନୁଯୋଗ ନୁହେଁତ-ଏହା ବରଂ ସ୍ୱୀତିକୃତ ଉଲ୍ଲଙ୍ଘଅହଙ୍କାରର ଉଦ୍‌ଗାରଣ । ସେଦିନ ତାଙ୍କର ନୟନ ଏବଂ କଣ୍ଠରୁ ଯୁଗପତ୍ ଯେଉଁ ସୁତୀକ୍ଷଣ ଶାୟକମାନ ଛୁଟି ଚାଲିଥିଲା,

ରାମଚନ୍ଦ୍ରଙ୍କର ତହିଁରେ କି ଧରଣର ପ୍ରତିକ୍ରିୟା ହେବ, ଜାନକୀଙ୍କର ସେଥିପ୍ରତି ଟିକେହେଲେ ଦୃକ୍‌ପାତ ନଥିଲା।

ବିଲଙ୍କା ଯାତ୍ରା କରିବା ପୂର୍ବରୁ ରାମଚନ୍ଦ୍ର ଜାନକୀଙ୍କଠାରୁ ବିଦାୟ ନେବା ନିମନ୍ତେ ରାଣୀହଂସ ପୁରକୁ ଯାଇଥିଲେ । ସୀତା ପୂର୍ବଭଳି ଏଥର ମଧ୍ୟ ରାମଙ୍କ ସହିତ ବିଲଙ୍କା ଯାତ୍ରା ନିମନ୍ତେ ଜିଦ୍‌ଧରି ବସିଲେ ।

ରାମଚନ୍ଦ୍ର ପ୍ରଥମେ ଅନୁନୟ କଲେ । ତା'ପରେ ଭୟ ଦେଖାଇଲେ ଏବଂ ତହିଁରେ ଅକୃତକାର୍ଯ୍ୟ ହୋଇ ଧମକ ଦେବାକୁ ଆରମ୍ଭ କଲେ ।

କିଛିରେ କିଛି ହେଲା ନାହିଁ । ରାମଚନ୍ଦ୍ର ବାଧ୍ୟ ହୋଇ କହିଲେ- ନାରୀ ମାତ୍ରେ ହିଁ ଅପରିଣାମଦର୍ଶୀ ଏବଂ ଦୁର୍ବଳା । ଏତେଶୀଘ୍ର ବନବାସର ଦୁର୍ଭୋଗ ଭୁଲିଯିବା ନ ହେଲେ ସମ୍ଭବ ହୁଅନ୍ତା କିପରି ?

ସୀତା ଏକ ବିଚିତ୍ର ଦୃଷ୍ଟିରେ ରାମଙ୍କ ଆଡ଼େ ଅନାଇଲେ । ତାଙ୍କ ଆଖିରେ ଅପରିଚିତର ବିସ୍ମୟ ଫୁଟିଉଠିଲା । ଏ କିଏ ତାଙ୍କ ଆଗରେ ବସିଛନ୍ତି ? ଏ କ'ଣ ରଘୁକୁଳତିଳକ, ବନବାସର ଅସହଣୀୟ ଦୁଃଖ ଯାହାଙ୍କ ସାନ୍ନିଧ୍ୟରେ ପ୍ରୀତିସ୍ନିଗ୍ଧ ହୋଇ ଉଠିଥିଲା ? ଏ କ'ଣ ସେଇ ତାଙ୍କ ପାଦରେ କଣ୍ଟାଟିଏ ଫୁଟିଲେ ଯିଏ ହୃଦୟରେ ଶୂଳବିଦ୍ଧ ହେବାର ବେଦନା ଅନୁଭବ କରୁଥିଲେ ? ଏ କ'ଣ ସେଇ ମର୍ଯ୍ୟାଦା ପୁରୁଷୋତ୍ତମ ପତ୍ନୀର ମର୍ଯ୍ୟାଦା ରକ୍ଷା କରିବା ନିମନ୍ତେ ଯିଏ ନିଜ ଜୀବନକୁ ବାଜି ଲଗାଇ ଦେଇଥିଲେ ?

ଉଦ୍ଦେଳ ଆବେଗକୁ ଧୈର୍ଯ୍ୟର ରଜ୍ଜୁରେ ସମ୍ବରଣ କରି ଜନକ ନନ୍ଦିନୀ କହିବା ନିମନ୍ତେ ପାଟି ଖୋଲିଲେ । ତାଙ୍କର ସ୍ଫୁରିତ ଓଷ୍ଠାଧର ସ୍ଫୀତ ନାସାପୁଟ ଏବଂ ଦ୍ରୁତବକ୍ଷ ସ୍ପନ୍ଦନରୁ ତାଙ୍କର ମାନସିକ ଅବସ୍ଥା ଜଣାପଡୁଥିଲା । ସୀତା କହିଲେ ରଘୁନନ୍ଦନ, ବନବାସରେ ମୋ ନିମନ୍ତେ ତମକୁ ବହୁତ ଦୁଃଖ ଭୋଗିବାକୁ ପଡ଼ିଛି । କିନ୍ତୁ ମୋର ଯନ୍ତ୍ରଣା ତ କିଛି କମ୍ ନୁହେଁ । ଏତେ ଦୁର୍ଭୋଗ ଭିତରେ ବି ମୋର ସବୁଠାରୁ ବଡ଼ ସାନ୍ତ୍ୱନା ଥିଲା, ଦୁଃଖର ସାଗରରେ ଆମେ ପାଖାପାଖି ପହଁରି ଚାଲିଛେ । ଅଯୋଧ୍ୟାର ରାଜସିଂହାସନରେ ତମ ବାମପାର୍ଶ୍ୱରେ ଏକ ସୁସଜ୍ଜିତା ପ୍ରତିମା ଭଳି ବସିବା ପାଇଁ ମୁଁ ତମକୁ ବିବାହ କରି ନଥିଲି । ସ୍ୱାମୀର ଯଶକୀର୍ତ୍ତିର ଉତ୍ତରୋତ୍ତର ପ୍ରସାର ଦେଖିବାବି ତ' ସ୍ତ୍ରୀର କାମ ।

ରାମ ଚକିତ ହେଲେ । ସୀତା ଏ କ'ଣ କହୁଛନ୍ତି ? ରାବଣ ଗୃହରେ ବନ୍ଦିନୀ ହୋଇ ସୀତା ତେବେ ରାମଙ୍କର ଯଶକୀର୍ତ୍ତିର ପ୍ରସାର ନିମନ୍ତେ ଉଦ୍ୟମ କରୁଥିଲେ ? ଏ କ'ଣ ସତ୍ୟ ନା ପରିହାସ ?

ରାମଙ୍କର ମନ ଭିତରକୁ ଅନ୍ତର୍ଭେଦୀ ଦୃଷ୍ଟିରେ ଅନାଇ ସୀତା ପୁଣି କହିଲେ-ପରିହାସ ନୁହେଁ, ରାବଣାରି । ରାବଣର ନିଧନରେ ସୀତାର ଭୂମିକା କଥା ତମର ଅଭିଜ୍ଞ ମନରେ କିପରି ଧରାପଡ଼ିଲା ନାହିଁ, ତାହାହିଁ ତ ଆଶ୍ଚର୍ଯ୍ୟ ।

ଆଶ୍ଚର୍ଯ୍ୟ ତ ନୁହେଁ, ପରମାଶ୍ଚର୍ଯ୍ୟ । ଅଶୋକ ବନରେ ରାକ୍ଷସୀ ପରିବୃତା ସୀତାଙ୍କର ଜୀବନ ଯେତେବେଳେ ସାମାନ୍ୟ ସୂକ୍ଷ୍ମ ସୂତ୍ର ଖଣ୍ଡକରେ ଝୁଲି ରହିଥିଲା, ସେତେବେଳେ ସେ ପୁଣି ତ୍ରିପୁରବିଜୟୀ ରାବଣ ନିଧନରେ ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି ।

ସୀତା ପୁଣି କହିଲେ-ତମେ ପୁରୁଷ. ହାତରେ ଅସ୍ତ୍ର ଖଣ୍ଡେ ଧରି ଭାବିବସ, ସୃଷ୍ଟିରେ ତମେ ହିଁ ହେଉଛ ଏକମାତ୍ର ଶୁରବୀର । ଶିରୀଷ କୋମଳ ନାରୀ ଅନ୍ତପୁରର ଶୋଭା ସିନା । ଯୁଦ୍ଧକ୍ଷେତ୍ରରେ ତମର ଅହଙ୍କାର, ତାକୁ ଅତିକ୍ରମ କରିଯିବା ପାଇଁ ତମର ପ୍ରାଣାନ୍ତ ଉଦ୍ୟମ, ଶକ୍ତିଶାଳୀ, କ୍ଷମତାଶାଳୀ ହେବା ପାଇଁ ତମର ଅଦମ୍ୟ ଆକାଂକ୍ଷା, ଏହାର କୌଣସି ତୁଳନା ନାହିଁ । ପ୍ରଜ୍ୱଳିତ ଅଗ୍ନିଭଳି ତମର ସେଇ ଲାଳସା, ପ୍ରମତ୍ତ ଢେଉଭଳି ତମର କାମନା-ଥରେ ତା'ର ଖୋଳ ଭିତରୁ ବାହାରି ଆସି ଦୁନିଆକୁ ଦେଖ । ତାହା ହେଲେ ତମେ ସ୍ୱୟଂ ବୁଝିପାରିବ ଯେ, ଯେଉଁ ନାରୀକୁ ତମେ ଦୁର୍ବଳ ବୋଲି ଏତେ ଦିନ ଭାବି ଆସିଛ, ପ୍ରକୃତରେ ସେ କିଛି କମ୍ ଶକ୍ତି ଧରେ ନାହିଁ । ପୃଥିବୀର କେଉଁ ବସ୍ତୁର ନିଜସ୍ୱ ଶକ୍ତି ନାହିଁ ?

ରାମଚନ୍ଦ୍ର ଅଧୈର୍ଯ୍ୟ ହୋଇ ପଡ଼ିଥିଲେ । ସୀତାଙ୍କର ଏଭଳି ରୂପ ସହିତ ସେ ପୂର୍ବରୁ ପରିଚିତ ନଥିଲେ । ନାରୀର ବୁଦ୍ଧିବୃତ୍ତି ସମ୍ପର୍କରେ ତାଙ୍କର ଶ୍ରଦ୍ଧା ରହିଛି ସତ୍ୟ, ମାତ୍ର ସୀତା କେଉଁ ଯୁକ୍ତିରେ ନିଜକୁ ରାମଙ୍କର ସମକକ୍ଷ ବୋଲି ଦାବି କରିବେ ? ଏକଥା ଯିଏ ଶୁଣିବ ...ଜଣେ ସମର୍ପିତ ସ୍ୱାମୀ ହେବାର ଅର୍ଥ ଏହା ତ ନୁହେଁ ଯେ ପତ୍ନୀର ଅହଙ୍କାରର ବୋଝ ତଳେ ଚାପିହୋଇ ରହିବା । ଅଗତ୍ୟା ସେ କହିଲେ-ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ତମେ କ'ଣ ସେଇ...

ଅକମ୍ପିତ ସ୍ଥିର କଣ୍ଠରେ ସୀତା ଉତ୍ତର ଦେଲେ ତମର ଅହଙ୍କାରୀ ଦେହ, ମନ ଆଉ ଆତ୍ମାର ନିର୍ମୋକ ତ୍ୟାଗକରି ଥରେ ମୋ' ଆଡ଼କୁ ଅନାଅ ।ବୁଝିପାରିବ ମୁଁ ପ୍ରକୃତରେ କ'ଣ । ତମର ଅସ୍ତ୍ରଶସ୍ତ୍ର ରାବଣ ବଧର ନିମିତ୍ତ ଭାଗୀ ହୋଇପାରେ । ମାତ୍ର ଏଥିରେ ସୀତାର ଭୂମିକାକୁ ମଧ୍ୟ ହେୟ ଦୃଷ୍ଟିରେ ଦେଖାଯିବା ଉଚିତ ନୁହେଁ । ରାମର କ୍ଷାତ୍ର ତେଜ ସହିତ ସୀତାର ଅଦମନୀୟ ଶକ୍ତିର ସମନ୍ୱୟରେ ହିଁ ରାବଣ ନିଧନ ।

କେବଳ ରାମଚନ୍ଦ୍ର କାହିଁକି, କୌଣସି ପୁରୁଷ ଏଭଳି ପ୍ରଳାପରେ ବିଶ୍ୱାସ କରନ୍ତି ନାହିଁ । ନାରୀ ସଖୀ, ଲଳିତକଳା ବିଧିରେ ନର୍ମସଙ୍ଗିନୀ ହୋଇ ପାରେ, ମନ୍ତ୍ରୀ ହୋଇପାରେ-ଏହି ପର୍ଯ୍ୟନ୍ତ ସେ ନାରୀତ୍ୱକୁ ସ୍ୱୀକୃତି ଦେଇ ପାରନ୍ତି । ଶତ୍ରୁ ଦମନରେ, ରାଜ୍ୟ ଜୟରେ ଦିଗ୍‌ବିଜୟରେ ନାରୀର ଅବଦାନ ଶୂନ୍ୟ ସିନା । ନାରୀର ସ୍ରଷ୍ଟା ତ ତାକୁ ସେ ଦୃଷ୍ଟିରୁ ଅପାରଗ କରି ଗଢିଛନ୍ତି । ରାମଙ୍କୁ ଆକ୍ଷେପ କରି ଲାଭ କ'ଣ ?

ଦୀର୍ଘଦିନର ସଂଗୁପ୍ତ ବେଦନା ଏଇ ମୁହୂର୍ତ୍ତରେ ଯେମିତି ପ୍ରବଳ ବେଗରେ ବାହାରି ଆସୁଥିଲା । ସୀତା କହୁଥିଲେ-ତମେ ପୁରୁଷର ଏକଦେଶଦର୍ଶୀ ଦୃଷ୍ଟିନେଇ କେମିତି ବୁଝିବ, ଏଇ ସୁନାପଞ୍ଜୁରୀ ଭିତରେ ବନ୍ଦିନୀ ସୀତା ପୃଥିବୀଟାକୁ ଦେଖିଦେଖି କେମିତି ହାହୁତାଶରେ ସମୟ କଟାଉଛି- ସୀତା ସତେ ଯେମିତି ଅଳକାପୁରୀର ରାଜଜେମା । ଅଥଚ ଦେଖ-ଏ ବିରାଟ ମେଘ ରାଇଜରେ ତା'ର ନିଜର ବୋଲି କେହି ନାହିଁ ।

ପ୍ରାଚୁର୍ଯ୍ୟ ଜୀବନ ପାଇଁ ଏକମାତ୍ର ସୁଖର ଉତ୍ସ ନୁହେଁ ରଘୁବୀର । ତମେ ତ ଏକଥା ନିଶ୍ଚୟ ସ୍ୱୀକାର କରିବ ଯେ, ଜୀବନର ସାର୍ଥକତା ସ୍ୱୀକୃତିରେ । ଟିକିଏ ସ୍ୱୀକୃତି ମଣିଷକୁ ଯେଉଁ ଆନନ୍ଦ ଦିଏ, କୁବେରପୁରୀର ଐଶ୍ୱର୍ଯ୍ୟ ତା' ପାଖରେ କେତେ ତୁଚ୍ଛ । ନାରୀ ବି ତ ମଣିଷ । ପୁରୁଷ ଶାସିତ ସମାଜରେ ମୁଣ୍ଡଟେକି ବାହାର ଦୁନିଆକୁ ଦେଖିବା, ତା ପାଇଁ ଦୁଃସାହସ ହୋଇପାରେ । ମାତ୍ର ଅନ୍ୟାୟ ତ ନୁହେଁ ।

ରାମଚନ୍ଦ୍ର ବୁଝିଲେ, କାରଣ ଯାହା ହେଉ ନା କାହିଁକି ବୈଦେହୀ ଆଜି ଉତ୍ତେଜିତ ହୋଇଛନ୍ତି । ନଚେତ୍ ତାଙ୍କ ଭଳି ଜଣେ ମିତ୍‌ବାକ୍ ନାରୀ ମୁହଁରୁ ଏ ଅପ୍ରାସଙ୍ଗିକ କଥା ବାହାରନ୍ତା ନାହିଁ । ତେଣୁ ସେ ଚୁପ୍‌ଚାପ୍ ଉଠି ଠିଆହେଲେ । ଏହା ବିଦାୟ ନେବାର ପୂର୍ବ ସଙ୍କେତ ।

ଭୂନନ୍ଦିନୀ ମଧ୍ୟ ଆସନ ତ୍ୟାଗ କଲେ । ରାମଚନ୍ଦ୍ରଙ୍କ ଆଡ଼େ ଅନାଇ କହିଲେ - ଏଇ ମୁହୂର୍ତ୍ତରେ ତମେ ମୋ କଥା ବିଶ୍ୱାସ କଲ ନାହିଁ । ତମେ ମୋତେ ଡାକିଲେ ମଧ୍ୟ ମୁଁ ତୁମ ସହିତ ବିଲଙ୍କା ଯାଉନାହିଁ । ମାତ୍ର ମୁଁ ଜାଣେ, ଯେପର୍ଯ୍ୟନ୍ତ ଜନକନନ୍ଦିନୀ ସୀତା ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ନ ହୋଇଛି, ସେ ପର୍ଯ୍ୟନ୍ତ ସହସ୍ର ଶିର ରାବଣର ମୃତ୍ୟୁ ନାହିଁ । ମୁଁ ତମର ନିମନ୍ତ୍ରଣକୁ ଅପେକ୍ଷା କରିବି ।

ରାମଚନ୍ଦ୍ର ବାହାରି ଆସିଥିଲେ । ଆଜି ସେସବୁ ତାଙ୍କର ଗୋଟିଏକ ପରେ ଗୋଟିଏ ମନେ ପଡ଼ିଯାଉଛି ସହସ୍ରଶିର ରାବଣ ଦ୍ୱାରା ବାରମ୍ବାର ପର୍ଯ୍ୟୁଦସ୍ତ ହେଲା ପରେ ।

ଦେବତାମାନଙ୍କ ନିକଟରେ ସେ ଇତିମଧ୍ୟରେ ନିଜର ଅସହାୟତା ପ୍ରକାଶ କରିସାରିଛନ୍ତି । ମନେପଡୁଛି ଭୂକନ୍ୟାଙ୍କର ଅଭିମାନଭରା ଖେଦୋକ୍ତି । ମନେରଖିବ ରଘୁରାଣ, ରାଜରାଜେଶ୍ୱରୀ ହୋଇ ମଧ୍ୟ ଆଜି ସୀତା ଠାରୁ ଦରିଦ୍ର କେହି ନାହିଁ । ଖାଲି ସୀତା କାହିଁକି, ଆଜି ସମଗ୍ର ନାରୀ ଜାତିଟାହିଁ ଦରିଦ୍ର ହୋଇପଡ଼ିଚି । ଆଉ ଯିଏ ଦରିଦ୍ର ତା'ର ପୁଣି ଗୋଟାଏ ନିରାପତ୍ତା କ'ଣ ? ଘରର ବାହାରର ସମସ୍ତ ଆଘାତ ଜାଣ ତାହାର ପ୍ରାପ୍ୟ । ଅତ୍ୟାଚାରିତ ହେବା ହେଉଛି ତାହାର ଲଲାଟ ଲିଖନ । ଆଉ ଏ ଆଘାତ ତାକୁ କିଏ ଦେଉଛି ଜାଣଚି ? ତା'ର ପ୍ରିୟତମ ପୁରୁଷ !! ହାୟ...

ସକଳ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ସୀତା ଆଜି ସର୍ବହରା । ଦାରିଦ୍ର୍ୟର ବିଳାସ ହେଉଚି ସୀତାଙ୍କ ପାଇଁ ବେଦନା । ବଡ଼ ଆଶ୍ଚର୍ଯ୍ୟର କଥା, ଦେବତାମାନେ ଯୋଡ଼ହସ୍ତ ହୋଇ ତାଙ୍କୁ ଜାନକୀଙ୍କର ସାହାଯ୍ୟ ପ୍ରାର୍ଥନା ନିମନ୍ତେ ନିବେଦନ କରିଛନ୍ତି । ସୀତା ଯୁଦ୍ଧ କ୍ଷେତ୍ରକୁ ନ ଆସିଲେ କୁଆଡ଼େ ଅସୁରର ବିନାଶ ହେବ ନାହିଁ । ଦେବତାଙ୍କର କାର୍ଯ୍ୟସାଧନ ନିମନ୍ତେ ସ୍ୱୟଂ ଲକ୍ଷ୍ମୀଠାକୁରାଣୀ ସୀତା ରୂପରେ ଜନ୍ମ ନେଇଛନ୍ତି । ରାମ ଯେ ନିଜେବିଷ୍ଣୁ ଅଂଶୀ । ଏଥିକୁ ବିଷ୍ଣୁ ଆଉ ଲକ୍ଷ୍ମୀଙ୍କର ସମ୍ମିଳିତ ଶକ୍ତି ଦୈତ୍ୟବଧ ନିମନ୍ତେ ସକ୍ରିୟ ନ ହେଲେ ଦେବକୁଳ ଅନାଥ ହୋଇଯିବେ । ଯଥାଶୀଘ୍ର ଚିତ୍ରସେନ ଗନ୍ଧର୍ବଙ୍କୁ ପ୍ରେରଣ କରି ଅଯୋଧ୍ୟାରୁ ସୀତାଙ୍କୁ ଯୁଦ୍ଧ କ୍ଷେତ୍ରକୁ ଅଣାଇ ଯୁଦ୍ଧର ପରିସମାପ୍ତି ଘଟାଯାଉ ।

ପୁଣି ସେଇ ସୀତା । ଯୁଦ୍ଧ ଜୟ ନିମନ୍ତେ ତାଙ୍କରି ପାଖରେ ଶରଣ ଯାଚ୍ଞା କରିବାକୁ ହେବ ? ଯାହାଙ୍କ ପାଖରୁ ସେ ଗର୍ବରେ ମଥାଟେକି ଚାଲି ଆସିଛନ୍ତି, ଏବେ ପୁଣି ମୁଣ୍ଡ ନୁଆଁଇ ତାଙ୍କ ପାଖରେ ସାହାଯ୍ୟ ଭିକ୍ଷା କରିବେ । ସେ ରାବଣବିଜୟୀ, ତାଡ଼କା ହନ୍ତାରକ, ଅହଲ୍ୟାରକ୍ଷକ, ପୁରୁଷ ଶ୍ରେଷ୍ଠ ରଘୁକୁଳ ତିଳକ - ରାମଚନ୍ଦ୍ର ସାହାଯ୍ୟ ଲୋଡ଼ିବେ ଜଣେ ନାରୀଠାରୁ ଅନ୍ୟର ଆଶ୍ରୟ ହେଉଛି ଯାହାର ଧର୍ମ !

ତା' ଅପେକ୍ଷା ବରଂ ରାମଚନ୍ଦ୍ର ସନ୍ନ୍ୟାସ ନେବେ । ଅରଣ୍ୟଚାରୀ ହୋଇ, ଜୀବନର ବାକି ଦିନଗୁଡ଼ିକ କଟାଇଦେବେ । ବରଂ ଅଯୋଧ୍ୟାକୁ ଫେରିବେ ନାହିଁ । ସୀତାଙ୍କର ଓଷ୍ଠାଧରର ବିଦ୍ରୂପବ୍ୟଞ୍ଜକ ଧାରେ ହସ ଦେଖିବା ଅପେକ୍ଷା ମୃତ୍ୟୁ ତାଙ୍କ ପକ୍ଷରେ ବରଂ ଶ୍ରେୟସ୍କର ।

ସୀତାଙ୍କର ବାକ୍ୟବାଣ ଯୋଜନ ଯୋଜନ ଦୂର ଅତିକ୍ରମ କରି ରାମଚନ୍ଦ୍ରଙ୍କ କାନରେ ଆଘାତ ହାଣୁଛି। ସୀତା କହିଥିଲେ, ବ୍ୟକ୍ତିଗତ ସଙ୍କଟର ସନ୍ଧିକ୍ଷଣରେ ପ୍ରତ୍ୟେକଟି ପୁରୁଷ ହେଉଛନ୍ତି ରାମଚନ୍ଦ୍ର ଅଥବା ମହିଷାସୁର; କେହି ପ୍ରେମିକର ଛଦ୍ମବେଶରେ ଅଗ୍ନିକୁଣ୍ଡରେ ଝାସ ଦେବାକୁ କହିବେ 'ପ୍ରିୟତମା ନାରୀକୁ । କେହି

ଅବାପ୍ରକାଶ୍ୟ ଦିବାଲୋକରେ ବିବସ୍ତ୍ର କରିବାକୁ ଚାହିଁବେ । ନାରୀ ଯେମିତି କେବଳ ତାର ଅଧିକାରର ପଣ୍ୟ ସାମଗ୍ରୀ । ପ୍ରିୟତମା ହୋଇ ରହିବାକୁ ହେଲେ ନାରୀକୁ ଅର୍ପଣ କରିବାକୁ ହେବ ନମନୀୟ ହାସ୍ୟ । ତାହାହେଲେ ହିଁ ଅତୁଟ ରହିବ ନାରୀ ପୁରୁଷର ପ୍ରେମର ବନ୍ଧନ । ପ୍ରେମ ତାହାହେଲେ ଏତେ ନିଷ୍ଠୁର !

ସୀତା ଆହୁରି କହିଥିଲେ, ଜାଣ ରଘୁବୀର । ନାରୀ ପାଇଁ ଏ ସଂସାର ହେଉଛି ଏକ ବନ୍ଦୀଗୃହ । କେବଳ ରକ୍ଷକର ପରିବର୍ତ୍ତନ ହୁଏ ଯାହା । କେତେବେଳେ ପିତା, କେତେବେଳେ ସ୍ୱାମୀ, କେତେବେଳେ ଅବା ପୁତ୍ର । ସଂସାରର ଏଇ ବନ୍ଦୀଶାଳାର ଜଞ୍ଜିରରେ ସ୍ନେହ, ପ୍ରେମ ଭଲପାଇବାର ଗୋଟାଏ ଆବରଣ ଥାଏ । ଆବରଣଟା ଖସିପଡ଼ିଲେ ସବୁ ଏକାକାର । ପୃଥିବୀର ଏଇ ନିୟମ । ଯାହାର ଶକ୍ତି ବେଶି ତାର କଥା ହିଁ ହେଉଛି ଆଇନ୍ । ଜୋର୍ ମଧ୍ୟ ତାହାରି ।

ଏତେସବୁ ଘଟଣା ଘଟିଗଲା ପରେ ସେ ସୀତାଙ୍କୁ ଆସିବାକୁ ନିମନ୍ତ୍ରଣ ପଠାଇବେ ? ବଡ଼ ମୁହଁରେ ତାଙ୍କ ପାଖରେ ପ୍ରତିଜ୍ଞା କରିଆସିଛନ୍ତି, ବିଲଙ୍କା ରାବଣକୁ ଏକା ହତ୍ୟା କରିବା ନିମନ୍ତେ । ତା'ର କ'ଣ ହେବ ? ସେ ବରଂ ନମରୁ । ଦେବକାର୍ଯ୍ୟ ଅସମାପ୍ତ ରହୁ । ସେ ତପସ୍ୟା କରିବା ନିମନ୍ତେ ଅରଣ୍ୟବାସ କରିବେ ।

ଅଭିଯୋଗର ଭିତ୍ତି ଉପରେ ପରିବାରର ସୁଖ ଆଉ ସମୃଦ୍ଧି ଠିଆ ହୁଏନାହିଁ । ରାମ-ପରିବାର ବିରୁଦ୍ଧରେ ସୀତାଙ୍କର ଅଭିଯୋଗର ସୀମା ନାହିଁ । ସୀତା ଭୁଲିଯାଇଛନ୍ତି, ରାମ ତାଙ୍କ ପ୍ରତି କେତେ ଅନୁରକ୍ତ, ତାଙ୍କ ପାଇଁ ସେ ଉତ୍ତାଳ ସମୁଦ୍ରରେ ବନ୍ଧ ବାନ୍ଧିଛନ୍ତି । କେତେ ଦୁର୍ଲଂଘ୍ୟ ନଦୀ ଗିରିବନ ପର୍ବତ ଅତିକ୍ରମ କରିଛନ୍ତି । ବାନର ଭଲୁକମାନଙ୍କ ସହ ମିତ୍ରତା କରିଛନ୍ତି । ଏ ସବୁର କିଛି ମୂଲ୍ୟ ନାହିଁ ? କିମ୍ବା ସୀତାମାନେ କେବେ ହିଁ ଭଲ ପାଇବାର ମର୍ଯ୍ୟାଦା ବୁଝନ୍ତି ନାହିଁ ! ନିଷ୍ପତ୍ତି ଯାହା ନିଆଯାଏ, ତାହା ତ ପରିବାରର ମଙ୍ଗଳ କାମନାରେ ହିଁ ନିଆଯାଏ । ସେଥିରେ ନାରୀର ମତ କିଏ କେତେ ଲୋଡ଼େ ? ନାରୀ ବି ପରିବାରର ଏକ ଅଙ୍ଗ । ତା'ର ଅମଙ୍ଗଳ ହେଲେ ପୁରୁଷ ଯେ ତହିଁରେ ଜଡ଼ିତ ହୋଇପଡ଼େ, ଏକଥା ସୀତା ବୁଝନ୍ତି ନାହିଁ କାହିଁକି ? ସବୁବେଳେ ନାରୀର ମୁହଁକୁ ଚାହିଁ ବସିଲେ ସଂସାର ଚଳେ ନାହିଁ । ଏହାକୁ ଯଦି ସୀତା ପୁରୁଷର ସ୍ୱେଚ୍ଛାଚାର ବୋଲି ମନେକରନ୍ତି, ନିଜର ଅପମାନ ବୋଲି ମନେ କରନ୍ତି, ତେବେ ରାମ ନାଚାର । ଉପାୟ ଶୂନ୍ୟ ।

ସୀତାଙ୍କର ଅହଂକାର ବି ଲଜ୍ଜାଜନକ ! ସାରା ସୃଷ୍ଟି ଦେଖିଲା, ଲଙ୍କାପତି ରାବଣର ନିଧନ ରାମଚନ୍ଦ୍ରଙ୍କ ତୀକ୍ଷ୍ଣ ଶାୟକରେ । ଏବେ ସୀତା ଦାବି କରୁଛନ୍ତି ଯେ, ରାବଣ ନିଧନରେ ତାଙ୍କର ଭୂମିକା ଅଗ୍ରଗଣ୍ୟ ! ଯୁଦ୍ଧ କ'ଣ ଶିଶୁର କ୍ରୀଡ଼ା କ୍ଷେତ୍ର ?

ଏତେ କଥା ଜାଣିଲା ପରେ ସୁଦ୍ଧା ସୀତା ନିଜର ମତରେ ଅଟଳ । ମାତା କୈକେୟୀଙ୍କର ସ୍ୱାର୍ଥଜଡ଼ିତ ଅନମନୀୟତା ଦିନେ ଏମିତି ରଘୁକୁଳର ସର୍ବନାଶକୁ ନିମନ୍ତ୍ରଣ କରି ଆଣିଥିଲା । ଦଶରଥ ପରିବାରର ସୁଖଶାନ୍ତିକୁ ଚିର ତରେ ବିନଷ୍ଟ କରିଥିଲା । ସେତେବେଳେ ଯଦି ପିତା ସାମାନ୍ୟ ଦୃଢ଼ତା ଦେଖାଇ ଥାଆନ୍ତେ, ତାହାହେଲେ ତାଙ୍କୁ କ'ଣ ଏମିତି ଅକାଳରେ ଝରିପଡ଼ିବାକୁ ହୋଇଥାଆନ୍ତା, ନା ଚଉଦ ବର୍ଷର ନିର୍ବାସନୀ ଦୁର୍ଭୋଗ ରାମଙ୍କୁ ଭୋଗିବାକୁ ପଡ଼ିଥାଆନ୍ତା ?

ସ୍ୱାର୍ଥପରତାର ଅନ୍ୟନାମ ହେଉଛି ନାରୀ । ଦଶରଥ ଯେଉଁ ଭୁଲ କରିଥିଲେ, ରାମଚନ୍ଦ୍ର ଆଉ ସେ ଭୁଲ କରିବେ ନାହିଁ । ସୀତା ତାଙ୍କ ମତରେ ଅଟଳ ଥାଆନ୍ତୁ । ରାମଙ୍କ ବିରୁଦ୍ଧରେ ତାଙ୍କର ଅଭିଯୋଗର ପରିମାଣ ବଢ଼ି ବଢ଼ି ଚାଲୁ । ରାମଙ୍କୁ ନିଜ ନିଷ୍ପତ୍ତିରେ ଅଟଳ ରହିବାକୁ ହିଁ ପଡ଼ିବ ।

ଦେବତାମାନଙ୍କ କାକୁତିମିନତିର କୌଣସି ଅର୍ଥ ତାଙ୍କ ପାଖରେ ନାହିଁ । ସେ ସୀତାଙ୍କ ନିକଟରେ ନତମସ୍ତକ ହୋଇ କ୍ଷମା ମାଗିବେ ନାହିଁ - ମାଗିପାରିବେ ନାହିଁ । କ୍ଷମା କ'ଣ ପାଇଁ ? କ୍ଷମା ମାଗିଲେ ତ ଅପରାଧ ସ୍ୱୀକାର କରିନେବାକୁ ହୁଏ । ସେଥିରେ କାହାର ଲଜ୍ଜା ?

କି ଅପରାଧ ସେ କରିଛନ୍ତି ? ସେ ତ କେବଳ ତାହାହିଁ କରିଛନ୍ତି, ଯୁଗଯୁଗ ଧରି ପୁରୁଷ ସମାଜ ଯାହା କରିଆସିଛି, ଏଥିରେ ଦୋଷ କେଉଁଠି ରହିଲା ?

ସୀତାଙ୍କର ସହଯୋଗ ପ୍ରାର୍ଥନା କରି ସେ ଯୁଗଯୁଗ ପାଇଁ ପୁରୁଷ ସମାଜର ମଥାରେ ଶାଶ୍ୱତ କଳଙ୍କର ଟୀକା ପିନ୍ଧାଇ ଦେଇ ପାରିବେ ନାହିଁ । କାଲି ଇତିହାସ ତାଙ୍କୁ କ'ଣ କହିବ ? ତ୍ରିଲୋକବିଜୟୀ ରାମ ରାକ୍ଷସବଧ ନିମନ୍ତେ ସହାୟତା ଲୋଡ଼ିଥିଲେ ଜଣେ ନାରୀପାଖରୁ ? ନାଃ-ତା ଅପେକ୍ଷା ତାଙ୍କର ମୃତ୍ୟୁ ହେଉ । ତାଙ୍କର ମାଂସ ଶିବାଶକୁନର ଆହାର ହେଉ । ନିନ୍ଦିତ ହେଉ ତାଙ୍କର ବୀରତ୍ୱ ।ରାମନାମ କାଳିମାଯୁକ୍ତ ହେଉ । ନିଜ ପାଇଁ ସେ ଗୋଟିଏ ସମାଜକୁ କଳଙ୍କିତ କରିପାରିବେ ନାହିଁ । ମୁଣ୍ଡ ତାଙ୍କର କଟିଯିବ ପଛେ ନଇଁବ ନାହିଁ ।

ପୁଣି ସୀତାଙ୍କର ସେଇ ବିଦ୍ରୂପ ବାକ୍ୟ କାନରେ ପଡୁଛି । ଶାସ୍ତ୍ର ପୁରାଣ ନୀତି ନିୟମ ସବୁ ପୁଣି ପୁରୁଷର ସୃଷ୍ଟି । ସେଇ ଶାସ୍ତ୍ରରେ ପୁରୁଷ ଲେଖିଛି, ସ୍ୱାମୀ ହିଁ ହେଉଛି ନାରୀର ସହତରେ, ଦେବତା, ବ୍ରତ ତୀର୍ଥ ପୂଜା ହୋମ ସବୁ । ଆନୁଗତ୍ୟ ଦାସ୍ୟ ଯେଉଁ ଦେଶର ନାରୀଠାରୁ ସଦାସର୍ବଦା କାମନା କରାଯାଇ ଆସିଛି ସେଠାରେ ସେ ରାମଚନ୍ଦ୍ରଙ୍କୁ ବ୍ୟତିକ୍ରମ ବୋଲି ମନେ କରିବେ କିପରି ?

ପୁରୁଷ ସଦାସର୍ବଦା ଚାହେଁ ଅଖଣ୍ଡ ପ୍ରେମ । କେତେ ଅଭିମାନ, ଅପମାନ ଆଉ ଯନ୍ତ୍ରଣା ଗୋପନ କରି ନାରୀ ଯେ ତାକୁ ଭଲ ପାଉଛି, ତାହା ପୁରୁଷର ଜାଣିବା କଥା ନୁହେଁ । ଯୁଗଯୁଗାନ୍ତ ଧରି ଏହାହିଁ ତ ଚାଲିଛି ।

ଏକଥା ରାମଚନ୍ଦ୍ର ଜାଣନ୍ତି ନାହିଁ । କୌଣସି ପୁରୁଷ ଜାଣିବେ ନାହିଁ କେବେ ।

ସେ କେବଳ ନିଜ ମତରେ ଅଟଳ ରହି ଚୁପ୍‌ଚାପ୍ ବିଦାୟ ନେବାର ସିଦ୍ଧାନ୍ତ ନେଇପାରନ୍ତି ।



# ପ୍ରତିହତ ଆଶା

ସମଗ୍ର ଶାଲ୍ମଳୀ ଦ୍ୱୀପ ନୈରାଶ୍ୟର ଅନ୍ଧକାରରେ ବୁଡ଼ି ଯାଇଥିଲା । ଆଶାର ସାମାନ୍ୟ ଆଲୋକ ବର୍ତ୍ତିକାଟିଏ କାହିଁ କେଉଁଆଡ଼େ ଆଖିରେ ପଡୁ ନ ଥିଲା । ବୁଦ୍ଧିସାଗର ମନ୍ତ୍ରୀ ସିଂହାସନାରୂଢ଼ ବିଷଣ୍ଣ ସମ୍ରାଟ ଭୂପାଳକେଶରୀଙ୍କ ସମ୍ମୁଖରେ ଯୋଡ଼ହସ୍ତ ହୋଇ ନିବେଦନ କରୁଥିଲେ, 'ଦୁଇଦିନ ସମୟ କିଛି କମ୍ ନୁହେଁ ମଣିମା । ଉଦ୍‌ଯୋଗ ତ ନିଶ୍ଚୟ କରିବାକୁ ହେବ।'

ଭୂପାଳକେଶରୀ ସତେ ଯେମିତି ବାକ୍ୟହରା ହୋଇ ଯାଇଥିଲେ । ତାଙ୍କ ଓଠ ଦୁଇଟି କୌଣସି ଅବ୍ୟକ୍ତ ବେଦନାରେ ଥରଥର ହୋଇ କମ୍ପି ଉଠୁଥିଲା । ସେ କେବଳ ମନ୍ତ୍ରୀଙ୍କ ଆଡ଼େ ବେଦନାକାତର ଦୃଷ୍ଟିରେ ଅନାଇ ରହିଥିଲେ ।

ମନ୍ତ୍ରୀ ତଥାପି କହୁଥିଲେ-ଧୈର୍ଯ୍ୟ ଧରନ୍ତୁ ମଣିମା ।

ସେ ପଟେ ଅନ୍ତଃପୁରରେ ମହାଦେଈଙ୍କର ଅବସ୍ଥା ଯେ ଆହୁରି ଶୋଚନୀୟ । ଦିନ ଯେତେ ଗଡୁଥିଲା, ତାଙ୍କର ଅସ୍ଥିରତା ସେତେ ବଢୁଥିଲା । ନୀତିକାନ୍ତି, ଦେବାର୍ଚ୍ଚନ ଧ୍ୟାନ କେଉଁଥିରେ ତାଙ୍କର ମନ ନାହିଁ । ଇଷ୍ଟଦେବ ଭୈରବନାଥଙ୍କ ପାଦତଳେ ନିଷ୍ପଲକ ଦୃଷ୍ଟିରେ ତାଙ୍କରି ମୂର୍ତ୍ତିକୁ ଅନାଇ ବସିଛନ୍ତି । ମନ ତାଙ୍କର ବିଳପି ଉଠୁଛି-ଏ କ'ଣ କଲ ଠାକୁରେ ?

ରାଜମହିଷୀ ସୁଜାତି ସତେ ଯେମିତି ଶୂନ୍ୟରେ ଭାସୁଛନ୍ତି ।

ଅଥଚ ସ୍ୱୟଂ ବ୍ୟାସଦେବଙ୍କ ପ୍ରଦତ୍ତ ଚରୁଅନ୍ନର ପରିଣାମ ସ୍ୱରୂପ ଯେତେବେଳେ ଏହି ଭୁବନମୋହିନୀ କନ୍ୟା ପ୍ରଥମ ଆଲୋକ ଦେଖିଥିଲା , ସେତେବେଳେ ରତିନିନ୍ଦିତ ତାହାର ଦେବଦୁର୍ଲଭ ରୂପବିଭାରେ ଶାଲ୍ମଳୀ ରାଜପୁରୀ ସତେ ଯେମିତି ଆଲୋକମୟ ହୋଇ ଉଠିଥିଲା । ସେଇଥିପାଇଁ ତ ସ୍ୱୟଂ ବ୍ୟାସ ତାହାର ନାମକରଣ କରିଥିଲେ 'ମଦନାମତୀ' ।

ଉତ୍ସବମୁଖର ଶାଲ୍ମଳୀ ରାଜ୍ୟ ତା'ର ଜନ୍ମ ପରଠୁ ସତେ ଯେମିତି ଉତ୍ସବମୟ ହୋଇ ଉଠିଥିଲା । ଶିଶୁକନ୍ୟାର ନିତ୍ୟ ନୂତନ ବାଳଲୀଳା ଦର୍ଶନରେ ପିତାମାତା ତ ସାଧାରଣ କଥା-ସମଗ୍ର ରାଜପୁର ପୁଲକିତ ହୋଇ ଉଠୁଥିଲା । ରାଣୀ ତ ରାଣୀ,

ସ୍ୱୟଂ ଭୂପାଳକେଶରୀ ମଧ୍ୟ ନିମିଷକ ପାଇଁ ଏଇ ଚଳମାନ ପିତୁଳୀଟିକୁ ଆଖି ଆଗରୁ ଅନ୍ତର କରୁନଥିଲେ ।

ଦିନ ବହି ଯାଉଥିଲା ପାଣି ପରି । ସେଦିନର ସେଇ ନରମ ତୁଳା ମେଣ୍ଟା ଭଳି ଆନନ୍ଦ ପ୍ରତିମାଟି ଆଜି ଏକ ପରିପୂର୍ଣ୍ଣ ଯୁବତୀ ଏବଂ ଯୌବନମାନେ ହିଁ ତ ସମସ୍ୟା । ସମଗ୍ର ସଂସାରକୁ ପଦାନତ କରିବାର ଦୁର୍ବାର କାମନା ଯେଉଁ ଜୀବନର ତା'ର ପରିଧିରେ ସଂଘର୍ଷ ହିଁ ତ ଦେଖା ଦେବ । ସେଇଥି ପାଇଁ ଆପେ ବଞ୍ଚିଲେ ଯାଇଁ ଭଲଭାବରେ ବଞ୍ଚିରହିବାର କଳାକୌଶଳ ଶିଖାଯାଇପାରିବ ।

ମହାରାଣୀ ସୁକାନ୍ତିଙ୍କର ସୁଖର ସଂସାରରେ ଆଜି ଅଦିନିଆ ଝଡ଼ ଦେଖାଦେଇଛି ମଦନାବତୀ ପାଇଁ । ରୂପ ଆଉ ଗୁଣରେ ଅନନ୍ୟା କରି ଦେଇ, ତା'ର ସ୍ରଷ୍ଟା ବୋଧହୁଏ ତରଙ୍ଗ ଶୀର୍ଷରେ ନାଚି ବୁଲିବାର ଜୀବନ ଦେଇ ତାକୁ ସଂସାରକୁ ପଠାଇଛନ୍ତି ।

ମଦନାବତୀ ତ ଭାସୁଛି, ତା' ସହିତ ପିତାମାତା ଭାଇ ସମସ୍ତେ ନାଚୁଛନ୍ତି । ସୁଖର ପାଖକୁ ଯେତେ ଲାଗି ଲାଗି ଯାଉଛନ୍ତି, ଦୁଷ୍ଟ କ୍ରୀଡ଼ାଚପଳ ବଣିଚୁଆଟି ପରି ତାହା ସେତେ ଦୂରକୁ ପଳାଇବାରେ ଲାଗିଛି ।

ସୁକାନ୍ତି ଭାବୁଛନ୍ତି, ସଂସାରରେ ପ୍ରକୃତରେ ସୁଖରେ ରହିବାର କୌଶଳ କ'ଣ ? ବିବେକ ଚେତାଇ ଦେଉଥିଲା-ଦୁଃଖକୁ ମାନିନେବାର ମାନସିକ ପ୍ରସ୍ତୁତି କିମ୍ବା ରିକ୍ତତା ଭିତରେ ପୂର୍ଣ୍ଣତାର ଅନୁଭୂତି ପ୍ରତ୍ୟାଶା ବର୍ଜିତ ଜୀବନ । ଏଇ ସବୁକୁ ତ ନେଇ ସୁଖ । ସଂସାରରେ କେହି କାହାରିକୁ କିଛି ଦିଏ ନାହିଁ, ବରଂ ପାରିଲେ ଛଡ଼ାଇ ନେବାକୁ ହୁଏ । ଏଇ ସାଧାରଣ ସତ୍ୟଟି ରାଜା ଭୂପାଳଙ୍କ ଅଭିଜ୍ଞ ମନରେ ଧରାପଡୁ ନାହିଁ । ତଥାପି ସେ ବିଶ୍ୱାସ କରନ୍ତି, କିଛି ଗୋଟାଏ ନିଶ୍ଚୟ ଘଟିବ । ନିର୍ଦ୍ଧାରିତ ସମୟ ପୂରିଯିବା ଆଗରୁ ହିଁ କ'ଣ ଗୋଟାଏ ହୋଇଯିବ ।

ସୁକାନ୍ତିଙ୍କର କିନ୍ତୁ ଏତେ ଧୈର୍ଯ୍ୟ ନାହିଁ । ପ୍ରଥମରୁ ସେ ଭୂପାଳଙ୍କୁ ସାବଧାନ କରାଇ ଦେଇଥିଲେ । ରାଜରାଜୁଡ଼ା ପରିବାରରେ ଝିଅଟିକୁ ଛନ୍ଦିଦେଇ ତାକୁ ସେ ଚିରଦିନ ପାଇଁ ବିସର୍ଜନ ଦେଇ ପାରିବେ ନାହିଁ । ହେଉ ପଛେ କୁଳଗୌରବହୀନ ପିଲାଟି ମାତ୍ର ଗୁଣର ହୋଇଥିବ । ଚରିତ୍ର କଥା ତ ଜାଣ ସବା ଆଗ । ରୂପଟି ଏକା ଜେମାଙ୍କ ଲାଖି ହୋଇଥିବ ।

ମାତ୍ର ଭୂପାଳ କୋଉ ତାଙ୍କ କଥା ଶୁଣିଲେ ? ଏଡ଼େ ରୂପର ଗୁଣର ଝିଅଟିକୁ ସେ ଗୋଟାଏ ମୂଳିଆ ହାତରେ ଟେକିଦେବେ ? ତା' ପୂର୍ବରୁ ସେ ନିଜ ହାତରେ ନିଜ ଝିଅର ତଣ୍ଟି ଚିପି ଦେବେ ନାହିଁ ? ଜୀବନଟା ତ ଗୋଟାଏ ଖେଳ । ଭାରି ସାବଧାନ

ହୋଇ ଏଠି ସାର ଟଳାଇବାକୁ ହୁଏ । ଟିକିଏ ଭୁଲକଲେ, ସାରା ଜୀବନ ଧରି ଅନୁତାପ କରିବାକୁ ହୁଏ । ଭୂପାଳ କେବେ ଭୁଲ ହେବ ବୋଲି ଭାବି, ତେବେ ଦାନ ପକାଇବେ ନାହିଁ ?

ଚାରମାନେ ସମ୍ବାଦ ଆଣୁଥିଲେ, ମର୍ତ୍ତ୍ୟମଣ୍ଡଳରେ ଜେମାଦେଈ ସମକକ୍ଷ ପାତ୍ର ନାହାନ୍ତି । ଥିଲେ ଥିବେ ଅବା ସ୍ୱର୍ଗରେ । ଏଥର ରାଜା ପ୍ରକୃତରେ ଚିନ୍ତିତ ହୋଇ ପଡ଼ିଥିଲେ । ଅଗତ୍ୟା ବ୍ୟାସଦେବଙ୍କର ଶରଣ ପଶିବାକୁହେଲା ।

ବ୍ୟାସଦେବ ସ୍ୱୟମ୍ବରର ବିଧାନ ନେଇ ଯେଉଁ ସର୍ତ୍ତର ଆରୋପ କରିଥିଲେ, ତାହା ଅଗ୍ନିସମ୍ଭବା ଦ୍ରୌପଦୀଙ୍କ ବିବାହପାଇଁ ଦ୍ରୁପଦ ମଧ କରି ନ ଥିବେ । ସୁକାନ୍ତି ଏବେ ମଧ ଏହାର ପ୍ରତ୍ୟେକ ଚରଣକୁ ସ୍ପଷ୍ଟ ଭାବରେ ମନେ ରଖିଛନ୍ତି । ଯେଉଁ ଗୋଲକଧନ୍ଦା ବ୍ୟାସଦେବଙ୍କ ନିର୍ଦ୍ଦେଶରେ ସୃଷ୍ଟି କରାଯାଇଛି, ତହିଁରୁ ମୁକୁଳିବା ସ୍ୱୟଂ ଅର୍ଜୁନଙ୍କ ପକ୍ଷରେ ସମ୍ଭବ ହୋଇଥାନ୍ତା କି ?

ସବୁତ ସେଇ ଲାଖବିନ୍ଧା ବ୍ୟାପାର । ରାଜବାଟିଠାରୁ ଅର୍ଦ୍ଧକୋଶ ଦୂରରେ ଉନ୍ମୁକ୍ତ ପ୍ରାନ୍ତର ମଝିରେ ନିର୍ମାଣ କରାଯାଇଛି ପାଷାଣର ଏକ ଉଚ୍ଚସ୍ତମ୍ଭ । ସ୍ତମ୍ଭ ଉପରେ ରଖାଯାଇଛି, ମୃଗର ଗୋଟିଏ ଶୃଙ୍ଗ । ତଥି ଉପରେ ସ୍ଥାପିତ ହୋଇଛି ଗୁବାକ ଫଳଟି । ତଥି ଉପରେ ଗୁଞ୍ଜ ଫଳ, ତାହା ଉପରେ ପୁଣି ଅକ୍ଷତ ଶୋରିଷ ଦାନାଟିଏ । ଗୋଟିଏ ବିଶାଳକାୟ ଶକଟ-ଚକ୍ର ଦ୍ୱାରା ସୋରିଷଟିକୁ ପ୍ରାୟ ଆବୃତ କରି ରଖାଯାଇଛି । ତା' ଆଗରେ ସ୍ଥାପିତ ହୋଇଛି ଦର୍ପଣର ଏକ ଟେରା ବାଡ଼ । ବର୍ତ୍ତମାନ ସର୍ତ୍ତ ହେଉଛିଯେ, ପ୍ରତିଯୋଗୀ ଦର୍ପଣକୁ ମାତ୍ର ଅନାଇ ଅନାଇ, ଧନୁଟିକୁ ପିଠି ଆଡ଼କୁ ରଖି ଏଭଳି ଶର ସନ୍ଧାନ କରିବ, ଯେମିତି ଅଖ ରନ୍ଧ୍ର ଭିତର ଦେଇ, ଶର ଯାଇ ବାଜିବ ଠିକ୍ ସୋରିଷ ଦେହରେ । ସୋରିଷ ଦୁଇଫାଳ ହୋଇଯିବ । ମାତ୍ର ଗୁବାକ, ଗୁଞ୍ଜଫଳ, ଶୃଙ୍ଗ ସବୁ ସେମିତି ରହିଥିବେ ।

ଭୂପାଳ କେଶରୀ ତନ୍ନ ତନ୍ନ କରି ସ୍ୱୟମ୍ବରର ସର୍ତ୍ତ ରାଜାମାନଙ୍କୁ ବୁଝାଇ ଦେଇଥିଲେ । ତା'ପରେ ଆରମ୍ଭ ହେବ ଲାଖବିନ୍ଧା ପର୍ବ ।

କେଡ଼େ କେଡ଼େ ବୀରମାନେ ତ ଆସିଥିଲେ । ଶୁଣାଶୁଣିରେ ଜମ୍ବୁଦ୍ୱୀପର ପାଞ୍ଚଲକ୍ଷ ରାଜା କନ୍ୟା ନିମନ୍ତେ ସ୍ୱୟମ୍ବର ସଭାରେ ଯୋଗ ଦେଇଥିଲେ । ଧନୁକୁ ଦେଖି ଆଉ ରାଜାଙ୍କର ସର୍ତ୍ତ ଶୁଣିବା ପରେ କେତେ ବୀରଙ୍କ ମୁହଁ ମଉଳି ଯାଇଥିଲା ।

ପୁନଙ୍ଗ ଦେଶର ରାଜା ଜାନୁଘଣ୍ଟ । ସେ ତ ମୁହଁ ଖୋଲି ସ୍ପଷ୍ଟ ଭାବରେ ଭୂପାଳ କେଶରୀଙ୍କୁ କହି ପକାଇଲେ - ଏ ସର୍ତ୍ତ ପୂରଣ କରିବା ସ୍ୱୟଂ ହରିହରଙ୍କ ପକ୍ଷରେ ମଧ ଅସାଧ୍ୟ । କନ୍ୟାର ଲଲାଟରେ ଅବିବାହୀ ହେବା ଯୋଗ ରହିଛି ।

ଭୂପାଳ କେଶରୀ ତଥାପି ନିରାଶ ହୋଇ ନ ଥିଲେ । ସମସ୍ୟା ଥିଲେ, ତା'ର ସମାଧାନ ମଧ୍ୟ ନିଶ୍ଚୟ ଅଛି । ଜମ୍ବୁଦ୍ୱୀପ ନିଶ୍ଚୟ ବୀରଶୂନ୍ୟ ହୋଇନାହିଁ । ଦ୍ରୌପଦୀଙ୍କ ପାଇଁ ତ ପୁଣି ଅର୍ଜୁନ ବାହାରି ଥିଲେ । ମଦନାବତୀ ନିମନ୍ତେ ନିଶ୍ଚୟ କେହି ଜନ୍ମ ହୋଇଥିବେ ।

ଲାଖବିନ୍ଧା ଆରମ୍ଭ ହେଉ ।

ଏହି ସମୟରେ ସଭାରେ ପ୍ରବେଶ କରିଥିଲା ମଦନାବତୀ । ରୂପର ତେଜରେ ଚାରିଦିଗ ସତେ ଯେମିତି ଉଜ୍ଜଳ ହୋଇ ଉଠିଥିଲା । ହାତରେ ଜୈତ୍ରମାଳ ଧରି ମଦନାବତୀ ଯେତେବେଳେ ସଖୀମାନଙ୍କ ଗହଣରେ ପାହୁଣ୍ଡ ପକାଇ ଗଜଗମନରେ ଉପସ୍ଥିତ ରାଜନ୍ୟମଣ୍ଡଳୀ ଆଗ ଦେଇ ତା'ର ଆସନ ଆଡ଼କୁ ଯାଉଥିଲା, ସେତେବେଳେ ଆଖପାଖର ରାଜାଙ୍କ ମୁଖମଣ୍ଡଳରେ ସତେ ଯେମିତି ଲକ୍ଷେ ଚନ୍ଦ୍ର ଉଦିଆର ରୋଷଣି ଜଳି ଉଠୁଥିଲା । କେତେ ରାଜା ତ ଆସନରୁ ଉଠିପଡ଼ି କନ୍ୟା ଆଡ଼କୁ ନିଜର ଗ୍ରୀବା ବଢ଼ାଇ ଦେଇଥିଲେ ଅଜ୍ଞାତସାରରେ ।

ମଦନାବତୀ କିନ୍ତୁ ଅବିଚଳିତ ଭାବରେ ଭୂମିଦୃଷ୍ଟି ହୋଇ ଆଗେଇ ଚାଲିଥିଲା । ଯେଉଁ ରାଜାମାନଙ୍କୁ ସେ ଅତିକ୍ରମ କରି ଯାଉଥିଲା, ସେମାନଙ୍କ ମୁଖମଣ୍ଡଳ ଯେମିତି କୁହୂ ନିଶାର ତିମିରିତ ଅନ୍ଧକାରରେ ଭରିଯାଉଥିଲା । ବକ୍ଷଫଟାଇ ବାହାରି ଆସୁଥିଲା ହତାଶାର ଦୀର୍ଘଶ୍ୱାସ ।

ତା' ପରେ ଆରମ୍ଭ ହୋଇଥିଲା ଲାଖବନ୍ଧା ପର୍ବ ।ଘୋଷକର ଘୋଷଣା ସହିତ ତାଳଦେଇ କେଡ଼େ ସମ୍ଭର୍ମରେ ରାଜାମାନେ ଜଣଙ୍କ ପରେ ଜଣେ ଉଠି ମଣ୍ଡପ ଆଡ଼େ ଯାଉଥିଲେ । ଗଲାବେଳେ ତ ଯାଉଥିଲେ, ଚତୁର୍ଦ୍ଦିଗକୁ ତାଚ୍ଛଲ୍ୟ ଦୃଷ୍ଟିରେ ଅନାଇ ବୀରକେଶରେ ହାତ ଫେରାଇ ବାହାସ୍ଫୋଟ ମାରି ଭୃଇଁ ଦୁଲୁକାଇ କେଡ଼େ ଆଡ଼ମ୍ବରରେ । ମାତ୍ର ଅଳ୍ପ ସମୟପରେ ଫେରି ଆସୁଥିଲେ, ମୁହଁଟି ମାନ ଶୁଖାଇ ଅବନତ ମସ୍ତକରେ ପରାଜୟର ସମସ୍ତ ବେଦନା ଆଉ ଲାଞ୍ଛନା ନେଇ ।

କେହି କେହି ପୁଣି ମୁହଁମାଡ଼ି ଦେହ ବୁଲାଇ ଆସ୍ଥାନ ମଣ୍ଡପ ଉପରେ କଚାଡ଼ି ପଡୁଥିଲେ । ଲାଖ ବିନ୍ଧିବେ କ'ଣ ?

ପୁଣି ଉଠିଲେ ରାଜା ବଜ୍ରମାଳୀ- କେଡ଼େ ଆଟୋପରେ ।ଗର୍ଜନ କରି କହିଲେ -ଛାର ଗୋଟାଏ ଲାଖ । ଜମ୍ବୁଦ୍ୱୀପର ଅଗଣିତ ରାଜା କେହି ଜଣେ ହେଲେ, ତହିଁରେ ଶର ସନ୍ଧାନ କରିପାରିଲେ ନାହିଁ ? ،

ଭୂପାଳ ତାଙ୍କ ଆଡ଼କୁ ପ୍ରତ୍ୟାଶା ପୂର୍ଣ ଦୃଷ୍ଟିରେ ଚାହିଁଥିଲେ । ବଜ୍ରମାଳୀ ପୁଣି ହୁଙ୍କାର ଛାଡ଼ିଥିଲେ - ଗୋ' ଭୂମି କନ୍ୟା ଯେ ବିଧି ନିର୍ଦ୍ଦିଷ୍ଟ । ମାର୍ଜାର କାହୁଁ ଲଭିବ କେଶରିଣୀର ହସ୍ତ । ଏଇ ମୁହୂର୍ତ୍ତରେ ଲାଖ ବିନ୍ଧି ମୁଁ କନ୍ୟାକୁ ପ୍ରାପ୍ତ କରୁଛି ।

ମାତ୍ର ଯେତିକି ଆଡ଼ମ୍ବରରେ ସେ ଆସିଥିଲେ, ସେତିକି ହୀନସ୍ତା ହୋଇ ମୁହଁ ଲୁଚାଇ ଲେଉଟି ଯିବାକୁ ତାଙ୍କୁ ମୁହୂର୍ତ୍ତେବି ଲାଗିଲା ନାହିଁ ।

ରାଜପୁତ୍ର ମଧୁ ଆଉ ମାଧବ ଅନ୍ତରର କୁରୁଳା ହସକୁ ବହୁ କଷ୍ଟରେ ଛପାଇ ଦୁଇବାହୁ ଧରି ବହୁ କଷ୍ଟରେ ତାଙ୍କୁ ନିଜର ଆସନ ଆଡ଼କୁ ଫେରାଇ ନେଇଥିଲେ ।

ସମଗ୍ର ସଭା ସ୍ତବ୍‌ଧ ହୋଇ ଯାଇଥିଲା । ଜାଣିଶୁଣି ଆଉ ଅପମାନିତ ହେବା ନିମନ୍ତେ କେହି ଭରସୁ ନ ଥିଲେ ।

ଅଗତ୍ୟା ରାଜା କେଶରୀ ସଭାର ମଧ୍ୟସ୍ଥଳକୁ ଆସିଥିଲେ । ନତଦୃଷ୍ଟି ରାଜନ୍ୟମଣ୍ଡଳୀର ବିଶୁଷ୍କ ମୁଖମଣ୍ଡଳ, ଚାରିଆଡ଼ର ହତାଶଭାବ ସତେ ଯେମିତି ତାଙ୍କୁ ପଦେ ପଦେ ଯନ୍ତ୍ରଣା ଜର୍ଜରିତ କରୁଥିଲା ।ହଜି ଯାଇଥିବା ସାହସକୁ ସାଉଁଟି ଆଣୁ ଆଣୁ ରାଜା କହିଥିଲେ -ଏ କଥା ବିଶ୍ୱାସ କରିବା ପାଇଁ ମୋତେ ପ୍ରକୃତରେ କଷ୍ଟ ହେଉଛି ଯେ, ସମଗ୍ର ବିଶ୍ୱ ଆଜି ବୀରଶୂନ୍ୟ ହୋଇଛି । ସ୍ୱୟଂ ବ୍ୟାସଦେବ ଯେତେବେଳେ ଏହି ଲାଖବନ୍ଧା ଯଜ୍ଞର ଉଦ୍‌ଗାତା, ନିଶ୍ଚୟ ଏଥିରୁ ସୁଫଳ ମିଳିବ । ପଞ୍ଚବିଂଶ ଦିବସ ବ୍ୟାପି ଏହି ମହାଯଜ୍ଞରୁ ଇତିମଧ୍ୟରେ ଊନବିଂଶ ଦିବସ ଅତିକ୍ରାନ୍ତ ହୋଇଯାଇଛି । ଆଗରେ ଅଛି ମାତ୍ର ଷଡ଼ ଦିବସ । ବର୍ତ୍ତମାନ ମୁଁ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଯେକୌଣସି ପ୍ରତିଯୋଗିଙ୍କୁ ଏହି ପ୍ରତିଯୋଗିତାରେ ଭାଗ ନେବା ପାଇଁ ଆହ୍ୱାନ କରୁଛି । ପ୍ରତିଜ୍ଞା କରୁଛି, ଯେ ଏଥିରେ ସଫଳ ହେବେ, ମୁଁ ବିନା ଦ୍ୱିଧାରେ ତାଙ୍କ ହସ୍ତରେ ଶାଳୁଳୀ-ଜେମାକୁ ଅର୍ପଣ କରିବି ।

ରାଜାଙ୍କର ଏ ଘୋଷଣାରେ ସମଗ୍ର ସଭାସ୍ଥଳରେ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଭୂପାଳଙ୍କର ପ୍ରତ୍ୟୟ ସୂଚକ ବାଣୀ ସତେ ଯେମିତି ରାଜା ମାନଙ୍କର ହୃତସାହସକୁ କେତେ ପରିମାଣରେ ଫେରାଇ ଆଣିଥିଲା । ଅବଶିଷ୍ଟ ରାଜାମାନେ ଦ୍ୱିଗୁଣ ଉତ୍ସାହରେ ଲାଖବିନ୍ଧାରେ ଅଂଶଗ୍ରହଣ କରିବା ପାଇଁ ଅଣ୍ଟା ଭିଡ଼ିଥିଲେ ।

ସୁକାନ୍ତି ଦୀର୍ଘଶ୍ୱାସ ପକାଇ ତାରାଭରା ଆକାଶଆଡ଼େ ଅନାଇଲେ । ଏତେବେଳକୁ ଜେମା ସବୁଦିନେ ତାଙ୍କ ଗହଣରେ ଉପସ୍ଥିତ ଥାଏ । ମା-ଝିଅ ବସିବସି ବାରଆଡ଼ରୁ ବାରକଥା ପକାନ୍ତି ।ରାତ୍ରି ଗଭୀର ହୋଇ ଯିବା ପରେ ଯାଇ ମଦନାବତୀ ପହୁଡ଼କୁ ବିଜେ କରେ । ଆଜି ତା'ର ଆସନ ଶୂନ୍ୟ ପଡ଼ିଚି । ସେ ଆଡ଼କୁ ଅନାଇ ସୁକାନ୍ତିଙ୍କର ଆଖିକୁ ପାଣି ଆସୁଥିଲା

ସ୍ୱପ୍ନର ଫୁଲ ଭଳି ଏହି ଅଭିଶପ୍ତ ରାଜପୁରୀରେ ମଦନାବତୀ କେଇଟିଦିନ ମାତ୍ର ଫୁଟି ଉଠିଥିଲା । ତା'ର ସୁଗନ୍ଧରେ ଚତୁର୍ଦ୍ଦିଗ ମହକାଇ ଦେଉଥିଲା । ଆଜି ନିର୍ବାନ୍ଧବ ଅସୁର ପୁରୀରେ କ'ଣ କରୁଥିବ କିଏ ଜାଣେ ?

କେତେ ମନା କରି ନାହାନ୍ତି ସେ ମହାରାଜାଙ୍କୁ । ଅସୁରମାନେ ମଣିଷ ଆକୃତି ଧରନ୍ତି ସିନା-ମାତ୍ର ସେମାନଙ୍କର ପ୍ରକୃତି ନିଆରା । ଫୁଲ ଭଳି ତାଙ୍କର ସନ୍ତାନ - ସେଇ ନିର୍ବାନ୍ଧବ ଅସୁର ପଲରେ କିଭଳି ନିର୍ଭା କରିବ ? ମାତ୍ର ମହାରାଜା କୋଉ ଶୁଣିଲେ ? ଖ୍ୟାତି ଆଉ କ୍ଷମତାର ମହୁଆ ନିଶା ଯେ ତାଙ୍କୁ ପୂରାପୂରି ଗ୍ରାସ କରି ଯାଇଥିଲା । ସେଥିରୁ ତ କେଡ଼େ କେଡ଼େ ଋଷିମହାଋଷି ମୁକୁଳି ପାରି ନାହାନ୍ତି । ଆଉ ଶାଲ୍ମଳୀମହୀପତି ବା କୋଉ ମଣିଷରେ ମଣିଷ !

ଯାକୁଇ କହନ୍ତି ଭାଗ୍ୟ । ସବୁ ଗୋଟାଏ ଆଡ଼େ ପୁଣି ସେଇ ଅଦେଖା ହାତର ଆକର୍ଷଣ ଜାଣ ଗୋଟାଏ ଆଡ଼େ । ନ ହେଲେ ଦିନ ପରେ ଦିନ ବିତି ଚବିଶଟି ଦିନ ତ ଖସି ଯାଇଥିଲା । ସମସ୍ତେ ଧରି ନେଇଥିଲେ, ଭୂପାଳକେଶରୀଙ୍କର ଏତେ ଆଡ଼ମ୍ବରର ସ୍ୱୟମ୍ବର ସଭା ବିଫଳ ହୋଇଛି । ମଦନାବତୀ ଏଣିକି ଅବିବାହୀ ରହିବ, ଯଦି-ଯଦି କୌଣସି ଚମତ୍କାର ନ ଘଟେ ।

ରାତି ପାହିଲେ କଣ୍ଟ ଦିବସ ଶେଷ ହେବ । ମହାଦେଈ ନିଜ ମନକୁ ବୁଝାଇ ଦେଇଥିଲେ । ଯିଏ ଘଟରେ ପ୍ରାଣ ଦେଇଛି, ସେଇ କ'ଣ କିଛି ଗୋଟାଏ ବ୍ୟବସ୍ଥା କରିଦେବ ନାହିଁ ? ଏଡ଼େ ସୁଲକ୍ଷଣୀ କନ୍ୟା ତାଙ୍କର । ତା'ପାଇଁ କ'ଣ କିଛି ଅଘଟଣ ଘଟିବ ନାହିଁ ? ଦରକାର ପଡ଼ିଲେ ସେ ଶାସ୍ତ୍ର ପୁରାଣର ନିର୍ଘଣ୍ଟକୁବଦଳାଇ ଦେବାପାଇଁ ମୁନୀଋଷିମାନଙ୍କର ପରାମର୍ଶ ନେବେ ।

ଶାସ୍ତ୍ରୀୟ ବିଧିବିଧାନକୁ ବଦଳାଇ ଦେବାର କେତେ ନଜୀରତ ସେଇ ଶାସ୍ତ୍ର ପୁରାଣରେ ରହିଛି । 'ବେଙ୍ଗ କହେ ବେଙ୍ଗୁଲି ଲୋ, ମହି କ୍ଷଣ କ୍ଷଣକେ ଆନ' । ଶେଷରେ ବେଙ୍ଗର କଥା ହିଁ ସତ ହେଲା । ରାତି ପାହିବା ପୂର୍ବରୁ ଅସୁର ସେନାର କିଳିକିଳା ରାବରେ ଶାଲ୍ମଳୀ ରାଜ୍ୟ ଖାଲି ଉଠିଲା ପଡ଼ିଲା । ଗୁପ୍ତଚର ମୁଖରୁ ଖବର ମିଳିଲା ତ୍ରିପୁର ବିଜୟୀ ମୁରାସୁର ଦିଗ୍‌ବିଜୟ ବ୍ୟାପାରରେ ବିଶ୍ୱ ପରିକ୍ରମାରେ ବାହାରି ସସୈନ୍ୟ ଶାଲ୍ମଳୀ ଦ୍ୱୀପରେ ଉପସ୍ଥିତ । ସ୍ୱୟଂବର ପ୍ରସଙ୍ଗ ତାଙ୍କ କାନରେ ପଡ଼ିଛି । କନ୍ୟାର ରୂପ ଗୁଣ କଥା ମଧ୍ୟ ଅଛପା ନାହିଁ । ସେ ଏବେ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଆଗ୍ରହୀ । ରାଜା ସେହି ଅନୁସାରେ ବ୍ୟବସ୍ଥା କରିବା ପାଇଁ ସେ ବିନୀତ ଅନୁରୋଧ ଜଣାଉଛନ୍ତି ।

ଅନୁରୋଧ ନା ଆଦେଶ ?

ଭୂପାଳ କେଶରୀ ମନସ୍ଥିର କରିପାରୁ ନଥିଲେ । ଶୁଣିଛନ୍ତି ସେ ମୁରାସୁରର ଶକ୍ତି ଆଉ ସାମର୍ଥ୍ୟର କଥା । ଜାଣିଛନ୍ତି ସେ, ଏହି ମୁହୂର୍ତ୍ତରେ ଉପଯାଚକର ନିରୀହ ମେଷ ଶାବକର ଖୋଳ ପିନ୍ଧି ତାଙ୍କ ଆଗରେ ବିନୀତ ହୋଇ ଠିଆ ହୋଇଛି ଯେଉଁ ବ୍ୟକ୍ତିଟି, ତାଙ୍କଠାରୁ ନାସ୍ତିବାଣୀ ଶୁଣି ପର ମୁହୂର୍ତ୍ତରେ ସେହି ଖୋଳ ଭିତରୁ ସଟାଛଟା ବିଜଡ଼ିତ ରୋଷାରୁଣ ଲୋଚନ ପ୍ରଚଣ୍ଡ ସିଂହ ମୂର୍ତ୍ତିଟିଏ ବାହାରି ଆସିବ ।

ବଳପୂର୍ବକ ଅପହରଣ କରିନେବ ତାଙ୍କର ଅନିନ୍ଦ୍ୟ ସୁନ୍ଦରୀ କନ୍ୟାକୁ । ସେତେବେଳେ ଆଉ ତାଙ୍କର ରାଜ ସମ୍ମାନ ରହିବ କେଉଁଠି ?

ମହାମନ୍ତ୍ରୀ ମଧ ସେହି ପରାମର୍ଶ ଦେଇଥିଲେ । ମୁରାସୁର ଅସୁର କୂଳରେ ଜାତ ସିନା, ନହେଲେ ତ୍ରିଲୋକ ବିଜୟୀ ବୀର । ଜମ୍ବୁ ଦ୍ୱୀପର କେତେ କେତେ ପ୍ରତିଷ୍ଠିତ ରାଜପରିବାର ତାଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେବାପାଇଁ ଲାଳାୟିତ ।

ସାକଲ୍ୟ ଦ୍ୱୀପ ସହିତ ଭୂପାଳ କେଶରୀଙ୍କର ଯେଉଁ ଦୀର୍ଘକାଳୀନ ବିବାଦ ଚାଲିଆସିଛି, ମୁରାସୁର ଯଦି ପ୍ରକୃତରେ ଏଇ ରାଜପରିବାରର ବନ୍ଧୁ ହୁଅନ୍ତି, ତେବେତ ଗୋଟିଏ ନିମିଷରେ ତାହାର ଅନ୍ତ ଘଟିବ । କଣ୍ଟକ ସାହାଯ୍ୟରେ କଣ୍ଟକ ଉତ୍ପାଟନ କରିବାର ନାମ ହିଁ ରାଜନୀତି ।

ପୁଣି ମୁରାସୁର କିଛି ଅନ୍ୟାୟ କାମ କରିବାକୁ କହୁ ନାହାନ୍ତି; ସ୍ୱୟଂ ରାଜାତ ଘୋଷଣା କରିଛନ୍ତି, ଯକ୍ଷରକ୍ଷ, ଗନ୍ଧର୍ବ କିନ୍ନର-ଯେକୌଣସି ବ୍ୟକ୍ତି- ନିର୍ଦ୍ଦିଷ୍ଟ ଜଣ୍ଡଦିବସ ଭିତରେ ଲାଖବିନ୍ଧାରେ ଅଂଶ ଗ୍ରହଣ କରିପାରିବ । ରାଜା ଏବେ ବଚନ ହାରିବେ କେଉଁ କାରଣରୁ ?

ପୁଣି ଲାଖ ବିନ୍ଧାରେ ଯେ ମୁରାସୁର ନିଶ୍ଚୟ ସଫଳତା ପାଇବେ, ଏଭଳି କଥାତ କେହି ନିୟମ କରି କହିପାରିବ ନାହିଁ । ତେଣୁ ...

ଅଗତ୍ୟା ଭୂପାଳ କେଶରୀ ମୁରାସୁରଙ୍କ ପ୍ରସ୍ତାବରେ ରାଜି ହେଲେ । ମୁରାସୁରର ଛାମୁକୁ ଶୁଭ ନାରିକେଳ-ହରିଦ୍ରା-ଗୁବାକ ପ୍ରେରିତ ହେଲା । ଝିମେଇ ପଡ଼ିଥିବା ଆସର ପୁଣି ଶତେଗୁଣ ଉତ୍ସାହରେ ଜାଗି ଉଠିଲା ।

ତୀବ୍ର ସ୍ୱରରେ ପ୍ରତିବାଦ ଜଣାଇଲେ ରାଜମହିଷୀ ସୁକାନ୍ତି । ରାଜନୀତିର ପଙ୍କିଳ ଯଜ୍ଞବେଦୀରେ ସେ ନିଜର ସୁନାର ପିତୁଳାକୁ କଦାପି ବଳି ଦେଇ ପାରିବେ ନାହିଁ । ଯା' ଅପେକ୍ଷା ବରଂ...

ସୁକାନ୍ତି ଜାଣିନଥିଲେ । ଏଠି ନାରୀକୁ ଶକ୍ତିମୟୀ ବୋଲି ସମ୍ମାନ ଦିଆଯାଏ । ଜନନୀ ରୂପରେ ଆବାହନ କରାଯାଏ, ଭଗିନୀ ରୂପରେ ସ୍ନେହ ଦିଆଯାଏ ପୁଣି ଜାୟା ରୂପରେ ସୋହାଗ କରାଯାଏ । ମାତ୍ର ସେ କେବଳ ସେତିକି । କାର୍ଯ୍ୟ କ୍ଷେତ୍ରରେ କିନ୍ତୁ ତାକୁ ଆଜୀବନ ପୁରୁଷର କର୍ତ୍ତୃତ୍ୱ ମାନି ଚଳିବାକୁ ପଡ଼େ । ତା'ପାଇଁ ଗୋଟାଏ ଆଶ୍ରୟ ଖୋଜାଯାଏ । ସେ ଯେ ଲତା- ଆଶ୍ରୟ ବିନା ଉପରକୁ ଉଠିବ କେମିତି ?

ମନ ସ୍ଥିର କରି ସାରିବା ପରେ ଭୂପାଳ ଆଉ ମତ ପରିବର୍ତ୍ତନ କରିବାକୁ ରାଜି ହୋଇ ନଥିଲେ । ନାରୀ ତ ସହଜେ ଆବେଗ ପ୍ରବଣ-ତାର ଆଖି ଲୁହର ମୂଲ୍ୟ ସଂସାର ଧର୍ମ ନିକଟରେ କାଣିକଉଡିଟିଏ ମଧ୍ୟ ନୁହେଁ । ସୁକାନ୍ତି ଦିନାକେତେ କନ୍ଦାବୋବା କରିବେ । ସ୍ଥିର ଜଳଲୋଷ୍ଟ୍ରର ଆଘାତରେ ଯେମିତି କ୍ଷଣକପାଇଁ ବିକ୍ଷୁବ୍ଧ ହୋଇ ପୁନର୍ବାର ସ୍ଥିତାବସ୍ଥାକୁ ଫେରି ଆସେ, ସେଇଆ ହେବ ।

ଜାଣିଶୁଣି ସେ ଏକ ପ୍ରଳୟଙ୍କରୀ ସଂଘର୍ଷକୁ ନିମନ୍ତ୍ରଣ କରି ଆଣିବେ ? ରସାତଳକୁ ଠେଲିଦେବେ; ସୁଜଳାସୁଫଳା ଶସ୍ୟଶ୍ୟାମଳା ତାଙ୍କର ଅତିପ୍ରିୟ ଏଇ ଜନ୍ମଭୂମିକୁ !

ବାପା ବୁଝିଲେ ନିଜର ମାନ-ସମ୍ମାନ; ଆଉ ଜନ୍ମମାଟିର ଗୌରବର କଥା । ମା ବୁଝିଲେ, ପାତ୍ରର ଯୋଗ୍ୟତାର କଥା । ହାୟ, କେହି ତ ଥରେ ଚିନ୍ତାକଲେ ନାହିଁ, ମଦନାବତୀର କଥା । ଅୟୁତ ଦେବତାର ଆଶୀର୍ବାଦ ମଥାରେ ଧରି ଜନ୍ମ ହୋଇଛି ଯେଉଁ ନାୟିକାଟି, ତା'ର ମନୋଭାବ କ'ଣ କେହି ତ ହେଲେ ଥରେ ତାକୁ ପଚାରିଲେ ନାହିଁ ।

ଏବେ ସୁକାନ୍ତି ସେଇ କଥା ଭାବୁଛନ୍ତି । ନିରୋଳାରେ ବସି ମୁଣ୍ଡକୋଡ଼ି ହେଉଛନ୍ତି ଆଉ ନାରୀ ଜନ୍ମକୁ ଧିକ୍କାର ଦେଉଛନ୍ତି । ଏବେ ତ ନେଡ଼ିଗୁଡ଼ ଯାଇ କହୁଣୀରେ....

ଏମିତିରେ ଦେଖିବାକୁ ଗଲେ ମୁରାସୁର ଯେ ଅପାତ୍ର ଏ କଥା ତା'ର ବଡ଼ ଶତ୍ରୁ ମଧ୍ୟ କହି ପାରିବ ନାହିଁ । ଜାତିକୁଳ କଥା ଯେ ବିଚାର କରିବେ - ସ୍ୱୟଂ ପିତାମହ ବ୍ରହ୍ମା ଯାହାର ପିତା-ତା' ଅପେକ୍ଷା ଆଉକେଉଁ କୁଳ ବଡ଼ ବୋଲି କିଏ କହିବ ? ପରାକ୍ରମ ଆଉ ସାମର୍ଥ୍ୟର କଥା ତ ଶିବଙ୍କୁ ତୋଷି ଅମରବର ପାଇବାରୁ ପ୍ରତ୍ୟେକ୍ଷ ହେଉଛି । ବାକି ରହିଲା ବିତ୍ତପ୍ରସଙ୍ଗ । ସମଗ୍ର ତ୍ରିପୁର ଯାହାର ପ୍ରତାପରେ ଥରହର ଯେ ବିସ୍ତୃତ ଜମ୍ବୁଦ୍ୱୀପର ଅଧିପତି କେଉଁ କଥା ତାକୁ ଅପୂର୍ବ ? ମନୋରଥ ଗତି ବିଜୟା ରଥରେ ଚଢ଼ି ଯେ ଶୂନ୍ୟମାର୍ଗରେ ଗତିକରି ପାରୁଛି, ତା'ର ଅର୍ଥ କୌଳିନ୍ୟ ବିଷୟରେ ପ୍ରଶ୍ନ ଚିହ୍ନ ମାରିବା ହିଁ ଅଜ୍ଞତା । ଅସୁର କୁଳରେ ଜନ୍ମ ହେବାରେ ତ ତା'ର କୌଣସି ଭୂମିକା ନାହିଁ । ଜନ୍ମ ଦୈବାୟତ୍ତ । ପୌରୁଷ ସିନା ବ୍ୟକ୍ତିତ୍ୱର ପରିଚୟ । ସେ କ୍ଷେତ୍ରରେ ତ...

ମୁରର ଆଟୋପ ଦେଖି; ଜଳଘଣ୍ଟ, ଜାନୁଘଣ୍ଟ, କାଳଘଣ୍ଟ, ବକ୍ରମାଳୀ, ଚନ୍ଦ୍ରମାଳୀ ପ୍ରଭୃତି ତାହାର ସପ୍ତସେନାପତି ପୁଣି ଅଶୀ ଯୋଜନ ମାଡ଼ି ମହା ସମ୍ଭର୍ବରେ ଚାଲୁଥିବା ତାର ବିଶାଳବାହିନୀ ଦେଖି ସ୍ୱୟମ୍ବର ସଭାରେ ଉପସ୍ଥିତି ଥିବା ଏଡ଼େ ବୀର ରାଜାମାନେ ଥୋକାଏ ତ ପ୍ରାଣନେଇ ପଳାଇଗଲେ । ଯେଉଁମାନେ ଅବା ରହିଗଲେ, ସେମାନଙ୍କର ଯେ ମୁର ପ୍ରତି ଅହେତୁକ ଭୟ ହୋଇ ନଥିଲା, ଏ କଥା କହିବ କିଏ ?

ରାଜା ଭୂପାଳକେଶରୀ ବୁଦ୍ଧିମାନ୍‌ର କାର୍ଯ୍ୟ କରିଥିଲେ । ଧୂପଦୀପ ଗନ୍ଧପୁଷ୍ପ ଦୂର୍ବାକ୍ଷତ ଦ୍ୱାରା ପୁଣି ଘଣ୍ଟଘଣ୍ଟା ମର୍ଦ୍ଦଳର ଉତ୍ତାଳ କଳରୋଳ ଭିତରେ ସେ ମୁରକୁ ସ୍ୱାଗତ ଜଣାଇଥିଲେ । ବିନୀତ ଭାବରେ ପ୍ରଶ୍ନ କରିଥିଲେ, ଦୈତ୍ୟ ହୋଇ ମାନବ ଯୁବତୀ ହରଣ କରିବାର ସେଇ ଚିରାଚରିତ ଦୃଷ୍ଟାନ୍ତ ସେ ସ୍ଥାପନ କରିବାକୁ ଆସିଛନ୍ତି କିମ୍ୱା ନୁହଁ !

ରାଜାଙ୍କର ବିନୀତ ବାକ୍ୟ ହୁଏ ତ ସ୍ପର୍ଦ୍ଧିତ ଦୈତ୍ୟକୁ ସନ୍ତୁଷ୍ଟ କରିଥିଲା । ମୃଦୁହାସ୍ୟ କରି ଦୈତ୍ୟରାଜ ପ୍ରଥମରୁ ଜଣାଇ ଦେଇଥିଲା - ନା ବର୍ତ୍ତମାନ ସେଭଳି କୌଣସି ଅଭିଳାଷ ତାହାର ନାହିଁ । ଭୂପାଳକେଶରୀଙ୍କର ସତ୍ୟ ରକ୍ଷା କରିବା ନିମନ୍ତେ ଉଦ୍ୟମ କରିବା ହିଁ ହେଉଛି, ତାହାର ପ୍ରଥମ ଦାୟିତ୍ୱ । ଉପସ୍ଥିତ ରାଜନ୍ୟମଣ୍ଡଳୀ ଯଦି ପାରନ୍ତି, ତେବେ ପ୍ରଥମେ ଲାଖବିନ୍ଧି ନିଜର ଶକ୍ତିର ପରିଚୟ ଦିଅନ୍ତୁ । ସେ ନୀରବରେ କର୍ମକୁ ଆଦରି ଲେଉଟି ଯିବ ।

ମୁର କେବଳ ଅସାଧାରଣ ବୀର ନୁହେଁ- ଲୋକ ଚରିତ୍ରରେ ମଧ ତା'ର ବେଶ୍ ପ୍ରବେଶ ରହିଛି । ନଚେତ୍ ଯେଉଁ ରାଜାମାନେ କିଛିକ୍ଷଣ ପୂର୍ବରୁ ମୁରକୁ ଅସୁର ବୋଲି ଆକ୍ଷେପ କରି ସମାଲୋଚନା କରିବାକୁ ଉନ୍ମୁଖ ହୋଇ ଉଠିଥିଲେ, ମୁହୂର୍ତ୍ତକ ମଧରେ ସେଇମାନେ ପୁଣି ଉଦାର ହୋଇ ଉଠି 'ତଥାସ୍ତୁ' 'ତଥାସ୍ତୁ' ବୋଲି ସମସ୍ୱରରେ ଉଚ୍ଚାରଣ କରି ନଥାନ୍ତେ ।

ମୁର ସମସ୍ତଙ୍କର ହୃଦୟ ଜୟ କରି ନେଇଥିଲା ନିଜର ନମ୍ର ଆଚରଣ ଦ୍ୱାରା ।

ଭୂପାଳକେଶରୀଙ୍କର ଦ୍ୱିଧାଭାବ ସେଇ ମୁହୂର୍ତ୍ତରେ କଟି ଯାଇଥିବ ପରା । ନଚେତ୍ ସେ ଉତ୍ସାହ ସହକାରେ ମୁରକୁ ଲାଖବିନ୍ଧାର ବିଧିବିଧାନମାନ ବୁଝାଇବାକୁ ଆରମ୍ଭ କରି ନଥାନ୍ତେ ।

ଏହାପରେ ମୁର ଆଉ କାଳବିଳମ୍ବ କରିନଥିଲା । ଦୃପ୍ତ ପଦକ୍ଷେପରେ ମଞ୍ଚ ଉପରକୁ ଉଠି ଗୋଟିଏ ହୁଙ୍କାରରେ ଶରାସନକୁ ଆକର୍ଷି ଧରିଥିଲା । ମୁହୂର୍ତ୍ତକ ମଧରେ ଧନୁରେ ଗୁଣ ସଂଯୋଗ କରି ନାରାଚ ଚଢ଼ାଇ କର୍ଣ୍ଣ ପର୍ଯ୍ୟନ୍ତ ଟାଣି ଘନ ଘନ

ଥାମଷ୍ଟନ କରିବାକୁ ଲାଗିଥିଲା । ଗମ୍ଭୀର ଟଙ୍କାର ନାଦରେ ମେରୁପର୍ବତରେ ଚୂଡ଼ାମାନ କମ୍ପିବାକୁ ଆରମ୍ଭ କରିଥିଲା । ଭୟତ୍ରସ୍ତ ଦେବକୁଳ ନିଜ ନିଜ ପୁର ତ୍ୟାଗ କରି ଆକାଶ ମାର୍ଗରେ ରହି ଏହି ଅଦ୍‌ଭୂତକର୍ମୀ ପୁରୁଷଟିର କାର୍ଯ୍ୟ ପ୍ରଣାଳୀ ଲକ୍ଷ୍ୟ କରୁଥିଲେ ।

ଏହାପରେ ମୁର ଗୋଟିଏ ପାଦ ଆଗକୁ ବଢ଼ାଇ ଆର ପାଦର ଆଣ୍ଠୁ ଉପରେ ଭାରଦେଇ ଲକ୍ଷ୍ୟ ସ୍ଥିର କରିବା ନିମନ୍ତେ କିଛି ସମୟ ନେଲା । ତା'ପରେ ହାତପଛକୁ ନେଇ ଧନୁ ବୁଲାଇ ନାରାଚକୁ ଛାଡ଼ିଦେଲା । ଦର୍ଶକମଣ୍ଡଳୀରେ ସୂଚିଭେଦ୍ୟ ନୀରବତା । ସମସ୍ତେ ରୁଦ୍ଧଶ୍ୱାସ ହୋଇ ନାରାଚ ଲକ୍ଷ୍ୟ ଭେଦ କରି ଫାଳେ ସୋରିଷକୁ ନିଜ ଅଗ୍ରଭାଗରେ ଧାରଣ କରି ଲେଉଟି ଆସି ମୁରର ତୂଣୀର ମଧ୍ୟରେ ଆଶ୍ରୟ ଗ୍ରହଣ କରିବା ଦେଖିଲେ ।

ଶୂନ୍ୟରୁ ଦେବତାମାନେ 'ସାଧୁ ସାଧୁ' ଶବ୍ଦରେ ମେଦିନୀ କମ୍ପାଇ ଦେଲେ । ଉପସ୍ଥିତ ଦର୍ଶକମଣ୍ଡଳୀର 'ଧନ୍ୟ ଧନ୍ୟ' ନିର୍ଘୋଷ ଆଉ ପୁରଙ୍ଗନାମାନଙ୍କର ଶଙ୍ଖ ହୁଳୁହୁଳି ନାଦ ମଧ୍ୟରେ ମୁର ସଗର୍ବରେ ମଣ୍ଡପ ଉପରୁ ଅବତରଣ କଲା ଏବଂ କନ୍ୟା ନିକଟରେ ପ୍ରବେଶ ହୋଇ କନ୍ୟାର ହସ୍ତ ଧାରଣ କଲା ।

ଭୂପାଳକେଶରୀ ମୁରାସୁରର ପରାକ୍ରମ ମାତ୍ର ଦେଖିଲେ । ମାତ୍ର ତାର କୁଳଗୋତ୍ର ବର୍ଣ୍ଣ ସମ୍ପର୍କରେ ତାଙ୍କର କିଛି ହିଁ ଧାରଣା ନଥିଲା । ସେଇ ପ୍ରଶ୍ନ ଏବେ ତାଙ୍କ ଆଗରେ ବଡ଼ ହୋଇ ଦେଖା ଦେଲା । ଅସୁରଟାଏ ସେ ଯେତେବଡ଼ ବୀର ହେଉ ନା କାହିଁକି ତା' ସହିତ ନିଜର ଅଲିଅଳୀ କନ୍ୟାର ହାତ ଛନ୍ଦିଦେଲେ, ମହାଜନମାନେ ସ୍ମେରମୁଖ ହୋଇ ଉଠିବେ ସିନା !

ସ୍ୱୟମ୍ବର ସଭାରେ ଉପସ୍ଥିତ ଥିଲେ ତ୍ରିକାଳଜ୍ଞାତା ମହାମୁନୀ ବ୍ୟାସ । ରାଜାଙ୍କର ଦ୍ୱିଧା ସମ୍ପର୍କରେ ଜାଣିବାକୁ ତାଙ୍କୁ ଖୁବ୍ ବେଶି ସମୟ ଲାଗିଲା ନାହିଁ । ସେ ଆଗକୁ ଆସିଲେ । ମୁରର ଜନ୍ମ ବୃତ୍ତାନ୍ତ ରାଜାଙ୍କ ଆଗରେ ବୁଝାଇ କହିଲେ ।

ସେ କେଉଁ ଯୁଗର କଥା । ଆଦିମାତାଙ୍କର ତିନୋଟି ସନ୍ତାନ ମଧ୍ୟରୁ ବେଦପତି ବ୍ରହ୍ମା ଆଉ କୈଳାସପତି ହରଙ୍କ ମଧ୍ୟରେ ଦିନେ ବାଳ ସ୍ୱଭାବବଶତଃ ବିବାଦ ଲାଗିଲା । ବ୍ରହ୍ମାଙ୍କର ପାଞ୍ଚଟି ମୁଣ୍ଡ ଭିତରୁ ହର ଗୋଟିଏ ମୁଣ୍ଡକୁ ଛେଦି ପକାଇବାରୁ ସେଇ ମୁଣ୍ଡ ଭିତରୁ ବାହାରି ଆସିଲା ଗୋଟିଏ ବୁଭୁକ୍ଷୁ ରାକ୍ଷସ । ବିଧାତାଙ୍କ ନିକଟରେ ଭୋଜନ ଦାବି କଲା । 'ହରଙ୍କୁ ଖାଅ' ବିଧାତାଙ୍କର ଏଇ ନିର୍ଦ୍ଦେଶରେ ରାକ୍ଷସ ଯେତେବେଳେ ତାଙ୍କ ଆଡ଼କୁ ଧାଇଁଲା, ପ୍ରାଣ ବିକଳରେ ହର ଯାଇ ଶରଣ ପଶିଲେ ହରିଙ୍କ ପାଖରେ ।

ରାକ୍ଷସ ହରିଙ୍କ ସହିତ ଦ୍ୱନ୍ଦ୍ୱ ବାଞ୍ଛା କରନ୍ତେ, ସ୍ମିତହାସ୍ୟ କରି ଗୋବିନ୍ଦ ଉତ୍ତର ଦେଉଥିଲେ, ମୋର ଆଜ୍ଞାରେ ତୁ ଶାକଲ୍ୟ ଦ୍ୱୀପରେ ଯାଇ ଜନ୍ମଗ୍ରହଣ କର। ସେଠାରୁ ମୃତ୍ୟୁବରଣ କରି ଜୟବିଜୟ ନାମ ବହି ମୋର ସିଂହଦ୍ୱାର ମଣ୍ଡନ କର। ବ୍ରହ୍ମାଙ୍କ ମୁଣ୍ଡ ଛିନ୍ନକରି ତୁ ଏବେ ଜନ୍ମ ହୋଇଛୁ। ଏହାପରେ ତୁ ପୁଣି ସେଇ ବ୍ରହ୍ମାଙ୍କଠାରୁ ଜନ୍ମଗ୍ରହଣ କରିବୁ। ସେତେବେଳେ ତୋର ନାମ ହେବ ମୁର। ସଂକ୍ଷେପରେ ଏହାହିଁ ହେଉଛି ମୁରର ଜନ୍ମ କାହାଣୀ। ସ୍ୱୟଂ ବେଦବର ବ୍ରହ୍ମାଙ୍କ ଔରସରେ ଯାହାର ଜନ୍ମ ତାହାର ଜାତିକୁଳ ଖୋଜିଲେ ଚଳିବ କାହିଁ ?

ଭୂପାଳକେଶରୀଙ୍କୁ ଆଶ୍ୱାସନା ଦେଇ ମହର୍ଷି ଆହୁରି ବୁଝାଇ ଥିଲେ, ଏ ବିବାହ ବିଧିନିର୍ଦ୍ଦିଷ୍ଟ ମହାରାଜ। ମୁରାସୁର ପାଇଁ ହିଁ ମଦନାବତୀର ସୃଷ୍ଟି। ତମେ ଆଉ ଅନ୍ୟଥା ଭାବ ନାହିଁ।

ଭୂପାଳକେଶରୀ ଏତେବେଳକୁ ଯଥାର୍ଥରେ ସ୍ୱସ୍ତି ଲାଭ କଲେ। ତାଙ୍କର ମନ-ଆକାଶକୁ ଘେରି ଦ୍ୱିଧାର ଯେଉଁ ଛୋଟ ମେଘ ଖଣ୍ଡିକ ଛାୟା ବିସ୍ତାର କରୁଥିଲା-ବ୍ୟାସଦେବଙ୍କ ନିଷ୍ପତ୍ତିରେ ତାହା ଛିନ୍ନଛିଦ୍ର ହୋଇ କାହିଁ କୁଆଡେ ଭାସିଗଲା।

ଭୂପାଳ ବିବାହର ଆୟୋଜନ ନିମନ୍ତେ ଆଦେଶ ଦେଲେ।

ତା'ପରେ ସବୁ କାର୍ଯ୍ୟ ଗୋଟିକ ପରେ ଗୋଟିଏ ସ୍ୱାଭାବିକ ଗତିରେ ଚାଲିଲା। ମାଙ୍ଗଳିକ ଶଙ୍ଖ ହୁଳହୁଳି ବାଦ୍ୟ ବାଜଣା ନାଦରେ ରାଜପୁରୀ ପ୍ରକମ୍ପିତ ହେବାକୁ ଲାଗିଲା।

ମହାଦେଈ ତଥାପି ଦ୍ୱିଧାମୁକ୍ତ ହୋଇ ପାରୁ ନଥିଲେ। ବ୍ରହ୍ମାଙ୍କର ସନ୍ତାନ ହେଲେ କ'ଣ ହେବ। ଲୋକରେ ପରିଚୟ ସେଇ ଅସୁର ତ ! ମଣିଷର କଦର ଅସୁର ବୁଝିବେ କାହିଁ ?

ସୁକାନ୍ତି ଯନ୍ତ୍ରଭଳି ଗୋଟିକ ପରେ ଗୋଟିଏ କାର୍ଯ୍ୟ କରି ଚାଲିଥିଲେ। ବିବାହ ତ ଯେମିତି ହେଲେ ହେବ। କନ୍ୟାର ମାତା ଯଦି ଏଭଳି ମଙ୍ଗଳ କାର୍ଯ୍ୟରେ ସହଯୋଗ ନ କରନ୍ତି, ତେବେ ନାନା କଥା ଉଠିବ। ରାଜପରିବାରର ଉନ୍ନତ ମସ୍ତକ ଅବନତ ହେବ। ବଞ୍ଚି ଥାଉଁ ଥାଉଁ ସୁକାନ୍ତି କେବେହେଲେ ଏହା କରାଇ ଦେଇ ପାରିବେ ନାହିଁ।

ଏତିକିବେଳେ ବାହାରୁ ଶୁଣାଯାଇଥିଲା କୋଳାହଳ। ନାରଦ, ବାଲ୍ମୀକି, ବିଶ୍ୱାମିତ୍ର, ବଶିଷ୍ଠ ପ୍ରଭୃତିଙ୍କ ସହିତ ସପ୍ତର୍ଷି କ୍ରତୁ ପୁଲହ ପୁଲସ୍ତ୍ୟ ଅଙ୍ଗିରା ଅତ୍ରି ପ୍ରଭୃତି ଆସି ରାଜପୁରରେ ଉପସ୍ଥିତ ହୋଇଥିଲେ। ରାଜା ଭୂପାଳକେଶରୀ ଏତେଗୁଡ଼ିଏ ତପସ୍ୱୀଙ୍କର

ଦର୍ଶନ ଲାଭ କରି ନିଜକୁ କୃତାର୍ଥ ମଣିଥିଲେ । ଆଦର ଅଭ୍ୟର୍ଥନାର ଧୂମ୍ ପଡ଼ି ଯାଇଥିଲା । ରାଜାଙ୍କ ପାଇଁ ଯେ ଚରମ ଏକ ବିସ୍ମୟ ତଥାପି ଅପେକ୍ଷା କରି ରହିଥିଲା, ଏହା ପ୍ରମାଣିତ ହୋଇଗଲା, ସେତେବେଳେ, ଯେତେବେଳେ ମରାଳ ବାହନ ବେଦବର ବ୍ରହ୍ମା ସ୍ୱୟଂ ନିଜ ପୁତ୍ର ମୁରର ବିବାହୋତ୍ସବରେ ଯୋଗ ଦେବା ନିମନ୍ତେ ଯଶୋବନ୍ତପୁର ତ୍ୟାଗକରି ଉଡ଼ି ଆସିଲେ ।

ଭୂପାଳକେଶରୀ 'ନିସ୍ତରିଲି', 'ନିସ୍ତରିଲି' ବୋଲି କହୁ କହୁ ବ୍ରହ୍ମାଙ୍କ ପାଦ ତଳରେ ବିନମ୍ର ପ୍ରଣତି ବାଢ଼ି ଦେଲେ । ଗଡ଼ଘାଲି ଦେଇ ଭୂମିସ୍ପର୍ଶ ମୁଦ୍ରାରେ ଶୋଇ ରହିଲେ ।

ବରପିତା ରୂପରେ କନ୍ୟାକୁ ଗ୍ରହଣ କଲେ ସ୍ୱୟଂ ବିଧାତା ।

ସୁକାନ୍ତି ଏ ବିବାହ ନିମନ୍ତେ ଭୂପାଳକେଶରୀଙ୍କୁ ଦୋଷ ଦେଉ ନାହାନ୍ତି । ବରକର୍ତ୍ତା ଯେଉଁଠି ସ୍ୱୟଂ ପ୍ରଜାପତି, ବରକନ୍ୟାଙ୍କୁ ଆଶୀର୍ବାଦ ଦେବା ନିମନ୍ତେ ଯେଉଁ ବିବାହରେ ସ୍ୱୟଂ ପରାଶର ବ୍ୟାସାଦି ମୁନୀଋଷିଗଣ ନୈମିଷାରଣ୍ୟ ତ୍ୟାଗ କରି ବିବାହ ମଣ୍ଡପରେ ଉପସ୍ଥିତ ଥାଆନ୍ତି, ପୁଣି ନିଜେ ବରପାତ୍ର ଯେଉଁଠି ହରିହରଙ୍କର ଆଶୀର୍ବାଦ ଧନ୍ୟ, ସେଠାରେ ବିବାହର ତ୍ରୁଟି ଖୋଜିବା ଯେ କେଡ଼େ ବଡ଼ ଅନ୍ୟାୟ ଏ କଥା କଣ ସେ ବୁଝୁ ନାହାନ୍ତି ?

ପିତାମାତା ତ କନ୍ୟାର ସୁଖ ଚାହାନ୍ତି । ଜମ୍ବୁ ଦ୍ୱୀପର ଶ୍ରେଷ୍ଠ ପୁରୁଷର ହାତଧରି ମଦନାବତୀ ଯେଉଁ ସୁଖ ପାଇବ, ତାହା ସେ ଆଉ କେଉଁ ରାଜପରିବାରରେ ଆଉ କେଉଁ ରାଜପୁରୁଷର ହାତଧରି ପାଇ ଥାଆନ୍ତା ?

ମନ କିନ୍ତୁ ଯେତେ ବୁଝାଇଲେ ମଧ୍ୟ ବୁଝୁ ନାହିଁ । ମାନବ କନ୍ୟାକୁ ଦାନବ ବର । ଯୁଗେ ଯୁଗେ ବଳଦର୍ପୀ ଦାନବମାନେ ଏମିତି କେତେ ମାନବ କନ୍ୟା ହରଣ କରି ନେଇଛନ୍ତି । ସେସବୁ ମିଳନ କ'ଣ ସୁଖର ହୋଇଛି ?

ଭୂପାଳକେଶରୀ ବା କ'ଣ କରିପାରି ଥାଆନ୍ତେ ? ମୁର ଯଦି ସାଧାରଣ ଦାନବ ଭଳି କନ୍ୟାକୁ ଅପହରଣ କରି ନେଇ ଥାଆନ୍ତା, ତେବେ ଶାଲ୍ମଳୀ ଦ୍ୱୀପର ତାବତୀୟ ସେନା କଣ ସେଥିରେ ବାଧାଦେଇ ପାରି ଥାଆନ୍ତେ ?

ମୁର ତ ତାହା କରିନାହିଁ । ରାଜାଙ୍କର ସର୍ତ୍ତ ପୂରଣ କରିବା ଯେତେବେଳେ କାହାରି ପକ୍ଷରେ ସମ୍ଭବ ହୋଇନାହିଁ, ସେ ବରଂ ଆଗେଇ ଆସିଛି । ଲାଖବିନ୍ଧି ରାଜାଙ୍କୁ ପ୍ରତିଜ୍ଞା ଭଙ୍ଗ ଅପରାଧରୁ ମୁକ୍ତ କରିଛି ।

ଦ୍ରୌପଦୀଙ୍କ ସ୍ୱୟମ୍ବରରେ ତ ଏଇଆ ହୋଇଥିଲା । ଜମ୍ବୁଦ୍ୱୀପର ସମବେତ ରାଜନ୍ୟମଣ୍ଡଳୀ ଯେତେବେଳେ ଲାଖ ବିନ୍ଧିପାରି ନଥିଲେ ସେତେବେଳେ ଦ୍ରୁପଦଙ୍କର ସମ୍ମାନ ରକ୍ଷା କରିଥିଲେ ଜଣେ ବ୍ରାହ୍ମଣ । ସେ ଯେ ନିଜେ ଅର୍ଜୁନ, ସେ କଥା କଣ ସେତେବେଳେ କେହି ଜାଣିଥିଲେ ?

ବିନା ଦ୍ୱିଧାରେ ଦ୍ରୁପଦ ତ ବ୍ରାହ୍ମଣ ହସ୍ତରେ ନିଜର ଅଗ୍ନି ସମ୍ଭବା କନ୍ୟାଙ୍କୁ ଅର୍ପଣ କରିଥିଲେ ।

ସୁକାନ୍ତି ଦୀର୍ଘନିଶ୍ୱାସ ଛାଡ଼ିଲେ । ନାଃ -ସେ ଆଉ ଚିନ୍ତା କରିବେ ନାହିଁ । ମଦନାବତୀକୁ ସେ ଜନ୍ମ ସିନା ଦେଇଛନ୍ତି । ତାର ଭାଗ୍ୟ, ତାର ଭବିତବ୍ୟ-କିନ୍ତୁ ଯିଏ ନିର୍ଣ୍ଣୟ କରନ୍ତି, ଏ ବିବାହରେ ସେ ସ୍ୱୟଂ ବରକର୍ତ୍ତା ରୂପରେ ଉପସ୍ଥିତ ରହି କନ୍ୟାକୁ ଗ୍ରହଣ କରିଛନ୍ତି ।

ମଦନାବତୀ ଭାଗ୍ୟରେ ଯଦି ସୁଖଥାଏ; ତେବେ ସେ ଅସୁରପୁରୀରେ ତାହା ହିଁ ପାଇବ । ଯେତେ ଚିନ୍ତା କଲେ ସୁଦ୍ଧା ରାଣୀ କ'ଣ ଆଉ ଏ ବିବାହକୁ ଅସ୍ୱୀକାର କରି ପାରିବେ ?

ରାତ୍ରିଚର ଏକ ପକ୍ଷୀର ଚିତ୍କାରରେ ରାତ୍ରିର ନିର୍ଜ୍ଜନତା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ସୁକାନ୍ତି ଏଥର ବାସ୍ତବ ଜଗତକୁ ଫେରି ଆସିଲେ । ରାତ୍ରି ବୋଧହୁଏ ଶେଷ ହୋଇ ଆସିଲା ।

ହଠାତ୍ ପଛଆଡୁ କିଏ ତାଙ୍କ କାନ୍ଧରେ ହାତ ରଖିଲେ । ଉଷ୍ମ ନିଶ୍ୱାସ ତାଙ୍କ ଦେହରେ ବାଜିଲା । ରାଣୀ ପଛକୁ ଫେରି ଅନାଇଲେ । କିଏ ଆଉ ହୁଅନ୍ତା ?

ଯେଉଁ ପୁରୁଷଟିର ହାତଧରି ସେ ଏ ରାଜପୁରୀରେ ପାଦ ଦେଇ ଦୁଇଟି ଯୁଗ କଟାଇ ଦେଲେଣି ସେଇ ଭୂପାଳକେଶରୀ ତାଙ୍କ ପଛରେ ଠିଆ ହୋଇଛନ୍ତି ।

ରାଜା ମଧୁର କଣ୍ଠରେ କହିଲେ, ମହାରାଣୀ !

ସୁକାନ୍ତି କିଛି କହିଲେ ନାହିଁ । ଯେଉଁ ମଦନାବତୀ ପ୍ରସଙ୍ଗକୁ ସେ ଜୋର୍ କରି ନିଜ ମନରୁ ତଡ଼ି ଦେଇଥିଲେ, ରାଜାଙ୍କ ସାନ୍ନିଧ୍ୟରେ ତାହା ପୁଣି ତାଙ୍କ ମନ ଭିତରକୁ ପଶି ଆସିଲା ।

ତାଙ୍କ ଆଖିରେ ଲୋତକ ଦେଖାଦେଲା ।

ରାଜା କହିଲେ- ସମସ୍ତେ ନିଜ ନିଜର ଭାଗ୍ୟନେଇ ସଂସାରକୁ ଆସି ଥାଆନ୍ତି ରାଣୀ । ତମେ ଆଉ ଅଶୋଚ୍ୟ ବିଷୟ ନିମନ୍ତେ ଶୋକକରି ନିଜକୁ କଷ୍ଟ ଦିଅନା ।

ସୁକାନ୍ତି କରୁଣ ଦୃଷ୍ଟିରେ ମହାରାଜଙ୍କ ଆଡ଼କୁ ଅନାଇଲେ । କ'ଣ କହିବାକୁ ଚେଷ୍ଟା କଲେ । ତାଙ୍କ କଣ୍ଠରୁ ଭାଷା ଫୁଟିଲା ନାହିଁ ।

ରାଜା ରାଣୀଙ୍କ କାନ୍ଧରେ ହାତର ଚାପକୁ ଗଭୀର କରୁ କରୁ କହିଲେ -ହିନ୍ଦୁ ସଂସ୍କୃତିରେ କନ୍ୟା ତ ପରକୀୟ । ଏ ବିଷୟ ସମସ୍ତେ ଜାଣନ୍ତି । ଯୋଗ୍ୟ ପାତ୍ରରେ କନ୍ୟାକୁ ଅର୍ପଣ କରି ପାରିଲେ, ପିତା ମାତାଙ୍କର ଦାୟିତ୍ୱ ଶେଷ ହୁଏ । ଯେତେ ବିଦୁଷୀ, ଯେତେ ପରାକ୍ରମଶାଳିନୀ ହେଉ ପଛେ, ନାରୀ ପାଇଁ ପୁରୁଷର ଆଶ୍ରୟ ହେଉଛି ଶାସ୍ତ୍ର ସମ୍ମତ । ତମେ ଆଉ ଶୋଚନା କର ନାହିଁ । ମଦନାବତୀ ଯେଉଁଠି ଅଛି ସୁଖରେ ଅଛି ।

ସୁକାନ୍ତିଙ୍କୁ କିଛି କହିବାର ସୁଯୋଗ ନ ଦେଇ ଭୂପାଳକେଶରୀ ପୁଣି କହିଲେ - ଆଜି ମଦନାବତୀ ଭଳି ସୌଭାଗ୍ୟ ବିଶାଳ ଏ ଦେଶରେ କାହାର ଅଛି ?? ମୁର ଭଳି ତ୍ରିଲୋକ ବିଜୟୀ ପୁରୁଷର ହାତଧରି, ଜମ୍ବୁଦ୍ୱୀପର ରାଜସିଂହାସନରେ ବସିବାର ସୁଯୋଗ ଆଉ କିଏ ପାଇଛି ? ଏଇ ମନ ଭିତରେ ସ୍ୱର୍ଗ - ପୁଣି ସେଇଠି ନର୍କ । ତମେ ମନକୁ ଟାଣ କର । ଅପେକ୍ଷା କରି ଦେଖ । ଦିନେ ଏଇ ମଦନାବତୀ ପାଇଁ ଆମେ ସମସ୍ତେ ଗର୍ବ ଅନୁଭବ କରିବା ।

ସୁକାନ୍ତି ଉଠିଲେ । ମହାରାଜାଙ୍କର ହାତଧରି ଶୟନକକ୍ଷ ଆଡ଼େ ଆଗେଇ ଚାଲିଲେ ।

ପୂର୍ବ ଦିଗରେ ସିନ୍ଦୁରା ଫାଟୁଛି ।



# ନିଭୃତ ନିରାଜନା

ବସନ୍ତ ଆସିଛି ଧରିତ୍ରୀର ଅଙ୍ଗେ ଅଙ୍ଗେ ସମାରୋହର ସଙ୍କେତ ଦେଇ । ଋତୁରାଜ ବାହାରିଛନ୍ତି ତାଙ୍କର ବାର୍ଷିକ ପରିଦର୍ଶନରେ ରାଜୋଚିତ ଆଡ଼ମ୍ବରରେ । ବୃକ୍ଷେ ବୃକ୍ଷେ ନବ-ପତ୍ରର ତୋରଣ, ଫୁଲ୍ଲ-କୁସୁମର ଦୋଳନ-ବିହଙ୍ଗମ କୂଜନର ସମୂହଗାନ ଭିତର ଦେଇ ଆଗେଇ ଚାଲିଛି ରାଜକୀୟ ଶୋଭାଯାତ୍ରା । ମୃଦୁମଳୟାନିଳରେ ଫରଫର ହୋଇ ଉଡ଼ୁଛି କିଶଳୟର ରକ୍ତପତାକା । ପ୍ରଫୁଲ୍ଲ-ପ୍ରସୂନର ମହାର୍ଘ ଛତ୍ର ଉତ୍ତୋଳିତ ହୋଇଛି ମହାନ୍ ଚକ୍ରବର୍ତ୍ତୀ ସମ୍ରାଟ୍‌ଙ୍କୁ ଆତପ ତାପରୁ ରକ୍ଷା କରିବା ପାଇଁ, ଆମ୍ରକୁଞ୍ଜରୁ ଘନଘନ ଶୁଭୁଛି ଭ୍ରମର ପିକକୁଳର ତୂର୍ଯ୍ୟ-ନାଦ । ପୁଷ୍ପରୁ ପୁଷ୍ପକୁ ଉଡ଼ିବୁଲି ମଧୁପାନ ମତ୍ତ ଅଳିକୁଳ ଆବାହନୀ ଶଙ୍ଖ ନାଦ କରୁଛନ୍ତି । ବୃକ୍ଷରୁ, ଲତାରୁ, ପୁଷ୍ପରୁ, ପଲ୍ଲବରୁ ଝରି ଝରି ପଡ଼ୁଛି ସୁରଭିତ ମକରନ୍ଦ ପରିମଣ୍ଡଳକୁ ଆମୋଦିତ କରି । ସୁବାସିତ ବୀଥିରେ ପାଦ ଚାଳି ଆଗେଇ ଚାଲିଚନ୍ତି ଋତୁରାଜ ।

ସମଗ୍ର ସୃଷ୍ଟି ତାଙ୍କର ସ୍ୱାଗତିକା ଗାନରେ ମାତି ଉଠିଛି ବର୍ଣ୍ଣର ମହୋତ୍ସବ ଭିତରେ । ଅଶୋକ ବଲ୍ଲରୀ ସ୍ତବକ-ସ୍ତନର ଗୁରୁଭାରରେ ଆନମିତ ନବୋଢ଼ା ବଧୂଟିଏ ଭଳି ନୀଳ-ଚେଳାଞ୍ଚଳର ଆବରଣ ଉନ୍ମୋଚନ କରି ଭୀରୁ ଦୃଷ୍ଟିରେ ବାହାରକୁ ଭେକିମାରି ଅନାଇଛି । ପଳାଶ ବିଛାଇ ଦେଇଛି ମଖମଲୀ ଆସ୍ତରଣ ମହାମାନ୍ୟ ସମ୍ରାଟଙ୍କର ସ୍ୱାଗତ ପାଇଁ । ମିଳିନ୍ଦ-ଯୂଥ କର୍ଣ୍ଣିକାର ସୁବର୍ଣ୍ଣ ଚଷକରେ ଅତିଥିଙ୍କ ପାଇଁ ମଧୁ ପ୍ରସ୍ତୁତ କରୁଛନ୍ତି । ନବମଲ୍ଲିକା, ନାଗକେଶର, ଶିରୀଷ, ମଲ୍ଲୀ, ମାଳତୀ, ମାଧବୀ ଯେଉଁଆଡ଼େ ଚାହିଁ ପୁଷ୍ପର ମହୋତ୍ସବ-ଧରଣୀ-ରାଣୀ ସତେ ଯେମିତି ପୁଷ୍ପବେଶରେ ସଜ୍ଜିତା । ହାତରେ ଲୀଳା କମଳ, ଅଳକରେ ବାଳକୁନ୍ଦ, କର୍ଣ୍ଣ ଯୁଗଳରେ ସୁକୋମଳ ଶିରୀଷ, ଚୂଡ଼ାରେ ନବକୁରୁବକ ପାଦଯୁଗ୍ମରେ ଅଶୋକର ମଞ୍ଜରୀ, କଣ୍ଠରୁ ଲମ୍ବିଛି ନାଗକେଶରର ପୁଷ୍ପ । ଅଭିସାରିକା ବେଶରେ ଋତୁରାଜଙ୍କର ସ୍ୱାଗତ ପାଇଁ ଦଣ୍ଡାୟମାନା ।

ବୃକ୍ଷେ ବୃକ୍ଷେ ସବୁଜ ଆଉ ଉଜ୍ଜ୍ୱଳ ପତ୍ରାବଳୀର ଶୋଭା ଭିତରୁ ଶୁଣାଯାଉଛି ଉନ୍ମତ୍ତ ପକ୍ଷୀ କୂଜନର କାକଳି । ଚଞ୍ଚୁରେ ଚଞ୍ଚୁ ଥାପି ପ୍ରେମ ନିବେଦନର ଦୃଶ୍ୟ ଦେଖାଯାଉଛି । ଝିଲ୍ଲୀର ଝଙ୍କାର, ବନଝରଣାର କଳକଳ ତାନ ପ୍ରସନ୍ନ ଦିକ୍‌ବଧୂ

ମଣ୍ଡଳୀର ମାଙ୍ଗଳିକ ଗାନ ଭିତର ଦେଇ ଧରାବତରଣ କରୁଛନ୍ତି ଋତୁରାଜ ନିଜର ପାଞ୍ଚପରିଷଦଙ୍କୁ ସଙ୍ଗରେ ନେଇ ।

ବସନ୍ତ କାଳର ଏକ ମଧୁର ପ୍ରଦୋଷରେ ଉଦ୍ୟାନ ଭ୍ରମଣରେ ବାହାରି ବକୁଳ ବେଦୀ ଉପରେ ଆନମନା ହୋଇ ଉପବେଶନ କରିଥିଲେ ରବି ତନୟା ଯମୀ । ବେଦିକାଟିର ବର୍ଣ୍ଣ ରକ୍ତ-ଲାଲ । ଯମୀଙ୍କର କୁନ୍ତଳ ଆଲୁଳାୟିତ, ପରିଧାନରେ ବାସନ୍ତୀ-ବସ୍ତ୍ର । ଅଦୂରରେ ଯୂଥଭ୍ରଷ୍ଟ ଏକ ନିଃସଙ୍ଗ ରାଜହଂସ ତାଙ୍କରି ଆଡ଼କୁ ଅନାଇ ସ୍ଥିର ଭାବରେ ଦଣ୍ଡାୟମାନ । ମନେହେଉଛି, ସତେ ଯେମିତି ବୈକୁଣ୍ଠ ତ୍ୟାଗିନୀ ଦେବୀ ସରସ୍ୱତୀ ନିଶ୍ଚଳ ହୋଇ ବସିଛନ୍ତି ।

ଯମୀଙ୍କ ଦୀର୍ଘ ପଦ୍ମପଳାଶ ନୟନଯୁଗଳ ଈଷତ୍ ରକ୍ତବର୍ଣ୍ଣ । ଦୀର୍ଘ ବେତସଯଷ୍ଟି ଭଳି ଋଜୁ ଶରୀର । ସୁପୁଷ୍ଟ ଘନ ବକ୍ଷୋଜ ଲୂତା-ତନ୍ତୁ ସୂକ୍ଷ୍ମ ବସ୍ତ୍ର ଦ୍ୱାରା ଦୃଢ଼ଭାବରେ ଆବଦ୍ଧ । ଦୀର୍ଘ କେଶପାଶରେ ଅଶୋକ, ମଞ୍ଜରୀ । ପ୍ରକୋଷ୍ଠରେ ମଣି ଖଚିତ ବଳୟ । ନାଭି ବଳୟ ନିମ୍ନକୁ ସୂକ୍ଷ୍ମ ବାସନ୍ତୀ ବସ୍ତ୍ର । କ୍ଷୀଣକଟି ପରିବେଷ୍ଟନ କରିଛି ରତ୍ନଖଚିତ କାଞ୍ଚିଦାମ । ସୁଗଠିତ ପଦ୍ମପାଦ ଲାକ୍ଷା ରସ ରଞ୍ଜିତ ।

ରାଜକନ୍ୟାଙ୍କ ଶରୀରରେ ରାତ୍ରିଜାଗରଣର କ୍ଳାନ୍ତି । କ୍ଳାନ୍ତି ଅପନୋଦନ ନିମନ୍ତେ ବାରମ୍ବାର ଦୁଇହସ୍ତ ଉର୍ଦ୍ଧ୍ୱକୁ ଟେକି ଜୃମ୍ଭଣ ତ୍ୟାଗ କରୁଛନ୍ତି । ରାତ୍ରିର ବିଳମ୍ବିତ ପ୍ରହର-ଉତ୍ସବ-ପ୍ରମତ୍ତ ଦେବୀ ଦେବତାମାନଙ୍କର ଔତ୍ସବିକ ଉଦ୍ଦାମତାରେ ପୂର୍ଣ୍ଣ ହୋଇ ଉଠିଥିଲା । ସୋମରସର ସ୍ରୋତରେ ସେମାନେ ନିଜକୁ ଭସାଇ ଦେଇଥିଲେ, ଯେଉଁଠୁ ପଛକୁ ଅନାଇ ଦେଖିବାର ଅବସର ହୁଏତ ଥିଲା, ମାତ୍ର ଫେରିବାର ଉପାୟ ନ ଥିଲା । କିଏ କ'ଣ କରୁଛି; କାହିଁକି କରୁଛି, ଜାଣିପାରୁ ନ ଥିଲା ।

ଯମୀଙ୍କର ମନେ ପଡୁଛି, ତାଙ୍କର ସଖୀମାନେ ଗତକାଲି ତାଙ୍କୁ 'ଅଶୋକ' ଏବଂ 'ବକୁଳ' ପାଇଁ 'ଦୋହଦ'ର ବ୍ୟବସ୍ଥା କରିବା ନିମନ୍ତେ ଅନୁରୋଧ କରିଥିଲେ । ସୁନ୍ଦରୀ ତରୁଣୀର ମୁଖାସବର ସ୍ପର୍ଶରେ ଅଶୋକ ମୁକୁଳିତ ହୁଏ ପୁଣି ତା'ରି ପଦାଘାତରେ ବିକଶିତ ହୁଏ ବକୁଳ । ଏଇ ଶାସ୍ତ୍ରୀୟ ନିର୍ଦ୍ଦେଶ ପାଳନ କରିବା ପୂର୍ବରୁ ସଖୀମାନେ ଯମୀଙ୍କୁ ଉତ୍ତମ ରୂପେ ସଜ୍ଜିତ କରିଥିଲେ । ଶରୀରରେ ଲେପନ କରିଥିଲେ ଦେବତାତ୍ମା ହିମାଳୟ ଅଞ୍ଚଳସ୍ଥ କୃଷ୍ଣସାର ମୃଗ ନିକଟରୁ ସଂଗୃହୀତ ଦୁର୍ଲ୍ଲଭ କସ୍ତୁରୀପଙ୍କ । ନନ୍ଦନବନ ସଂଗୃହୀତ ଲୋଧ୍ର-ରେଣୁର ସ୍ପର୍ଶରେ ତାଙ୍କର ଚାରୁ ପଦ୍ମାନନ ଝଟକି ଉଠିଥିଲା । ଅର୍ଦ୍ଧଚନ୍ଦ୍ରାକୃତି କପାଳର ମଧ୍ୟ ସୀମା ନିର୍ଦ୍ଦେଶ କରି ସୀମନ୍ତ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲା ଗୋରଚନା ଲେଖା । ପାରିଜାତର ନିର୍ଯ୍ୟାସ ଦେଇ ରକ୍ତିମ ଅଧରକୁ ଆହୁରି ଲାଲ କରି ଦିଆଯାଇଥିଲା ।

ତା'ପରେ ପୂର୍ଣ୍ଣ ସୁବର୍ଣ୍ଣ ଚଷକରୁ ଉତ୍କୃଷ୍ଟ ଆସବ ପାନ କରୁ କରୁ ସଖୀ-ସମଭିବ୍ୟାହାରରେ ସେ ପ୍ରଥମେ ଅଶୋକ-କୁଞ୍ଜ ଆଡ଼କୁ ଆଗେଇ ଯାଇଥିଲେ । ବିସ୍ତୃତ ପ୍ରମୋଦ ଉଦ୍ୟାନରେ ମଧ ବସନ୍ତର ଛୁଆଁ ଲାଗିଥିଲା ।

ମାନସ ସଞ୍ଚାରୀ ରାଜହଂସ ଯୂଥ ଚଞ୍ଚୁପୁଟରେ କମଳ ନାଳଧରି ତରୁଣୀ-ବାହିନୀର ଅନୁସରଣ କରୁଥିଲେ, ହୁଏତ ସେମାନଙ୍କଠାରୁ ଗତିର ମାଧୁର୍ଯ୍ୟ ଶିକ୍ଷା କରିବାକୁ । ରହି ରହି ଶୁଭୁଥିଲା ଆମ୍ର ମଧୁପାନଉତ୍ତାଳ ପିକକୁଳର ପଞ୍ଚମ ତାନ । ପୁଷ୍ପର ସୁବାସ, ଆସବର ସୁରଭି, ଔସବିକମାନଙ୍କ କୋଳାହଳ, ପଶୁପକ୍ଷୀକୁଳର ରବରେ ସମଗ୍ର ବାୟୁମଣ୍ଡଳ ସତେ ଯେମିତି ଭାରାକ୍ରାନ୍ତ ହୋଇ ଉଠୁଥିଲା ।

ଶୂନ୍ୟ-ଚଷକ ବାରମ୍ବାର ପୂର୍ଣ୍ଣ ହେଉଥିଲା ଏବଂ ତରୁଣୀ-ବାହିନୀ କ୍ରମଶଃ ନିଜ ଉପରୁ ନିୟନ୍ତ୍ରଣ ହରାଉ ଥିଲେ । ଏତିକିବେଳେ ସେମାନେ ଉପବନ ପରିକ୍ରମା ଶେଷରେ ଅଶୋକବୀଥିନିକଟରେ ପହଞ୍ଚିଯାଇ ଥିଲେ ।

ଯମୀଙ୍କର ଅନ୍ତରଙ୍ଗ ବାନ୍ଧବୀ ବକୁଳବାଳିକା ଏଥର ତାଙ୍କୁ ସମ୍ବୋଧନ କରି କହିଥିଲା, ''ହେ କୁଳିଶ ହୃଦୟେ ! ବିଳମ୍ବ ନ କରି ଏଇ ପ୍ରତୀକ୍ଷମାଣ ଅଶୋକକୁ ତୁମର ମୁଖ ନିଃସୃତ ଆସବଧାରାରେ ସିକ୍ତ କରାଇ ତାହାର ଉତ୍କଣ୍ଠା ଦୂରକର ।''

ବ୍ୟାଜକୋପରେ ଭ୍ରୂଭଙ୍ଗ କରି ହଂସପାଦିକା କହିଲା- ''ଯାହା ପାଦତଳର ଦୂର୍ବା ହେବା ନିମନ୍ତେ ସ୍ୱର୍ଗର ଦେବତାମାନେ ସତତ ଉତ୍କଣ୍ଠିତ, ସାମାନ୍ୟ ଅଶୋକ ତା'ର କରୁଣା ଲାଭ କରିବ କେଉଁ ଯୋଗ୍ୟତାରେ ?''

ତୃତୀୟା କହିଲା - ''ଚନ୍ଦ୍ର କ'ଣ ଅମୃତ ପାନରୁ ଚକୋରକୁ ବଞ୍ଚିତ କରନ୍ତି ସଖୀ ? ଅଶୋକ ବୃକ୍ଷଟିଏ ସିନା, ହେଲେ ପୁରୁଷ ତ, ସୁନ୍ଦରୀ ତରୁଣୀର ସ୍ପର୍ଶ.......''

ଛଦ୍ମକୋପରେ ତା'ର ଗଣ୍ଡଦେଶ ପୀଡ଼ନ କରୁ କରୁ ଯମୀ କହିଲେ -''ସୁନ୍ଦରୀ ସ୍ପର୍ଶର ମାଧୁର୍ଯ୍ୟ ତା' ହେଲେ ତୁ ହିଁ ପ୍ରଥମେ ଅନୁଭବ କର ।''

ପୀଡ଼ିତାର ଶୀତ୍କାର ସୂଚକ ଉଚ୍ଚସ୍ୱର ସହିତ ସମବେତ ସଖୀମଣ୍ଡଳୀର ଉଲ୍ଲାସପୂର୍ଣ୍ଣ କଳରୋଳରେ ଉପବନ ପ୍ରକମ୍ପିତ ହୋଇ ଉଠିଥିଲା ।ଚଷକରୁ ଆସବ ପାନ କରି ଏହାପରେ ରାଜକନ୍ୟା ପୂର୍ଣ୍ଣବେଗରେ ମୁଖସ୍ଥ ଆସବକୁ ଅଶୋକ ତରୁ ଉପରେ ନିକ୍ଷେପ କରିଥିଲେ ।ତୃଷିତ ପୃଥିବୀ ଯେମିତି ଆଦ୍ୟ ଆଷାଢ଼ର ପ୍ରଥମ ବାରି ବିନ୍ଦୁକୁ ଉତ୍କଣ୍ଠିତ ଚିତ୍ତରେ ଶୋଷିନିଏ, ଠିକ୍ ସେମିତି ଅଶୋକ ପଲ୍ଲବର ଶିରାପ୍ରଶିରା ଦେଇ ସୁନ୍ଦରୀ-ତରୁଣୀ ନିକ୍ଷିପ୍ତ ଆସବ ବିନ୍ଦୁ ଶୋଷିତ ହେବାକୁ ଲାଗିଲା ।

ଥରେ-ଦୁଇଥର-ତିନିଥର-ଯମୀଙ୍କୁ ଏହି ଦୋହଦ କ୍ରିୟା ସମ୍ପାଦନ କରିବାକୁ ପଡ଼ିଲା ।

ଚକ୍ଷୁ ପଲକରେ ସେ ଚମତ୍କାର ଘଟଣାଟି ଘଟିଗଲା । ଘୂମନ୍ତ ଅଶୋକ ସତେ ଯେମିତି କାଉଁରି କାଠିର ସ୍ପର୍ଶରେ ନିମିଷକରେ ଜାଗିଉଠିଲା । ଏହାର ଶାଖାପ୍ରଶାଖା ଚକ୍ଷୁ ପଲକରେ ରକ୍ତବର୍ଣ୍ଣର ସ୍ତବକରେ ଭରିଗଲା ।ଦେଖୁ ଦେଖୁ ବସନ୍ତ ରାଜଙ୍କର କୁନ୍ତସଦୃଶ କଳିକାଗୁଡ଼ିକ ରକ୍ତାଭ ପାଖୁଡ଼ାର ଚନ୍ଦ୍ରାତପ ମେଲି ରାଜସମ୍ଭାଷଣ ନିମନ୍ତେ ନିଜକୁ ପ୍ରସ୍ତୁତ କରିନେଲେ ।

ସମବେତ ତରୁଣୀ ଯୂଥ ପ୍ରମଭ ଉଲ୍ଲାସରେ ଫାଟି ପଡ଼ିଲେ ।

ଏହା ପରେ ବକୁଳର ପାଳି ।

ପ୍ରଥମା ଯମୀଙ୍କ ଆଡ଼କୁ ଅନାଇ କହିଲେ, "ଅୟି ନିଷ୍ଠୁରେ ! ଶୀଘ୍ର ବକୁଳର ପ୍ରତୀକ୍ଷାର ଅନ୍ତ ଘଟାଅ । ନଚେତ୍ ଅଚିରେ ସାରା ସୃଷ୍ଟି ତୁମକୁ ପକ୍ଷପାତିତା ଦୋଷ ଦୁଷ୍ଟ ବୋଲି ଦୁର୍ନାମ ଦେବ ।"

ବିଲୋଳ କଟାକ୍ଷପାତରେ ପ୍ରିୟ ସଖୀଙ୍କୁ ଦଗ୍ଧ କରୁ କରୁ ଯମୀ ତାନ ଛାଡ଼ିଥିଲେ-

"ତୁମେ ଅଛ ମୋତେ ଚାହିଁ, ମୁଁ ଚାହୁଁଚି ତୁମ ଆଡ଼େ,
ସ୍ତବ୍ଧ ସର୍ବ କୋଳାହଳ...ମୁଁ ଅଛି ତୁମ ଭିତରେ ।"

ଥରେ, ଦୁଇଥର ବାରମ୍ବାର ଯମୀଙ୍କ କଣ୍ଠରୁ ଗାନଟି ବାହାରି ଧ୍ୱନି ପ୍ରତିଧ୍ୱନି ହୋଇ ଦିଗଦିଗନ୍ତ ଭରିଗଲା ।ପକ୍ଷିକୁଳ ମହୋଲ୍ଲାସରେ ତାଳ ଦେବାକୁ ଲାଗିଲେ ।

ଶୋଭାଯାତ୍ରା ଆଗେଇ ଚାଲିଲାବକୁଳ ବିତାନ ଆଡ଼କୁ । ହଂସପାଦିକା ବୃକ୍ଷରାଜକୁ ସମ୍ବୋଧନ କରି କହିଲା-"କଠୋରତା ତ୍ୟାଗ କରି ତୁମେ ଆମର ପ୍ରିୟସଖୀଙ୍କୁ ଅନୁଗୃହୀତ କର ବନ୍ଧୁ ।"

ଯମୀ ଆକାଶ ସହିତ ସ୍ପର୍ଦ୍ଧାପ୍ରକାଶ କରି ମସ୍ତକ ଉତ୍ତୋଳନ କରି ସଗର୍ବରେ ଦଣ୍ଡାୟମାନ ହୋଇଥିବା ବୃକ୍ଷ ଆଡ଼େ ଥରେ ଅନାଇଲେ । ଧୀରେ ଧୀରେ ତାଙ୍କର ଆତ୍ମବିସ୍ମୃତି ଘଟିବାକୁ ଲାଗିଲା । ତାଙ୍କ ଶରୀରର ବହିରାବଣ କ୍ରମେ କ୍ରମେ ପ୍ରକୃତି ସହିତ ମିଶିଗଲା ଭଳି ତାଙ୍କୁ ଲାଗୁଥାଏ । ଅରଣ୍ୟ, ଉପବନ, ଜଳ, ସ୍ଥଳ ସବୁ ଏକାକାର ହୋଇ ଯାଉଛି । ରେଣୁ ରେଣୁ ଆଲୋକଧାରା ଏକତାନରେ ଏକ ଛନ୍ଦରେ ତାଙ୍କ ଚାରିଆଡ଼େନୃତ୍ୟ କରି ବୁଲୁଛି । ତା'ରି ଭିତରେ ମୁଗ୍ଧା ନାୟିକାଭଳି ସେ ବକୁଳର କଠିନ ବକ୍ଷରେ ନିଜର କୋମଳ ପଦର ସ୍ପର୍ଶ କରାଇଛନ୍ତି ।

ସଖୀମାନଙ୍କର ଉଚ୍ଚକିତ କୋଳାହଳରେ ତାଙ୍କର ସଂବିତ୍ ଫେରି ଆସିଛି । ସେ ମୁଗ୍ଧ ନେତ୍ରରେ ସ୍ତମ୍ଭିତ-ବକୁଳର ମୁକୁଳିତ ଶୋଭା ଆଡ଼େ ଅନାଇ ରହିଛନ୍ତି ।

ଯମୀ ଅତୀତରୁ ବର୍ତ୍ତମାନକୁ ଫେରିଆସୁଛନ୍ତି । ତାଙ୍କର ବକ୍ଷ ମଥିତ କରି ଦୀର୍ଘଶ୍ୱାସ ବାହାରି ଆସୁଛି ।

ଦିବସ ଆଉ ରାତ୍ରିର ମହାମିଳନର ସ୍ମରଣୀୟ ଉତ୍ସବ କିଛିକ୍ଷଣ ପୂର୍ବରୁ ତାଙ୍କରି ଆଖି ଆଗରେ ଅନୁଷ୍ଠିତ ହୋଇଯାଇଛି । ଗୋଟିଏ ଦିଗରେ ଅସ୍ତାଚଳର ଚୂଡ଼ା ନିମ୍ନକୁ ଖସିପଡୁଥାଆନ୍ତି ଭଗବାନ୍ ମରିଚିମାଳିନୀ ରକ୍ତକନ୍ଦୁକର ଆଭା ବିସ୍ତାର କରି । ପ୍ରିୟ ଦୁହିତାଙ୍କ ସର୍ବାଙ୍ଗରେ ସ୍ନେହପୂର୍ଣ୍ଣ ହସ୍ତ ବୁଲାଇ ଦେଉ ଦେଉ ସତେ ଯେମିତି ତାଙ୍କୁ ସତର୍କ କରାଇ ଦେଇ ଯାଇଛନ୍ତି । 'ଯୌବନ ଅତ୍ୟନ୍ତ ବିଷମ କାଳ ଏବଂ ଭବିଷ୍ୟତ ଜୀବନ ପାଇଁ ଏକ ସୋପାନ ସଦୃଶ । ଥରେ ପାଦ ଖସିଗଲେ, ଜୀବନ ସାରା ମୁଣ୍ଡ ଟେକି ଠିଆ ହେବା କଷ୍ଟସାଧ ହୋଇପଡ଼େ ।'

ଯମୀଙ୍କର ଉଚ୍ଚକଣ୍ଠରେ ବିଳାପ କରିବାକୁ ମନ ହେଉଥିଲା । ପାପପୁଣ୍ୟର ସୀମାରେଖା ଡେଇଁ ସେ ଗତକାଲି ଯେଉଁ ଦୁର୍ଗମ ଇଲାକା ଭିତରକୁ ପାଦ ବଢ଼ାଇଥିଲେ ତାହାର ଖବର ତେବେ ସମସ୍ତଙ୍କ ପାଖରେ ପହଞ୍ଚିଯାଇଛି ! ଆବାଲ୍ୟରୁ 'ଶ୍ରେୟ'ର ଶିକ୍ଷା ପାଇ ଆସିଥିବା ଯମୀ ହଠାତ୍ 'ପ୍ରେୟ'ର ପଛରେ ଏମିତି ପାଗଳ ଭଳି କେମିତି ଧାଇଁଥିଲେ ତାହା ତାଙ୍କୁ ଜଣାନାହିଁ । ତେବେ ଏଥିରେ ଯେ ତାଙ୍କର ସମସ୍ତ ସାଧନା ବ୍ୟର୍ଥ ହୋଇଛି, ଏଥବରେ ସନ୍ଦେହ ନାହିଁ ।

ଭଗବାନ୍ ଜାଣନ୍ତି, ଏଭଳି ଏକ ଜୁଗୁପ୍ସିତ କାର୍ଯ୍ୟ କରିବାତ ଦୂରର କଥା, ସେ ସ୍ୱପ୍ନରେ ସୁଦ୍ଧା କେବେ ଏହାର ଚିନ୍ତା ମଧ୍ୟ କରି ନ ଥିଲେ । ଅଥଚ ତାଙ୍କର ଭାଗ୍ୟବିଧାତା ତାଙ୍କଦ୍ୱାରା ସେଇ ଦୁଃସାହସିକ କାର୍ଯ୍ୟଟିକୁ କରାଇ ନେଇଛନ୍ତି । ବାରମ୍ବାର ଅନ୍ତର ଭିତରୁ ତାଙ୍କୁ ସ୍ପଷ୍ଟ ସ୍ୱରରେ ଦିଗ୍‌ଦର୍ଶନ ଦେଇଛନ୍ତି । କହିଛନ୍ତି, ସଂସାରରେ ପାପ ଆଉପୁଣ୍ୟ ବୋଲି କୌଣସି ସ୍ୱତନ୍ତ୍ର ବସ୍ତୁ ନାହିଁ । ମଣିଷ ଯୁଗେ ଯୁଗେ କେବଳ ତାହାହିଁ ତ କରି ଆସିଛି, ଯାହା ତାକୁ କରିବାକୁ ପଡ଼ିଛି । ହୋଇପାରେ ତାହା ପାପ, କିମ୍ବା ପୁଣ୍ୟ । ଏଥିପାଇଁ ଅନୁଶୋଚନା କରି ଲାଭ କ'ଣ ?'

ଯମୀ,ଭାବୁଛନ୍ତି, ପାପପୁଣ୍ୟ ବ୍ୟକ୍ତିର କଳ୍ପନା ହୋଇପାରେ । ମାତ୍ର ତା'ର ମନ ? ତାକୁ ଅସ୍ୱୀକାର କରାଯିବ କେମିତି ? ଯୌବନର ହାତ ଧରି ସେ ନିଜେ ଯେଉଁ ଦୁଃସାହସିକ କାର୍ଯ୍ୟଟି କରି ପକାଇଛନ୍ତି ଆଜି ସେଥିପାଇଁ ତାଙ୍କୁ ମନର ସିଂହାସନ ତଳେ ମଥାନତ କରି ଦୟନୀୟ ଭାବରେ ଦଣ୍ଡାୟମାନ ରହିବାକୁ ପଡ଼ିଛି ।

ହାୟ ମନସିଜ, ତମେ ଏ କ'ଣ କଲ ? ସୃଷ୍ଟିରୁ ଗୁରୁଲଘୁ, ମାନ୍ୟକୁ ପୂରାପୂରି ଲୋପ କରିଦେବାକୁ ତମର ବିବେକ ତମକୁ ଟିକିଏ ହେଲେ ବାଧା ଦେଲା ନାହିଁ ? ଏହି ଅପରାଧରେ ପରା ତମକୁ ବିଦେହୀ ହେବାକୁ ପଡ଼ିଛି ? ତଥାପି ତମର ଚୈତନ୍ୟୋଦୟ ହେଲା ନାହିଁ ?

ରହି ରହି ସତେ ଯେମିତି କାହାର ଅଟ୍ଟହାସ୍ୟକାନରେ ବାଜୁଥିଲା । କାହାର ଏ କଣ୍ଠସ୍ୱର ? ସେ କ'ଣ ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ? ଅବା ଯାହାଙ୍କ କବଳରେ ଥରେ ପଡ଼ିଲେ, ସାରା ସୃଷ୍ଟି ବଣା ହୋଇ ଯାଏ, ସେଇ ପଞ୍ଚଶର ? ଠୋ' ଠୋ' ହସି ସେହି ଅଶରୀରୀ କହୁଥିଲା, ଯୌବନର ପ୍ରୟୋଗଶାଳାରେ ପ୍ରତ୍ୟେକ ପ୍ରାଣୀର କେବଳ ଦୁଇଟି ଜାତି । ଗୋଟିଏ ପୁରୁଷ ଅପରଟି ନାରୀ । ବ୍ୟକ୍ତିଗତ ସମ୍ପର୍କ ସେଠାରେ ନିତାନ୍ତ ତୁଚ୍ଛ । ପ୍ରତ୍ୟେକେ ସେଠାରେ ପରୀକ୍ଷାର ଏକ ଏକ ସାଧନ ମାତ୍ର ।

ହୁଏତ ଏହା ହିଁ ଧ୍ରୁବ ସତ୍ୟ । ନଚେତ୍ ସ୍ୱୟଂ ବେଦବର ଚତୁର୍ମୁଖ-ବିଧାତା କିଭଳି ଲାଜଲଜ୍ୟା ବିସର୍ଜନ ଦେଇ ନିଜର ଔରସଜାତ କନ୍ୟା ବୀଣାପାଣିଙ୍କ ପ୍ରତି-

ଯମୀ ଶିଳାସନରେ ବସି ଗତରାତ୍ରିର ଘଟଣା ସବୁର ରୋମନ୍ଥନ କରୁଥିଲେ । ମଦିରା ଗନ୍ଧ ଭାରାକ୍ରାନ୍ତ ରାକା ରଜନୀ ସତେ ଯେପରି ତାଙ୍କର ପଦପ୍ରାନ୍ତରେ ମୂର୍ଚ୍ଛିତ ହୋଇ ପଡ଼ିଥିଲା । ଦୂରରୁ ରହି ରହି ଶୁଣା ଯାଉଥିଲା, ବସନ୍ତୋତ୍ସବ ପ୍ରମତ୍ତ ଯୁବକ-ଯୁବତୀମାନଙ୍କର ଉଲ୍ଲାସ ସୂଚକ ଅଟ୍ଟହାସ । ଗତକାଲି ଏଇଠି ତାଙ୍କର ବିବେକ ବଳି ପଡ଼ିଥିଲା ।

ଉପବନର ସୁଦୂର ପ୍ରାନ୍ତରୁ ଶୁଣାଯାଉଛି ତୃଷାର୍ତ୍ତ ଚକୋର କଣ୍ଠର ଆକୁଳ ପ୍ରାର୍ଥନା । ଚନ୍ଦ୍ରକୁ ଅନାଇ ସେ ହୁଏତ ମାଗୁଛି ବିନ୍ଦୁଏ ଜଳ । ଯୁଗ ଯୁଗର ତୃଷା ତା'ର ସେଇଥିରେ ଦୂରହେବ । ମାତ୍ର ମାଗିଲେ କ'ଣ ମିଳେ ? ପଥରରେ ମୁଣ୍ଡ ପିଟିଲେ କ'ଣ ପାଷାଣ ହୃଦୟରେ କରୁଣା ସଞ୍ଚାର ହୁଏ ? ସେ ବି ତ ଉପଯାଚିକା ହୋଇ ମାଗିଥିଲେ ପୁରୁଷର ସଞ୍ଚିତ ଭଣ୍ଡାରରୁ କଣାଏ ଜଳ । ତାଙ୍କର ତୃଷିତ ହୃଦୟକୁ ଶୀତଳ କରିବା ପାଇଁ । ମାତ୍ର ତା'ସେ ପାଇଲେ କେଉଁଠୁ, ଜାତିଗଲା ସିନା, ପେଟ ପୂରିଲା ନାହିଁ ।

ଯମୀ ଜାଣନ୍ତି ଯାହା ସେ କରିବାକୁ ଯାଉଥିଲେ, ତାହା ପାପ । ନୀତିହୀନ ଆସ୍ପୃହା । ଆସଙ୍ଗ ଲିପ୍ସାର ଏକ ଭୟଙ୍କର ତାଣ୍ଡବ ରୂପ । ଦେବକୁଳରେ ଜନ୍ମ ହୋଇ ଯାହା ସେ କରୁଥିଲେ, ତାହା କୌଣସି ଚଣ୍ଡାଳ ମଧ କରିବ ନାହିଁ । ସେ ଜାଣନ୍ତି ଏଥିପାଇଁ ସାରା ସୃଷ୍ଟି ତାଙ୍କୁ 'ଛି' 'ଛି' କରିବ । ତାଙ୍କରି ପାଇଁ ଯୁଗଯୁଗକୁ ଦେବକୁଳର

ଶୁଭ୍ରଯଶଃରେ କାଳି ଲାଗିଲା । ତାଙ୍କ ଉପରେ କଳଙ୍କିନୀର ମୋହର ବାଜିଗଲା । ମାତ୍ର ତାଙ୍କର ଅପରାଧ କ'ଣ ? ସେ ତ ନିଜର ଆୟତରେ ନ ଥିଲେ । ଜ୍ଞାତସାରରେ କ'ଣ ଏ କଥା କିଏ କରେ ?

କେଉଁ କାରଣରୁ ତାଙ୍କର ଭାଗ୍ୟବିଧାତା ସମଗ୍ର ସୃଷ୍ଟି ଆଗରେ ତାଙ୍କୁ ଏଭଳି ହେୟ କରିଦେଲେ, ତା' ସେ ଜାଣିନାହାନ୍ତି । ଦେବକୁଳରେ ଜନ୍ମ ହୋଇ ଆଜନ୍ମଦେବତାମାନଙ୍କର ପ୍ରଚଣ୍ଡ ହିଂସାକୁ ସେ ଦେଖି ଆସିଛନ୍ତି । ବିଳାସ ଏବଂ ଭୋଗ-ଏ ଦୁଇଟି ସତେ ଯେମିତି ଦେବତାମାନଙ୍କର ନୈତିକ ଅଧିକାର । ଏଥିପାଇଁ ସେମାନେ ସ୍ଥାନକାଳପାତ୍ର କିଛି ହିଁ ତ ବିଚାର କରିନାହାନ୍ତି । କାମନା ଆଉ ପ୍ରାପ୍ତି ଭିତରେ ଯେଉଁ ବିରାଟ ଶୂନ୍ୟତା ଥାଏ, ଦେବତାମାନଙ୍କ ପାଇଁ ତ ସେ ନିୟମ ଖଟେ ନାହିଁ ।

ତାଙ୍କ କ୍ଷେତ୍ରରେ ତେବେ ଏହାର ବ୍ୟତିକ୍ରମ ହେଲା କାହିଁକି ? ଯେଉଁ ପରମ୍ପରା ତାଙ୍କ ପୂର୍ବରୁ ଦେବଗୋଷ୍ଠୀର ଆଚରଣକୁ ନେଇ ଗଢ଼ି ଉଠିଥିଲା, ସେ ତ ମାତ୍ର ସେଇ ପରମ୍ପରାର ଜଣେ ଅନୁଗତ ଶିଷ୍ୟ ।ତାଙ୍କର ଆଚରଣକୁ ତେବେ ଗର୍ହିତ ବୋଲି ଚିହ୍ନିତ କରି ଦିଆଗଲା କାହିଁକି ?

ତ୍ରିକାଳଜ୍ଞ ମହର୍ଷି ପରାଶର । କୈବର୍ତ୍ତ କନ୍ୟାଟିଏ ଦେଖି ତାଙ୍କର ଧୃତି ଟଳିଲା । ଏଥିପାଇଁ ସେ ପତିତପାବିନୀ ଗଙ୍ଗା ବକ୍ଷରେ ସ୍ପଷ୍ଟ ଦିବାଲୋକରେ ସୃଷ୍ଟି କଲେ ଘନ କୁହୁଡ଼ିକା । ସାରାସଂସାର ରହିଗଲା ପରଦା ଆରପଟେ । ପରାଶର ନଦୀ ଆରପାରିରେ ନୌକାରୁ ଓହ୍ଲାଇ ଗନ୍ତବ୍ୟ ପଥରେ ଚାଲିଗଲେ । ସଦ୍ୟଜାତ ପୁତ୍ର ଆଡ଼କୁ ଥରେ ବି ଅନାଇଲେ ନାହିଁ ।

ସେଇ ମହର୍ଷି କୃଷ୍ଣ ଦ୍ୱୈପାୟନ । ପ୍ରଚଣ୍ଡ ରିରଂସା ଭିତରୁ ଜନ୍ମ ନେଇ ଭାରତ ପ୍ରସିଦ୍ଧ ଚନ୍ଦ୍ରବଂଶର ଆଦି ପୁରୁଷ ହେଲେ । ବଂଶ ରକ୍ଷା କରିବା ପାଇଁ ଅଗମ୍ୟ-ଗମନ କଲେ । ନିଜ ଜନ୍ମର ପ୍ରତିଶୋଧ ନେଲେ ସମଗ୍ର ଚନ୍ଦ୍ରବଂଶକୁ କଳଙ୍କିତ କରିଦେଇ । ସେଇ ବଂଶର ନାରୀ ଆଉ ପୁରୁଷ ଅତୀତର ଧୂମ୍ରାଭ ଛାୟାକୁ ସଯତ୍ନରେ ଘୋଡ଼ାଇ ପୌରୁଷର ଦାବୀରେ ଏ ଦେଶର ସ୍ମରଣୀୟ ବ୍ୟକ୍ତିତ୍ୱ ହୋଇ ଉଠିଲେ । ଆଜି କିଏ ଅବା ସେମାନଙ୍କ ଚାରିତ୍ରିକ ସ୍ଖଳନ କଥା ମନେ ପକାଉଛି ? ସେମାନେ ଯେ ସଫଳ, ସଫଳତାର ଇତିହାସ କାଳିମାହୀନ ।

ଶଚୀ-ପତି ଇନ୍ଦ୍ର ଯେ ନିଜ ଦେହରେ ନିଜ ଚରିତ୍ରର ଗୌରବ ପତାକା ବହନ କରି ବୁଲୁଛନ୍ତି । କାହା କଥା ବିଚାର କରିବେ ? ସେତ ସେଇମାନଙ୍କର ଦାୟାଦ ।

ଯାହା କରିଛନ୍ତି ସେଇମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ କରିଛନ୍ତି । ହୋଇପାରେ ତାହା ପାପ ।

ଗତକାଲିର ଘଟଣା ଗୋଟି ଗୋଟି ହୋଇ ଯମୀଙ୍କର ମନେ ପଡୁଥିଲା । ବକୁଳ ଦୋହଦ କ୍ରିୟାଟି ଶେଷ ହୋଇ ଯିବା ପରେ ମୁକୁଳିତ ବକୁଳର ସୁରଭିରେ ଯେତେବେଳେ ଦିଗ୍‌ବିଦିଗ ଆମୋଦିତ, ଆସବ ପାନପ୍ରମର ସଖୀମାନେ ଅଳିକୁଳର ଗୁଞ୍ଜରଣକୁ ଅନୁକରଣ କରୁ କରୁ ଯେତେବେଳେ ମନୋମତ ପୁରୁଷର ଅନ୍ୱେଷଣରେ ଇତଃସ୍ତତଃ ସଞ୍ଚରଣଶୀଳା, ଠିକ୍ ସେତିକିବେଳେ ଯମୀଙ୍କ ଆଗରେ ଆସି ଠିଆ ହୋଇ ଯାଇଥିଲା, ଏକ ପରିପୂର୍ଣ୍ଣ ପୁରୁଷ । ସେ ନିଶ୍ଚୟ ଦୈବପ୍ରେରିତ-ଯମୀଙ୍କର ମନେ ହୋଇଥିଲା । ରାତ୍ରିର ଘନାୟମାନ ଅସ୍ୱଚ୍ଛତା, ଉପବନର ବୃକ୍ଷଲତା ସହିତ ଚନ୍ଦ୍ରିକାର ଛାୟାନ୍ଧକାର ଖେଳ ଭିତରେ ଯମୀଙ୍କୁ ଦେଖା ଯାଇଥିଲା, ସ୍ୱୟଂ ରତିପତି କନ୍ଦର୍ପ ଦେହଧାରଣ କରି ତାଙ୍କ ଆଗରେ ଦଣ୍ଡାୟମାନ । ରାତ୍ରିର ଏ ନିର୍ଜନ ପ୍ରହର ପୁଣି ଏ ବିବିକ୍ତ ସ୍ଥଳୀ । ଜଣେ ପୂର୍ଣ୍ଣ ଯୌବନା ନାରୀ ପାଖରେ ଜଣେ ସମର୍ଥ ପୁରୁଷର କ'ଣ କାମ ଥାଇ ପାରେ ?

ପୁରୁଷ ପୁଙ୍ଗବ କିନ୍ତୁ ସେଇଭଳି ନିରବରେ ଠିଆହୋଇ ରହିଥିଲେ । ଆଗକୁ ବଢୁ ନ ଥିଲେ କିମ୍ବା ପଛକୁ ଘୁଞ୍ଚୁ ନ ଥିଲେ । କାମନାର ବସ୍ତୁକୁ ଯେ, ଆଗେଇ ଆସି କୋଳାଗ୍ରତ କରିନେବାକୁ ହୁଏ, ହୁଏତ ଏହି ସାଧାରଣ ସତ୍ୟଟି ତାଙ୍କୁ ଜଣାନଥିଲା । ହୁଏତ କିଛି ଲଜ୍ୟା, କିଛି ସଙ୍କୋଚ ।

ସେଥିରେ କିଛି ଯାଏ ଆସେ ନାହିଁ । ସେ ଦେବକନ୍ୟା । ଯୌବନବତୀ । ଯାହା ଚାହିଁଛନ୍ତି, ସଦାବେଳେ ତା ପାଇ ଆସିଛନ୍ତି । ଚିତ୍ତବୃତ୍ତି ନିରୋଧ କରିବାର ସଂଯମ ତାଙ୍କୁ ଜଣାନାହିଁ ।

ବସନ୍ତ ଉତ୍ସବର ମାଦକତା ପୁଣି ଏଇ ମୁହୂର୍ତ୍ତରେ ତାଙ୍କଠାରେ ସୃଷ୍ଟିକରିଛି, ସୃଷ୍ଟିର ସମସ୍ତ ଆନନ୍ଦ ଲୁଟିନେବା ପାଇଁ ଏକ ଦୁର୍ଦ୍ଦମନୀୟ ଆକାଙ୍‌କ୍ଷା । ଅଭୀପ୍ସିତକୁ ଲାଭ କରିବା ପାଇଁ ପୁରୁଷ ଯଦି ସଙ୍କୁଚିତ, ତେବେ ସେ ନିଜେ ଆଗେଇ ଯିବେ । ଥରେ ବ୍ରୀଡ଼ାର ଆବରଣ ଖସି ପଡ଼ିଲେ, ନାରୀ କେତେଦୂର ପର୍ଯ୍ୟନ୍ତ ଯାଇପାରେ, ଆଜି ସେ ତାହା ଦେଖାଇ ଦେବେ ।

ପାଷାଣ ମୂର୍ତ୍ତି ଭଳି ଦଣ୍ଡାୟମାନ ରହିଥିବା ସେଇ ପୁରୁଷ ଆଡ଼େ ଅନାଇ ଯମୀ ଅଗତ୍ୟା କହିଲେ- ''ଏତେବେଳେ ଅଧୀନାକୁ ସ୍ମରଣ କଲେ ? ମୁଁ ଯେ ସେଇ ସନ୍ଧ୍ୟା ସମୟରୁ...'' ପୁରୁଷ ପୂର୍ବ ଭଳି ନିସ୍ପନ୍ଦ । ଉତ୍ତେଜନାର ଉତ୍ତାପରେ ଯମୀ ମହମ ଭଳି ତରଳିବାକୁ ଆରମ୍ଭ କରିଥିଲେ । ପୁରୁଷର ବଳିଷ୍ଠ ଆଶ୍ଳେଷରେ ନିପୀଡ଼ିତ ହେବା

ନିମନ୍ତେ ତାଙ୍କର ପ୍ରତିଟି ସ୍ନାୟୁକୋଷ ଫାଟି ପଡ଼ିବାକୁ ଉନ୍ମୁଖ ହୋଇ ରହିଥିଲା । ପାରଦାକାର ଚନ୍ଦ୍ରାଲୋକରେ ପୁରୁଷର ବଳିଷ୍ଠ ପେଶୀ ଲୋମହୀନ କପାଟବକ୍ଷ, ସିଂହକଟୀ ଏବଂ ପେଶଳ ଜଙ୍ଘ ତାଙ୍କୁ ଯେମିତି ନୀରବରେ ଆମନ୍ତ୍ରଣ ଜଣାଉଥିଲା । ତାଙ୍କର କଠିନ ବକ୍ଷୋଜ ସ୍ପନ୍ଦିତ ହେବାକୁ ଆରମ୍ଭ କରିଥିଲା । ସାରାଶରୀର ଦେଇ ଉତ୍ତପ୍ତ ଅଗ୍ନିସ୍ରୋତ ପ୍ରବାହିତ ହେଉଥିଲା ।

ପାଷାଣ ପ୍ରତିମାରେ ଜୀବନର ଲକ୍ଷଣ ଦେଖା ଦେଇଥିଲା । ସେଇ ପୁରୁଷ ଏଥର ଯମୀଙ୍କ ଆଡ଼କୁ ଯନାଇଲେ । ମଦିରାସକ୍ତ ଭାରି ଆଖିପତା ଟେକି ଯମୀ ତାଙ୍କୁ ଚିହ୍ନିବାକୁ ଚେଷ୍ଟା କଲେ । ଛାତି ଭିତରୁ ତାଙ୍କର ଯେମିତି ଉଲ୍‌କାପିଣ୍ଡ ଖଣ୍ଡେ ଖସିପଡ଼ିଲା । ଏ କିଏ ? କିଏ ହୋଇ ପାରେ ତାଙ୍କର ଏହି ପ୍ରାର୍ଥିତ ପୁରୁଷ ? ବାଲ୍ୟକାଳରୁ ଯାହା ସହିତ ଗୋଟିଏ ଗୃହ ପ୍ରାଙ୍ଗଣରେ ରହି ଦୁନିଆକୁ ଚିହ୍ନିବାକୁ ଚେଷ୍ଟା କରିଛନ୍ତି, ଯାହାଙ୍କର ହାତଧରି ଚାଲିବାକୁ ଶିଖିଛନ୍ତି, ଯାହାଙ୍କ କାଖରେ ବସି ଆକାଶରୁ ଚନ୍ଦ୍ର, ତାରା ଛିଣ୍ଡାଇ ଆଣି ଆପଣାର କବରୀ ମଣ୍ଡନ କରିବା ନିମନ୍ତେ ଅଳି କରିଛନ୍ତି ଯିଏ ତାଙ୍କର ଧୂଳିଘରକୁ ବାରମ୍ବାର ଭାଙ୍ଗି ଦେଇ ତାଙ୍କର କ୍ରନ୍ଦନରେ ବିଚଳିତ ହୋଇ ତାଙ୍କ ପାଇଁ ନନ୍ଦନକାନନରୁ ସୁପକ୍ୱ ଫଳମାନ ସଂଗ୍ରହ କରି ଆଣି ତାଙ୍କୁ ଭୁଲାଇଛନ୍ତି, ଏ କ'ଣ ସେଇ ?

ପୁରୁଷର ବକ୍ଷ ମଥିତ କରି ଏଥର ଏକ ଦୀର୍ଘଶ୍ୱାସ ବାହାରି ଆସିଲା । ସେ ବିଚଳିତ କଣ୍ଠରେ ନିଜର ଆସବ ପ୍ରମତ୍ତା ସହୋଦରା ଆଡ଼କୁ ଅନାଇ କହିଲେ- ଯ...ମୀ... ।ତାଙ୍କର କଣ୍ଠ ଥରୁଥିଲା । ବାକ୍ୟ ସ୍ଖଳିତ ହେଉଥିଲା । ଘନଘନ ଶ୍ୱାସ ବାହାରି ତାଙ୍କର ସର୍ବାଙ୍ଗ ବାତ୍ୟାଆନ୍ଦୋଳିତ ରମ୍ଭାପତ୍ର ପରି ସଞ୍ଚାଳିତ ହେଉଥିଲା । ଯମ ନିଜର ଅପ୍ରକଟ କ୍ରୋଧକୁ କୌଣସି ମତେ ସମ୍ବରଣ କରି ପୁଣିଥରେ କହିଲେ- "ତୁମେ ଆଜି ଅତ୍ୟଧିକ ସୁରାପାନ କରି ଅପ୍ରକୃତିସ୍ଥ ହୋଇ ପଡ଼ିଛ । ଚାଲ, ଏଥର ଘରେ ଯାଇ ବିଶ୍ରାମ ନେବ ।"

ଯମୀ ଅନୁଚ୍ଚ ସ୍ୱରରେ ହସି ଉଠିଲେ । ଯେଉଁ ପାଦ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଥରେ ଉଠିଥାଏ, ତାକୁ ପୁନର୍ବାର ତା'ର ପୂର୍ବସ୍ଥାନକୁ ଫେରାଇ ନେବା ଏତେ ସହଜ କାମ ନୁହେଁ । ପାଦତଳେ ହୁଏତ ରହିଛି ଏକ ବିରାଟ ଶୂନ୍ୟତା । ଅବଲମ୍ବନହୀନ ହୋଇ ସେ ବିରାଟ ଶୂନ୍ୟତା ଭିତରକୁ ଖସିପଡ଼ିବେ । ଚିରଦିନ ପାଇଁ ହଜିଯିବେ । ତଥାପି ସେ ଉଠାଇଥିବା ପାଦକୁ ପଛକୁ ଫେରାଇ ପାରିବେ ନାହିଁ ।

ଆକାଶ ବକ୍ଷରେ ଭସା ବାଦଲସହ ପୂର୍ଣ୍ଣଚନ୍ଦ୍ରର ଅଭିସାର । ପ୍ରଥମ ବସନ୍ତର ଉତଳା କୋକିଳ ଦେବଦାରୁ ଶାଖାରୁ କୁହୁକୁହୁ ରାବରେ ହୃଦୟର ଆକୂତି ପ୍ରକାଶ

କରୁଛି । ପରିପାର୍ଶ୍ୱର ଉପବନ ଘନ ହୋଇ ରହିଛି । ଚନ୍ଦ୍ରାଲୋକରେ ଉଦ୍‌ଭାସିତ ପରିଚ୍ଛନ୍ନ ମୃଦୁ ସମୀର । ଜୁକୁଜୁକିଆ ପୋକର ବିନ୍ଦୁ ବିନ୍ଦୁ ଆଲୋକ ନୃତ୍ୟ କରୁଛି । ଅସ୍ଫୁଟ ମନ୍ତ୍ରୋଚାରଣ ଭଳି ଶବ୍ଦ କରି ଝରଣା ବହିଚାଲିଛି ଉପଳ ଉପରେ ନୃତ୍ୟ ଚପଳ ପାଦ ଥାପି ଥାପି । ଦୁଗ୍‌ଧ ଧବଳ ଚନ୍ଦ୍ରକିରଣରେ ସ୍ନାତ ଚରାଚର । ଆକାଶ ଏକ ନୀଳ ମାୟା । ଦୂର ସୁଦୂର ଦିଗନ୍ତରେ ଉଦ୍ଭାସିତ ହେଉଛି ଦେବତାତ୍ମା ହିମାଳୟ । ଶୀର୍ଷରେ ତୁଷାର ମୁକୁଟ । ଯମୀଙ୍କର ମନେ ହେଲା ପ୍ରେମ ଏକ ଦୁସ୍ତର ଗହ୍ୱର । ଗୋଟିଏ ଦୁର୍ଲଂଘ୍ୟ ଫାନ୍ଦ । ସେଇଥିରେ ସେ ପଡ଼ିଯାଇଛନ୍ତି । ପତନ ଗୁରୁତର ହେଲେ ସେଥିରୁ ଆଉ ଉଠିବାର ଉପାୟ ନ ଥାଏ ।

ପ୍ରେମ ଏକ ଭୁଲ୍ ଅନ୍ତତଃ ଏ କ୍ଷେତ୍ରରେ । ଇଚ୍ଛାକରି ସେ ଏ ଭୁଲ୍ କରି ନାହାନ୍ତି । ସ୍ତ୍ରୀ ପ୍ରତି ପୁରୁଷର ଆକର୍ଷଣ ପ୍ରକୃତି ନିର୍ଦ୍ଦେଶିତ । ଯେ ଭଲ ପାଇବ, ସେ ଭଲ ପାଇବ ହିଁ । ତାର ପ୍ରକୃତି ଏଇଭଳି । ଜଳ ଯେମିତି ତରଳ, ଲୌହ ଯେମିତି କଠିନ, କର୍ଦ୍ଦମ ଯେମିତି ପିଚ୍ଛିଳ-ଠିକ୍ ସେମିତି ।

ସ୍ଥିର ଦୃଷ୍ଟିରେ ଯମଙ୍କ ଆଡ଼କୁ ଅନାଇ ଯମୀ କହିଲେ, ''ପ୍ରେମମୂଳା ମେଦିନୀ । ଭୂମିର ଆକାଶ ପ୍ରେମ ବୃକ୍ଷ ହୋଇ ଊର୍ଦ୍ଧ୍ୱମୁଖୀ ହେଉଛି ପ୍ରତି ନିୟତ । ଆକାଶକୁ ଭଲ ପାଏ ବୋଲି ପକ୍ଷୀର ପକ୍ଷ ନିର୍ଗତ ହୁଏ, ଫୁଲକୁ ଭଲ ପାଏ ବୋଲି ପ୍ରଜାପତି ବହୁ ବର୍ଣ୍ଣ । ପୃଥିବୀ ପ୍ରେମର ।''

ଯମଙ୍କ ଭ୍ରୂକୁଞ୍ଚିତ ହୋଇ ଉଠିଲା । ସେ କେବଳ କହିଲେ- ପାଗଳ ।

ଯମୀ ବିଚଳିତ ନ ହୋଇ କହିଲେ-''ଜୀବ ମଧ୍ୟରେ ଶିବ । ଜୀବ ଚାଳିତ ହୁଏ ଶିବଙ୍କର ନିର୍ଦ୍ଦେଶରେ । ମୋ ଭିତରର ଶିବ ମୋତେ ଯେମିତି କହୁଛି ମୁଁ ଠିକ୍ ସେଇଆ କରୁଛି ।''

ଯମ ବୁଝାଇଲା ଭଳି କହିଲେ- ''ସଂସାରରେ ପାପ-ପୁଣ୍ୟ ଭଲ ମନ୍ଦ ବୋଲି ଗୋଟାଏ କଥା ଅଛି । ମୁଁ ତମର ଭାଇ, ସହୋଦର ।''

ଯମୀ ଉତ୍ତର ଦେଲେ-''ମୁଁ ନାରୀ, ତମେ ପୁରୁଷ । ଏହା ହିଁ ସତ୍ୟ । ନାରୀ-ପୁରୁଷର ସମ୍ପର୍କ ବିଧାତା ସୃଷ୍ଟ । ସୃଜନ ହେଉଛି ଏମାନଙ୍କ ଧର୍ମ । ଏଥିରେ ପାପ କ'ଣ, ପୁଣ୍ୟ କ'ଣ ?''

ଯମ ଚକିତ ହେଲେ । ତାଙ୍କର ସର୍ବସୁଲକ୍ଷଣୀ ସକଳ ସଦ୍‌ଗୁଣଯୁକ୍ତା ଭଉଣୀ ଆଜି ଏ କ'ଣ କହୁଚି ? ତା'ର ମୁଣ୍ଡ ଠିକ୍ ଅଛି ତ ?ବୟସ୍କା କନ୍ୟାକୁ ପାତ୍ରସ୍ଥ ନ କରି

ଦୀର୍ଘକାଳ ନରଖିବା ନିମନ୍ତେ ଏଇଥିପାଇଁ ଶାସ୍ତ୍ରକାରମାନେ ନିର୍ଦ୍ଦେଶ ଦେଇଛନ୍ତି । ଯମୀ ସୁନ୍ଦରୀ-ଶିକ୍ଷିତା ପୁଣି ସକଳ ଶକ୍ତିର ଆଧାର ଦିନମଣିଙ୍କର କନ୍ୟା । ତା' ପାଇଁ ଉପଯୁକ୍ତ ପାତ୍ରର ଅଭାବ ହେବ ନାହିଁ । ଯଥା ଶୀଘ୍ର ତା'ର ବିବାହ ଦେବା ନିମନ୍ତେ ସେ ପିତାଙ୍କୁ ଅନୁରୋଧ କରିବେ ।

ଯମଙ୍କ ଆଡ଼କୁ ପାଦେ ଆଗେଇ ଆସି ଯମୀ କହିଲେ-''ସମୁଦ୍ରରୁ ଗଣ୍ଡୁଷେ ଜଳ ନେଇ ଗଲେ ସମୁଦ୍ର ଶୁଷ୍କ ହୋଇଯାଏ ନାହିଁ । ଶୁଣିଛି, ସକାମା ନାରୀର କାମନା ପୂରଣ ନ କଲେ ପୁରୁଷ ପୌରୁଷହୀନ ହୁଏ । ତମେ ମୋତେ ନିରାଶ କର ନାହିଁ ।''

ଦୁଇ ପାଦ ପଛେଇ ଯାଇ ଯମ ସତର୍କରେ ଥରେ ଚାରିଆଡ଼କୁ ନିରୀକ୍ଷଣ କଲେ । ଏ ଅଘଟଣ ଯଦି କାହା ଆଖିରେ ପଡ଼େ, ତେବେ ସେ କାହାରିକୁ ମୁହଁ ଦେଖାଇ ପାରିବେ ନାହିଁ । ପିତା ଯଦି ଏ କଥା ଯଦି ଜାଣନ୍ତି, ତେବେ କ'ଣ ହେବ ତାଙ୍କର ମନୋଭାବ ?

ଆତୁର କଣ୍ଠରେ ଯମୀ ପୁଣି କହୁଥିଲେ,''ତମେ ପରା ସର୍ବଶାସ୍ତ୍ର ପଣ୍ଡିତ । ଶୁଣି ନାହିଁ ଦୈତ୍ୟକୁଳରେ ନିଜର ସହୋଦରମାନଙ୍କସହ ଦୈହିକ ସମ୍ପର୍କର କଥା ? ମୁଁ ସକାମା ନାରୀ- ତମେ ସମର୍ଥ ପୁରୁଷ । ସମ୍ପର୍କରେ ଯଦି କିଛି ପାପ ହୁଏ, ତେବେ ତାହା ହେବ ମୋର । ମୋତେ ଯଦି ତମେ ନିରାଶ କରିବ, ତେବେ ଆତ୍ମହତ୍ୟା ଛଡ଼ା ମୋର ଅନ୍ୟ କୌଣସି ବାଟ ରହିବ ନାହିଁ ।''

ଯମ ପୁଣି ଥରେ ଯମୀକୁ ବୁଝାଇବାକୁ ଆରମ୍ଭ କଲେ । କହିଲେ-''ଆମେ ଦେବତା । ନିଜର କ୍ଷଣିକ ସୁଖ ପାଇଁ ଆଜି ଆମେ ଯାହା କରିଯିବା, କାଲି ସମଗ୍ର ସୃଷ୍ଟିରେ ସେଇ ହେବ ଆଦର୍ଶ । ଜୀବ ଯଥେଚ୍ଛାଚାରୀ ହୋଇଯିବେ । ସମାଜ ବୋଲି ଆଉ କିଛି ରହିବ ନାହିଁ । ଯୁଗେ ଯୁଗେ ମହତମାନେଯାହା କରନ୍ତି, ଅନ୍ୟମାନେ ସେଇଆ କରନ୍ତି । ତମେ ଆମର ବିଶ୍ରୁତ ପିତାଙ୍କ ବିଷୟ ଥରେ ଚିନ୍ତାକର । ଯେତେବେଳେ ସେ ଏକଥା ଜାଣିବେ, କ'ଣ ହେବ ତାଙ୍କର ମନୋଭାବ । ସମଗ୍ର ସୃଷ୍ଟି ଛିଃ ଛିଃ କରି ଉଠିବ । ପିତା ଲଜ୍ଜାରେ ମୁଣ୍ଡ ଟେକି ପାରିବେ ନାହିଁ । ଲୋକ ନିନ୍ଦାରୁ ଆତ୍ମ ରକ୍ଷା କରିବା ଆମ ପକ୍ଷରେ ମଧ୍ୟ ସମ୍ଭବ ହେବ ନାହିଁ । ମୁଁ ହାତ ଯୋଡୁଚି, ତମେ ଏ ଅଧର୍ମରୁ ନିରସ୍ତ ହୁଅ ।''

ଯମୀ ଏ ସବୁ କଥା ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ଏହାପରେ ସେ ଯମଙ୍କର ପାଦ ଧରି ତାଙ୍କର କାମନା ପୂରଣ କରିବା ନିମନ୍ତେ କରୁଣ କଣ୍ଠରେ ଅନୁରୋଧ ଜଣାଇଥିଲେ । ତାଙ୍କର ଗଣ୍ଡଦେଶ ଦେଇ ବହିଯାଉଥିଲା ଧାର ଧାର ଅଶ୍ରୁ ।

ଯମଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗି ଯାଇଥିଲା । ନାଃ-ଏ ନାରୀ ଉନ୍ମାଦ । ପାଗଳ କାହୁଁ ବୁଝିବ ଶାସ୍ତ୍ରର ମହିମା । ଯମଙ୍କ ମନରେ ପ୍ରଚଣ୍ଡ କ୍ରୋଧ ଦେଖାଦେଲା । ତାଙ୍କର ନୟନ ଆରକ୍ତ ହୋଇଉଠିଲା । ଅଧର କମ୍ପିବାକୁ ଲାଗିଲା । ଦନ୍ତ ଦ୍ୱାରା ନିଜର ଓଷ୍ଠକୁ ଦଂଶନ କରୁ କରୁ ଯମ ଉଦ୍ଦୀପ୍ତ କଣ୍ଠରେ କହିଲେ-''ବାରମ୍ବାର ଗୋଟିଏ କଥା ବୁଝାଇବା ସତ୍ତ୍ୱେ ତୋ'ର ସଦବୁଦ୍ଧି ଉଦିତ ହେଲା ନାହିଁ । ପାପୀୟସୀ, ଦେହର ଦାହ ପାଇଁ ତୁ କୁଳଶୀଳ ମାନ ମର୍ଯ୍ୟାଦା ସବୁକୁ ଜଳାଞ୍ଜଳି ଦେଉଛୁ । ତୋ'ର ମୁହଁ ଚାହିଁଲେ ପାପ ।ଏଇ ମୁହୂର୍ତ୍ତରେ ଯଦି ତୁ ଏଠୁ ଚାଲି ନ ଯାଉ, ତେବେ ତୋତେ ମୁଁ ଅଭିଶାପ ଦେବି । ପିତାଙ୍କ ନିକଟରେ ମଧ ତୋ'ର ଏଇ ଅପକୀର୍ତ୍ତିର କାହାଣୀ ବର୍ଣ୍ଣନା କରିବାକୁ ଭୁଲିବି ନାହିଁ ।''

ଅଭିଶାପ କଥା ଶୁଣି ଯମୀ ବାସ୍ତବ ଜଗତକୁ ଫେରିଲେ । ଅଭିଶାପର କରାମତି ସେ ଜାଣନ୍ତି । ଆନନ୍ଦଲୋକରୁ ଶୋକ-ଦୁଃଖପରିପୂର୍ଣ୍ଣ ଏକ ତିମିରିତ ଇଲାକାକୁ ନିର୍ବାସନ । ସେଠି କେବଳ ଦୁଃଖ ଆଉ ଯନ୍ତ୍ରଣା । ଅଶ୍ରୁ ଆଉ ବେଦନା, ନା-ବାବା । ସେ ଯନ୍ତ୍ରଣା ଅସହ୍ୟ । ସେ ବରଂ ଏଠୁ ଶୂନ୍ୟ ହାତରେ ବାହୁଡ଼ିଯିବେ ।

ଫେରି ଆସିଥିଲେ ଦିବାକର କନ୍ୟା ମୁଣ୍ଡନୁଆଇଁ ପରାଜୟର ବ୍ୟର୍ଥ ବେଦନା ବହନ କରି । ଜୀବନରେ ଏଭଳି ଦୁଃଖ ସେ କେବେ ପାଇ ନ ଥିଲେ । ଏ କଥା ଠିକ୍ ଯେ , ସେ ଅକଥାରେ ମନ ବଳାଇଲେ । ମାତ୍ର ଏଥିରେ ତାଙ୍କର ଅପରାଧ କ'ଣ ? ଯାହା ତାଙ୍କର ମନ ଚାହିଁଲା, ବିବେକ ଅନୁମୋଦନ କଲା, ତାହାହିଁ ସେ କାମନା କରିଥିଲେ । ଦୋଷ ଯଦି କାହାର ହୋଇଥାଏ, ତାହାହେଲେ ସେ ଦୋଷ ମନୋଭବ-କନ୍ଦର୍ପର । ଦେବ ଦେବ ତାର ଶରୀରଟାକୁ ସିନା ଧ୍ୱଂସ କରିଛନ୍ତି, ହେଲେ ସମଗ୍ର ବିଶ୍ୱରେ ଯେ ତାକୁ ବିଞ୍ଚି ଦେଇଛନ୍ତି-ମନସିଜ ରୂପରେ । ପ୍ରତ୍ୟେକ ମନରେ ତା'ର ଦୃଢ଼ ଆସ୍ଥାନ । ସେଇ ସିନା ତାକୁ ଅକଥା କହିବାକୁ ପ୍ରବର୍ତ୍ତାଇଲା । କାମ୍ୟ ବସ୍ତୁ ଯଦି ତାଙ୍କ ପାଇଁ ଅନୁପଲବ୍ଧ ହେଲା, ତେବେ ସେ ଦେବକନ୍ୟା ହୋଇ କି ଲାଭ ବା ପାଇଲେ ?

ରାତ୍ରିର ପ୍ରଥମ ପ୍ରହର ଅତିକ୍ରାନ୍ତ ହେବାକୁ ଯାଉଥିଲା । ପିତା ନିଶ୍ଚୟ ତାଙ୍କର ଏକୁକୀର୍ତ୍ତିର କାହାଣୀ ଜାଣିବାକୁ ପାଇଛନ୍ତି । ତାହାହିଁ ତ ସ୍ୱାଭାବିକ । ଦେବତାମାନେ ଯେ ଅନ୍ତର୍ଯ୍ୟାମୀ । ସେଇଥିପାଇଁ ଯମଙ୍କୁ ହଠାତ୍ ସଞ୍ଜିବନୀପୁରର ଅଧୀଶ୍ୱର କରି ପଠାଇ ଦିଆଯାଇଛି ।

ଗୋଟାଏ ଦୃଷ୍ଟିରୁ ଏ ବରଂ ଭଲ ହୋଇଛି । .ନ ହେଲେ ଯମଙ୍କ ଆଗରେ ମୁଣ୍ଡଟେକି ଠିଆହେବା ତାଙ୍କ ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ । ଯାହାସେ କରିଛନ୍ତି,

ନିଶ୍ଚିତ ଭାବରେ ଅନ୍ୟାୟ କରିଛନ୍ତି । ଯୁଗଯୁଗ ଧରି ସାରା ସଂସାର ତାଙ୍କର ନିନ୍ଦାଗାନ କରିବ । ମାତ୍ର ଅନ୍ତର୍ଯ୍ୟାମୀଙ୍କଣନ୍ତି, ଏଇଭଳି ଏକ ଗର୍ହିତ କାର୍ଯ୍ୟ କରିବା ପଛରେ ତାଙ୍କର ପ୍ରକୃତ ଭୂମିକା କ'ଣ ଥିଲା !

କର୍ମହୀନ ଅଳସ ଜୀବନ, ଭୋଗ ବିଳାସର ପ୍ରାଚୁର୍ଯ୍ୟ, ଆଉ ସୋମରସର ପ୍ରଭାବରେ ସେ ଯେ, ନୀତି-ଅନୀତି ପାପ-ପୁଣ୍ୟର ପାର୍ଥକ୍ୟକୁ ଭୁଲି ଯାଇଥିଲେ, ଏହା ସ୍ୱୀକାର କରିବାରେ ତାଙ୍କର ଲଜ୍ୟା ନାହିଁ ।

ଶୁଣାଅଛି, ଅନୁତାପରେ କୁଆଡ଼େ ସମସ୍ତ ପାପ ଦୂର ହୁଏ । ସେ ଯିବେ । ପିତାଙ୍କ ଚରଣରେ ପଡ଼ି ନିଜର ଅପରାଧ ସ୍ୱୀକାର କରିବେ । ଜନକଙ୍କର ସଦା କ୍ଷମାମୟ କରୁଣାରୁ ହାତପାତି ମାଗିନେବେ ବିନ୍ଦୁଟିଏ । ସେଇଥିରେ ତାଙ୍କର ସକଳ ପାପ କ୍ଷାଳିତ ହୋଇଯିବ ।

ଗତ ରାତ୍ରିରେ ସେ ଆଉ ଶୋଇ ପାରି ନ ଥିଲେ । ଗ୍ଳାନିକର ଅପରାଧର ବେଦନା ତାଙ୍କୁ ବିଚଳିତ କରିରଖୁଥିଲା । ଯେ ପର୍ଯ୍ୟନ୍ତ ସେ ଏହାର ପ୍ରାୟଶ୍ଚିତ୍ତ କରି ନାହାନ୍ତି, ସେ ପର୍ଯ୍ୟନ୍ତ ତାଙ୍କର ସ୍ୱସ୍ତି ନାହିଁ ।

ବକ୍ଷ ମଥିତ କରି ଦୀର୍ଘଶ୍ୱାସଟିଏ ବାହାରି ଆସିଲା । ଶିଳାପଟ୍ଟ ତ୍ୟାଗ କରି ଯମୀ ଏଥର ଉଠି ଠିଆହେଲେ ।

ପିତାଙ୍କ ନିକଟରେ ତାଙ୍କୁ ଯେକୌଣସିମତେ ପହଞ୍ଚିବାକୁ ହେବ ।



# କଳଙ୍କିତ ନାୟକ

ଧୂଳି ପଟଳ ଉଡ଼ାଇ କୁରୁମହିଷୀ ସତ୍ୟବତୀଙ୍କର ରଥ ଦୃଷ୍ଟିପଥରୁ ଅତୀତ ହୋଇ ଯାଇଥିଲା । ସେଇ ଆଡ଼କୁ ଅନାଇ ମହର୍ଷି କୃଷ୍ଣ ଦ୍ୱୈପାୟନ ଅନ୍ୟମନସ୍କ ଭାବରେ ବସି ରହିଥିଲେ । ଆଗରେ ସତ୍ୟବତୀଙ୍କର ପରିତ୍ୟକ୍ତ କୁଶାସନ । ତାହାରି ଉପରେ ବସି ସେ କିଛିକ୍ଷଣ ପୂର୍ବରୁ ଦ୍ୱୈପାୟନଙ୍କୁ ଧର୍ମର ବାଣୀ ଶୁଣାଉଥିଲେ ।

ଚିତ୍ରବୀର୍ଯ୍ୟଙ୍କ ମୃତ୍ୟୁପରେ ଚନ୍ଦ୍ରବଂଶର ବିଲୁପ୍ତି ଅବଶ୍ୟମ୍ଭାବୀ ହୋଇଉଠିଥିଲା । ଅନପତ୍ୟ ଅମ୍ବିକା ଏବଂ ଅମ୍ବାଳିକାଙ୍କ ଆଡ଼କୁ ଅନାଇ ସତ୍ୟବତୀ ଧୈର୍ଯ୍ୟଧରି ରହିପାରୁ ନ ଥିଲେ । ସ୍ୱାମୀ- ସନ୍ତାନହୀନା ରାଜୋଦ୍ୟାନର ଏଇ ପ୍ରସ୍ଫୁଟିତ ଗୋଲାପ ଦୁଇଟି ସତ୍ୟବତୀଙ୍କୁ ମନେ ହେଉଥିଲେ ଦୁଇଟି ପ୍ରାଣ ଘାତିକା ବିଷକନ୍ୟା ଭଳି । ବେଳେବେଳେ ସତ୍ୟବତୀଙ୍କର ମନେ ହେଉଥିଲା ଦୁଇ ଜଣଙ୍କୁ ସହମୃତା ହେବାକୁ ଅନୁମତି ଦେଇଥିଲେ ବୋଧହୁଏ ସେ ଭଲ କରିଥାନ୍ତେ । ଗନ୍ଧହୀନ ଦୁଇଟି କିଂଶୁକକୁ ନେଇ ସେ କେଉଁ ଦେବତାର ଉପଚାର କରିବେ ? ଐତିହାସିକ ଚନ୍ଦ୍ରବଂଶ ଲୋପ ପାଉ, ହୁଏତ ଏହା ହିଁ ବିଧାତାଙ୍କର ନିର୍ଦ୍ଦେଶ । ଯାଆନ୍ତୁ ସେମାନେ । ସ୍ୱପ୍ନଭଳି ଯେଉଁ କେତୋଟି ଦିନ ହସ୍ତିନାପୁରର ରାଜପ୍ରାସାଦରେ ଫୁଟିଉଠିଥିଲେ ତାହାରି ସ୍ମୃତିଚାରଣ କରୁ କରୁ ସତ୍ୟବତୀ ଅବଶିଷ୍ଟ ଦିନଗୁଡ଼ିକ କାଟିଦେବେ ।

ଆଉ ସତ୍ୟବତୀ ?

ଜୀବନରେ ସେ କ'ଣ ବା ପାଇଛନ୍ତି ? ଦାସ ରାଜାଙ୍କର ବଂଶଲତାର ଏକ ପୁଷ୍ପିତ ଅନୁକ୍ରମ ରୂପରେ ଅବଶ୍ୟ ସାମାଜିକ ସ୍ୱୀକୃତି ତାଙ୍କୁ ମିଳିଛି । ମାତ୍ର ସେଥିରେ ବିମୋହିତ ହୋଇ ଗୃହବଧୂ ରୂପରେ ବରଣ କରିନେବାକୁ ଏ ବିଶାଳ ଜମ୍ବୁଦ୍ୱୀପରେ କେଉଁ ଯୁବକ ବା ଆଗେଇ ଆସିଥିଲା ?

ନା- ସତ୍ୟବତୀ ମରିପାରିବେ ନାହିଁ । ସତ୍ୟବତୀମାନେ ଚିରକାଳ ଏମିତି ଅଯୁତ-ଦାୟିତ୍ୱର ବୋଝ ବୋହି ବୋହି ସଂସାର ପଥରେ ଚାଲିବା ନିମନ୍ତେ ଜନ୍ମ ନିଅନ୍ତି । ନିର୍ବାନ୍ଧବ, ସହାୟ ସମ୍ବଳହୀନ ଏକ ଦୟନୀୟ ଜୀବନ । କେଉଁ ପାପରେ ସ୍ରଷ୍ଟା ତାଙ୍କ ଉପରେ ଏହା ଲଦି ଦେଲେ କିଏ ଜାଣେ ?

ସୁଖାସନରେ ଉପବେଶନ କରି ମହର୍ଷି ଦ୍ୱୈପାୟନ ସତ୍ୟବତୀଙ୍କ କଥା ଭାବୁଥିଲେ । ପଶ୍ଚିମାକାଶର ରକ୍ତରଙ୍ଗା ମହୋତ୍ସବ ମଧ୍ୟରେ ସୂର୍ଯ୍ୟଦେବ ଅସ୍ତ ଯାଉଥିଲେ । ଦ୍ୟାବା ପୃଥିବୀ ନୀଡ଼ବାହୁଡ଼ା ପକ୍ଷୀ କୁଳର କାକଳିରେ ପରିପୂର୍ଣ୍ଣ ହୋଇଥିଲା । ଯମୁନା ନଦୀର ନୀଳ ଜଳାସ୍ତରଣ ଉପର ଦେଇ ଘୁମନ୍ତ ରାତ୍ରି ଶ୍ଳଥପଦ ସଞ୍ଚାରରେ ଭୂପୃଷ୍ଠକୁ ଓହ୍ଲାଇ ଆସୁଥିଲା ।

ସାୟାହ୍ନ କୃତ୍ୟ ସାରି ଆଶ୍ରମର ଅନ୍ତେବାସୀବୃନ୍ଦ କୁଟୀରକୁ ପ୍ରତ୍ୟାବର୍ତ୍ତନ କରିସାରିଥିଲେ । ଗୋଟିକ ପରେ ଗୋଟିଏ ଇଙ୍ଗୁଦୀ ତୈଳପୁଷ୍ଟ ପ୍ରଦୀପ ଜଳିଉଠୁଥିଲା । ଶଙ୍ଖ ଏବଂ ବେଦମନ୍ତ୍ରର ଉଚ୍ଚାରଣ ମଧ୍ୟ ଦେଇ ଏଥର ସନ୍ଧ୍ୟା ବନ୍ଦନା ଆରମ୍ଭ ହେବ ।

ମହର୍ଷି ବ୍ୟାସ କିଛିଦିନ ହେବ ଯମୁନାତୀରରେ ଏକ ନିର୍ଜ୍ଜନ ସ୍ଥାନରେ ଆଶ୍ରମ, ସ୍ଥାପନ କରି ରହିଯାଇଛନ୍ତି । ବହୁ ପୁରାଣ ଭାଣ୍ଡିର ବଟତଳେ କ୍ଷୁଦ୍ର କୁଟୀର ଧୀରେ ଧୀରେ ଅନ୍ଧକାର ଭିତରେ ଲୁଚିଯାଉଛି । ବଟବୃକ୍ଷ କୋଟରସ୍ଥ ଶୁକ ଚଞ୍ଚୁ ନିକ୍ଷିପ୍ତ ନିବାର ଧାନ୍ୟ ପ୍ରାଙ୍ଗଣର ଚତୁର୍ଦ୍ଦିଗରେ ଆକୀର୍ଣ୍ଣ । ସତ୍ୟବତୀଙ୍କର ଆଗମନରେ ଆଜି ଆଶ୍ରମର ଦିନଚର୍ଯ୍ୟା ଅବ୍ୟବସ୍ଥିତ ହୋଇପଡ଼ିଛି ।

ତାଙ୍କର ପ୍ରସ୍ତାବରେ ଦ୍ୱୈପାୟନ କିନ୍ତୁ ସ୍ତମ୍ଭୀଭୂତ ହୋଇଯାଇଥିଲେ । ସ୍ୱାମୀ-ପୁତ୍ରହରା ଏଇ ସଦ୍ୟଶୋକାଭିଭୂତା ରମଣୀ ଯେ ଇତିମଧ୍ୟରେ ଚିନ୍ତାର ଭାରସାମ୍ୟ ହରାଇଛନ୍ତି, ଏଥିରେ ଅନ୍ତତଃ ତାଙ୍କର ସନ୍ଦେହ ନ ଥିଲା । ସତ୍ୟବତୀ ବିସ୍ମୟ ବିମୂଢ଼ ବ୍ୟାସଙ୍କୁ କହୁଥିଲେ, ''ମାନବଜାତି ହୁଏତ ବିପଦଗ୍ରସ୍ତ ହୋଇ ତିଳତିଳ ମୃତ୍ୟୁବରଣ କରୁଛି । କିମ୍ବା କେବଳ ବଞ୍ଚି ରହିବାର ଛଳନା କରୁଛି । ଜୀବନର ମୁହାଁମୁହିଁ ହୋଇ ଏଠି କେହି ବଞ୍ଚୁ ନାହାନ୍ତି । ବ୍ୟକ୍ତିର ସମସ୍ତ ଧାଁ' ଦୌଡ଼ ସାରା ସଂଘର୍ଷ କେବଳ ଜନ୍ମ ହେବା ଆଉ ମରିଯିବାପାଇଁ, ଏକଥା ତ ତୁମେ ସ୍ୱୀକାର କରିବ ପୁତ୍ର ।''

ବ୍ୟାସ ନିଜର ଏଇ ସ୍ୱାର୍ଥସର୍ବସ୍ୱ ଜନ୍ମଦାତ୍ରୀଙ୍କ ଆଡ଼କୁ ଅନାଇ କହିଥିଲେ, ''ଜୀବନର ଯାହା ଯଥାର୍ଥ ଆନନ୍ଦ, ତାହା ମୁଁ ଯେମିତି ଜାଣେ-''

ବାଧା ଦେଇ ସତ୍ୟବତୀ କହିଲେ, ''ତୁମେ ତ ଏବେ ମଧ୍ୟ ବାଳକ । ଜୀବନର ଯଥାର୍ଥ ସ୍ୱରୂପ ଦୀର୍ଘଦିନର ଅନୁଭୂତି ମାଧ୍ୟମରେ ହିଁ ପ୍ରକଟିତ ହୋଇଥାଏ । ଏହି ବ୍ୟାଖ୍ୟା ଯେଉଁ ମୁନିରୁଷିମାନେ କରିଛନ୍ତି, ସେମାନେ ସମସ୍ତେ ବୟୋବୃଦ୍ଧ ।''

ଦ୍ୱୈପାୟନ ନୀରବରେ ଚିନ୍ତା କରିବାକୁ ଲାଗିଲେ । ସତ୍ୟବତୀ ପୁଣି କହିଲେ, ''ଜାଣ ପୁତ୍ର ! ମନୁଷ୍ୟର ସମସ୍ତ କର୍ମ, ଜୀବନର ସୁବିଧା ପାଇଁ ଅଭିପ୍ରେତ । ସୁବିଧାର ଚରମ ବିନ୍ଦୁ ହେଉଛି ସୁଖ, ପୁଣି ସୁଖର ପରାକାଷ୍ଠା ହେଉଛି ପ୍ରେମର

ଅନୁଭୂତି ଏବଂ ଏହାର ଚରମୋତ୍କର୍ଷ ହେଉଛି ଆନନ୍ଦ । ମୁଁ ତୁମକୁ ଯାହା କରିବାକୁ କହୁଛି, ସବୁ ଏଇ ଗୋଟିଏ ଜିନିଷପାଇଁ ।''

ବ୍ୟାସ ମନ ସ୍ଥିର କରିପାରୁ ନ ଥିଲେ । ରକ୍ଷକ ଯଦି ଭକ୍ଷକ ହୁଏ, ତାହାହେଲେ ସମାଜ ତିଷ୍ଠିବ କାହାକୁ ଧରି ? ଆଜି ସମାଜପତି ବ୍ୟାସ ଯଦି ସୁବିଧାବାଦକୁ ବଞ୍ଚିବାର ଏକମାତ୍ର ସାଧନ ବୋଲି ଗ୍ରହଣ କରି ନିଅନ୍ତି, ତେବେ କାଲିର ଇତିହାସ ତାଙ୍କୁ କ'ଣ କହିବ ? ସେ ମୁହଁ ଖୋଲିଲେ । ସତ୍ୟବତୀଙ୍କ ଆଡ଼କୁ ଅନାଇ କମ୍ପିତ କଣ୍ଠରେ କହିଲେ, ''ଇତିହାସର ମର୍ମନ୍ତୁଦ ଆର୍ତ୍ତନାଦ ଯେ ମୋ କର୍ଣ୍ଣପଟ୍ଟହରେ ନିନାଦିତ ହୋଇଉଠୁଛି ଜନନୀ !''

ଅଦ୍ଭୁତ ଏକ ସମ୍ମୋହର ଦୃଷ୍ଟିନେଇ ଦ୍ୱୈପାୟନଙ୍କ ଚକ୍ଷୁଗୋଳକ ଉପରେ ନିଜର ଦୃଷ୍ଟି ସ୍ଥିର ରଖି ସତ୍ୟବତୀ ଉତ୍ତର ଦେଲେ, ''ସଂସାରରେ ମୂର୍ଖମାନେ ହିଁ ଇତିହାସକୁ ସମ୍ମାନ ଜଣାଇ ଥାଆନ୍ତି । ବୀର୍ଯ୍ୟଦୀପ୍ତ ପୁରୁଷର ଦୃପ୍ତ ପଦକ୍ଷେପ ସୃଷ୍ଟି କରେ ଇତିହାସ । ଦ୍ୱୈପାୟନ ! ତୁମେ ଏତେ ଦୁର୍ବଳ ବୋଲି ମୁଁ ତ ଜାଣି ନ ଥିଲି ।''

ତଥାପି ସତ୍ୟବତୀଙ୍କର ପ୍ରସ୍ତାବର ଯଥାର୍ଥତା ସମ୍ପର୍କରେ ଦ୍ୱୈପାୟନ ସନ୍ଦୀହାନ । ସେ ଜାଣନ୍ତି ସାମାଜିକ ନୀତିନିୟମର ବହୁ ଦୂରରେ ସ୍ୱଚ୍ଛ ଦିବାଲୋକରେ ମଧ୍ୟଗଙ୍ଗାରେ, ପ୍ରଚଣ୍ଡ ରିରଂସା ମଧ୍ୟରୁ ଯେଉଁ ସନ୍ତାନର ଜନ୍ମ, ଆଉ ଯାହା ହେଉନା କାହିଁକି ନୀତିର କଥା ତାଙ୍କ ମୁହଁରେ ଶୋଭା ପାଏ ନାହିଁ । ଜନ୍ମ ଦେବାୟତ୍ତ । ସେଥିରେ ତ ତାଙ୍କର ହାତ ନ ଥିଲା । ମହାପଣ୍ଡିତ ପରାଶର ଯେ କେଉଁ କାରଣରୁ ପ୍ରବୃତ୍ତିର ସ୍ରୋତରେ ଦେହ ଭସାଇ ଦେଇଥିଲେ, ସେ କଥା କିଏ କହିବ ?

ଦ୍ୱୈପାୟନଙ୍କର ଜନ୍ମଲଗ୍ନ କିନ୍ତୁ କଳଙ୍କିତ ହୋଇଗଲା । ଜନ୍ମଦାତା ପିତା-ପୁରୁଷ-ଜନ୍ମ ମୂହୂର୍ତ୍ତରେ ଟିକିଏ ମାତ୍ର କୋଳରେ ଧରି ସେ ନିଜର ଦାୟିତ୍ୱ ଶେଷ କରି ଚାଲିଗଲେ । ଜନ୍ମଦାତ୍ରୀ ଜନନୀ- ସେ ମଧ୍ୟ ଜାହ୍ନବୀ ସ୍ରୋତ ମଧ୍ୟସ୍ଥ ଦ୍ୱୀପରେ ସଦ୍ୟଜାତ ସନ୍ତାନକୁ ତ୍ୟାଗ କରି ଯୋଜନଗନ୍ଧା ହୋଇ ଶାନ୍ତନୁଙ୍କର ଅନ୍ତଃପୁର ଉଜ୍ଜ୍ୱଳ କରିବାକୁ ଚାଲିଗଲେ । କିଏ ବୁଝିଲା ଅସହାୟ ଏକ ଶିଶୁପୁତ୍ରର ବେଦନାକୁ ?

ଦ୍ୱୈପାୟନଙ୍କର ପ୍ରବଞ୍ଚିତ ଶୈଶବ ବିଳପି ଉଠିଲା । ଆଜି ସେ-ଜମ୍ବୁଦ୍ୱୀପର ଜଣେ ଜ୍ଞାନୀ ଗୁଣୀ ପଣ୍ଡିତ । ଚାରିଆଡ଼େ ତାଙ୍କ ନାମର ଚର୍ଚ୍ଚା । କେହି କ'ଣ କେବେ ତାଙ୍କର ମନ ଗହନ ମଧ୍ୟକୁ ଅନାଇ ଦେଖିଛି, ଜନନୀର ସ୍ନେହ ଚୁମ୍ବନ ଟିକିଏ ପାଇଁ, ପିତାର ମଧୁର ତାଡ଼ନା ନିମନ୍ତେ ତାଙ୍କ ଭିତରର କ୍ରୀଡ଼ା ଚପଳ ଶିଶୁଟି କିଭଳି ସତୃଷ୍ଣ ହୋଇ ଏବେ ମଧ୍ୟ ପ୍ରତୀକ୍ଷାରତ । ନା-ପାରିବାରିକ ଜୀବନର ଯଥାର୍ଥ ସୁଖ ସ୍ରଷ୍ଟା ତାଙ୍କ ଲଲାଟରେ ଲେଖି ନାହାନ୍ତି ।

ଜୀବନ ତ ଗୋଟାଏ ଧରାବନ୍ଧା ଗତରେ ପଡ଼ିଯାଇଥିଲା । ଏଇ ସାଧନ, ଭଜନ, ମନନ ଚିନ୍ତନର ପରିଧି ମଧ୍ୟରେ ନିଜକୁ ଆବଦ୍ଧ ରଖି, ଦ୍ୱୈପାୟନ ଜୀବନର ସେଇ ଅନ୍ଧକାରପୂର୍ଣ୍ଣ ଦିଗଟିକୁ ଦୁଃସ୍ୱପ୍ନ ଭଳି ଭୁଲିଯିବାକୁ ଚେଷ୍ଟା କରୁଥିଲେ ଏବଂ ସେଥିରେ ପ୍ରାୟ ସଫଳକାମ ହୋଇଥିଲେ ମଧ୍ୟ । ମାତ୍ର ତା' ଭିତରେ ସତ୍ୟବତୀ ଆଉ ତାଙ୍କର ଏଇ ଜଘନ୍ୟ ପ୍ରସ୍ତାବ !

ଅପରାହ୍ଣରେ ଯେତେବେଳେ ଶୋକର ସାକାର ବିଗ୍ରହ ସତ୍ୟବତୀ ରଥରୁ ଓହ୍ଲାଇ, ତାଙ୍କର ଆଶ୍ରମରେ ପାଦ ଦେଇଥିଲେ, ସେତେବେଳେ ଦ୍ୱୈପାୟନ ବେଦନାରେ ବିଗଳିତ ହୋଇ ଉଠିଥିଲେ ହେଁ ନିଜକୁ ସମ୍ଭରଣ କରି, ତାଙ୍କର ଯଥୋଚିତ ସତ୍କାର କରିଥିଲେ । ନିଜକୁ ସ୍ୱାଭାବିକ କରିବା ନିମନ୍ତେ ସହସ୍ର ପ୍ରଯତ୍ନ ସତ୍ତ୍ୱେ, ତାଙ୍କ କଣ୍ଠରୁ ବାହାରି ପଡ଼ିଥିଲା, ଅଭିମାନଭରା ବାଣୀ ପଦଟିଏ-

''ଆଦେଶ କରନ୍ତୁ ରାଜମାତା !''

ସିଦ୍ଧ ତପସ୍ୱୀଜନର ଏଇ ସାଧାରଣ ବ୍ୟବହାର ସତ୍ୟବତୀଙ୍କୁ ସୁଦ୍ଧା ବିସ୍ମିତ କରିଥିଲା । ମା' ନୁହେଁ, ଜନନୀ ନୁହେଁ କେବଳ ରାଜମାତା !

ତଥାପି ସତ୍ୟବତୀ ନିଜକୁ ସଂଯତ ରଖି କହିଥିଲେ, ''ପୁତ୍ରର ଦର୍ଶନ ନିମନ୍ତେ ଆସିବା କ'ଣ ଏକ ଅପରାଧ ?''

ଦ୍ୱୈପାୟନ ଜାଣନ୍ତି, ଚିତ୍ରବୀର୍ଯ୍ୟ, ବିଚିତ୍ରବୀର୍ଯ୍ୟଙ୍କର ଅକାଳ ମୃତ୍ୟୁର କାହାଣୀ । ଅପରିମିତ ଭୋଗ, ଅସଂଯତ ଜୀବନ ଏ ଦୁଇ ଅକାଳପକ୍ୱ ରାଜକୁମାରଙ୍କର ଜୀବନର ସନ୍ଧ୍ୟାକୁ ତ୍ୱରାନ୍ୱିତ କରି ପକାଇଥିଲା । ଗଙ୍ଗାପୁତ୍ର ଭୀଷ୍ମ-ସେ ଅଭିଭାବକ ସିନା-ପିତା ତ ନୁହଁନ୍ତି । ଶାସନ ଏବଂ ଅନୁଶାସନ ମଧ୍ୟରେ ଥିବା ସୀମାରେଖାକୁ ରକ୍ଷା କରୁ କରୁ ଝଡ଼ିପଡ଼ିଲା ଦୁଇଟି ସୁକୁମାର କଳି । ଦ୍ୱୈପାୟନ ଲଜ୍ଜିତ ହୋଇ ରହିଲେ, ''ପୁତ୍ର ଆଜି ନନ୍ଦିତ ମାତାର ସାନ୍ନିଧ୍ୟରେ, ଅରଣ୍ୟବାସୀ ଏକ ସନ୍ନ୍ୟାସୀ ଆଜି ସମ୍ମାନିତ ହସ୍ତିନାର ରାଜଲକ୍ଷ୍ମୀଙ୍କର ଆଗମନରେ ।''

ସତ୍ୟବତୀ ଆଉ ନିଜକୁ ସମ୍ଭରଣ କରିପାରି ନ ଥିଲେ । ଆଶ୍ରମର ଗୋମୟଲିପ୍ତ ଚଟାଣରେ ନିଜକୁ ଲୋଟାଇଦେଇ କୁରରୀ ପରି ବିଳପି ଉଠିଥିଲେ । ଦ୍ୱୈପାୟନ କିଂକର୍ତ୍ତବ୍ୟବିମୂଢ଼ ହୋଇ କେବଳ ଅପେକ୍ଷା କରି ରହିଥିଲେ । ଶୋକର ପ୍ରଥମ ବେଗ ପ୍ରଶମିତ ହେବାପରେ ସତ୍ୟବତୀ କହିଥିଲେ, ''ହସ୍ତିନାର- ରାଜଲକ୍ଷ୍ମୀ ଆଜି ସର୍ବସ୍ୱ ହରାଇ ଏକ ଦୀନା ଭିକ୍ଷୁଣୀର ବେଶରେ ତା'ର ରାଜରାଜେଶ୍ୱର ପୁତ୍ରର ଦ୍ୱାରରେ ଭିକ୍ଷା ଝୁଲି ନେଇ ଦଣ୍ଡାୟମାନା- ତୁମେ ତ ସବୁ ଜାଣ ପୁତ୍ର ... ।''

ଦ୍ୱୈପାୟନ ସବୁ ନ ଜାଣିଲେ ମଧ୍ୟ କିଛି ଜାଣନ୍ତି । ସତ୍ୟବତୀ ଯେ କିଛି ଗୋଟାଏ ପ୍ରସ୍ତାବ ନେଇ ଆଜି ଏତେଦିନ ପରେ ମାତୃତ୍ୱର ଦାବୀରେ ତାଙ୍କ ନିକଟରେ ଉପସ୍ଥିତ, ଏକଥା ମଧ୍ୟ ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ । ହସ୍ତିନାର ଜଟିଳ ରାଜନୈତିକ ପରିବେଶ ମଧ୍ୟରେ ତାଙ୍କର ସ୍ଥାନ ଯେ ଠିକ୍ କେଉଁଠି ଏତିକି ମାତ୍ର ସେ ବୁଝିପାରୁ ନ ଥିଲେ । ନାରୀର ଚିର ଦୁର୍ଜ୍ଞେୟ ରହସ୍ୟାଚ୍ଛନ୍ନ ମନଗହନର ଗୋପନ କୋଠରୀର ସନ୍ଧାନ ତାଙ୍କୁ ଜଣା ନ ଥିଲା ।

ସତ୍ୟବତୀ କିନ୍ତୁ ତାଙ୍କୁ ବେଶୀ ସମୟ ସଂଶୟ ମଧ୍ୟରେ ରଖି ନ ଥିଲେ । ସେ କହିଲେ, ''ତୁମେ ଜାଣ, ହସ୍ତନାର ରାଜସିଂହାସନ ଆଜି ଶୂନ୍ୟ । ତମେ ଦେବ ତାକୁ ଏକ ସୁଯୋଗ୍ୟ ଉତ୍ତରାଧିକାରୀ । ଏହା ଜନନୀର ଆଦେଶ ।''

ଦ୍ୱୈପାୟନ ଚକିତ ହେଲେ । ସେ ସତ୍ୟବତୀଙ୍କର ପୁତ୍ର ସତ୍ୟ, ମାତ୍ର ହସ୍ତିନାର ରାଜବଂଶ ସହିତ ତାଙ୍କର କୌଣସି ରକ୍ତର ସମ୍ପର୍କ ନାହିଁ । ଏ ଦାୟିତ୍ୱର ତାତ୍ପର୍ଯ୍ୟ ବୁଝିବା ତାଙ୍କ ପକ୍ଷରେ ସହଜ ନ ଥିଲା । ପୁଣି ଭୀଷ୍ମ ଅଛନ୍ତି । ତାଙ୍କର ପ୍ରତିଜ୍ଞା ଅବଶ୍ୟ ଜଗତବିଦିତ । ମାତ୍ର ଏ ଯେ ଅକାଳ- ଏଥିରେ ନୀତି ନିୟମକୁ ଧରି କିଏ ବା ଚଳୁଛି ? ତେଣୁ ସେ କହିଲେ, ''କିନ୍ତୁ ଗଙ୍ଗାପୁତ୍ର ଭୀଷ୍ମ ?''

''ସେ ନିଜର ପ୍ରତିଜ୍ଞାରେ ଅଟଳ । ଚନ୍ଦ୍ରବଂଶର ରକ୍ଷାପାଇଁ ସେ ନିଜର ହୃତ୍‌ପିଣ୍ଡ ଦାନ କରିଦେଇପାରନ୍ତି । ମାତ୍ର ଉତ୍ତରାଧିକାରୀ... ନାଃ''... ସତ୍ୟବତୀ ମୁଣ୍ଡ ହଲାଉଥିଲେ ।

ଦ୍ୱୈପାୟନ କହିଲେ, ''ତେବେ ତ... ମୁଁ ନିରୂପାୟ । ଭବିତବ୍ୟକୁ ତା' ବାଟରେ ଛାଡ଼ି ଦିଅନ୍ତୁ ଜନନୀ !''

ସତ୍ୟବତୀ କହିଲେ, ''ନା, ମୁଁ ଏହାର ଶେଷ ଦେଖିବାକୁ ଚାହେଁ । ଚନ୍ଦ୍ରବଂଶକୁ ରକ୍ଷା କରିବା ନିମନ୍ତେ ମୁଁ ନ୍ୟାୟ-ଅନ୍ୟାୟ ପାପ-ପୁଣ୍ୟ ସବୁର ଆରପାରିକୁ ଚାଲିଯିବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହେବି ନାହିଁ । ମୁଁ ଚାହେଁ ତମର ସାହାଯ୍ୟ ।''

ଦ୍ୱୈପାୟନ ଜିଜ୍ଞାସୁ ଦୃଷ୍ଟିରେ ସତ୍ୟବତୀଙ୍କ ଆଡ଼କୁ ଅନାଇଲେ । ସତ୍ୟବତୀ ନିଷ୍କମ୍ପ ଅବିଚଳିତ କଣ୍ଠରେ ନିଜର ବକ୍ତବ୍ୟ ପ୍ରକାଶ କଲେ ।

ଆକାଶ ଛିଡ଼ିପଡ଼ିଲା ।

ସତ୍ୟବତୀ କହିଲେ, ''ତୁମେ ଆଉ ମୋତେ ପାପ-ପୁଣ୍ୟର ପାଠ ପଢ଼ାଇବାକୁ ଚେଷ୍ଟା କରନାହିଁ ପୁତ୍ର । କେଉଁଠି ଥିଲା, ମହର୍ଷି ପରାଶରଙ୍କର ପାପବୋଧ,

ଯେତେବେଳେ ସେ ସହସ୍ର ଚକ୍ଷୁ ସମ୍ମୁଖରେ ସ୍ପଷ୍ଟ ଦିବାଲୋକରେ ତ୍ରିଲୋକପାବିନୀ ଯମୁନା ବକ୍ଷରେ ମୋର କୁମାରୀ ଜୀବନର ଅବସାନ ଘଟାଇଥିଲେ ? କେଉଁଠି ଥିଲା ଦାସ ରାଜାଙ୍କର ଦୁଇ ପାଟରାଣୀ ନୀତୀ, କମଳାଙ୍କର ନୀତିବୋଧ, ଯେତେବେଳେ ସେମାନେ ସ୍ୱାମୀଙ୍କର ଛତସାରରେ ସନ୍ତାନ କାମନାରେ ମଳାପୁର, ଜ୍ୟୋଷ୍ଠାପୁର, ଭଗିନୀପତିର ଗୁରୁ ଗୌରବ ନ ମାନି ଯଥେଚ୍ଛାଚାରିଣୀ ହୋଇ ମୋର ଛନ୍ଦୁ ଦେଇଥିଲେ ? ମନେ ରଖିବ ପୁତ୍ର ! ମଣିଷ ପାଇଁ ପାପ-ପୁଣ୍ୟ ବୋଲି କିଛି ନାହିଁ । ସେ ସର୍ବଦା ତାହା ହିଁ କରେ, ଯାହା ତାକୁ କରିବାକୁ ପଡ଼ିଥାଏ ।

ଭାଣ୍ଡିର ବଟକୋଟରରୁ ହଠାତ୍ କୌଣସି ପକ୍ଷୀର ଚିତ୍କାର ଶୁଣାଗଲା । ଦ୍ୱୈପାୟନ ସହସା ବାସ୍ତବତା ମଧ୍ୟକୁ ଫେରିଆସି ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ । ଇତିମଧ୍ୟରେ ସନ୍ଧ୍ୟା ବନ୍ଦନା ଶେଷ ହୋଇଯାଇଥିଲା । ଏହାପରେ ଆଶ୍ରମର ଆଉ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ନ ଥାଏ । ବୟସ୍କମାନେ ଦୀପାଲୋକରେ କିଛିକ୍ଷଣ ଶାସ୍ତ୍ରାଲୋଚନା କରନ୍ତି । ତା'ପରେ ମଧ୍ୟଯାମରେ ବିଶ୍ୱଦେବ ବୈଶ୍ୱାନରଙ୍କୁ ବଳୀଭୋଜ ପ୍ରଦାନ କରି ପ୍ରତ୍ୟୁଷ ପର୍ଯ୍ୟନ୍ତ ବିଶ୍ରାମ ନିଅନ୍ତି । ଯେଉଁ ତରୁଣ ଶିଷ୍ୟଟି ଦ୍ୱୈପାୟନଙ୍କ ସନ୍ନିଧିରେ ଥାଏ, ସେ କାହିଁକି ଦେଖାଯାଉନାହିଁ । ହୁଏତ ତାଙ୍କର ଅବସ୍ଥା ଦେଖି ଫେରି ଯାଇଛି । ଅଥଚ ଦ୍ୱୈପାୟନଙ୍କର ସାୟନ୍ତନ କ୍ରିୟା ଏପର୍ଯ୍ୟନ୍ତ ଶେଷ ହୋଇନାହିଁ । ତାଙ୍କ ମନରେ ନିଆଁ ଜଳାଇଛି ସତ୍ୟବତୀଙ୍କର ଗୋଟିଏ ବାକ୍ୟ "ସଂସାରରେ ପାପ-ପୁଣ୍ୟ ବୋଲି କିଛି ନାହିଁ ।"

ସତରେ କ'ଣ ନାହିଁ ? ତେବେ ସମାଜ ବୋଲି ଯେଉଁ ସଂସ୍ଥା, ସେ ଠିଆ ହୋଇଛି କାହାର ଆଶ୍ରୟରେ ? ପଶୁ ସମାଜ ଆଉ ମଣିଷ ସମାଜ ମଧ୍ୟରେ ପାର୍ଥକ୍ୟ ତେବେ କେଉଁଠି ? ଦ୍ୱୈପାୟନ ବାରମ୍ବାର ଏହିସବୁ ଅସମାହିତ ପ୍ରଶ୍ନର ଉତ୍ତର ନିଜକୁ ପଚାରୁଥିଲେ । ଆଉ ଧୀରେ ଧୀରେ ଅଶାନ୍ତ ଏକ ଅନନ୍ତ ଗର୍ଭମଧ୍ୟରେ ବୁଡ଼ି ଯାଉଥିଲେ । ସତ୍ୟବତୀ ଚାହାନ୍ତି ସେ ହେବେ ଏକ ପୂର୍ଣ୍ଣ ପୁରୁଷ - ଏକ ବ୍ୟତିକ୍ରମ । ଜନଅରଣ୍ୟ ମଧ୍ୟରେ ସେ ଯେମିତି ସହସା ବାରି ହୋଇ ପଡ଼ିବେ । ଚିରାଚରିତ ପଥରେ ନ ଚାଲି ନିଜ ଭିତରୁ ବାହାର କରିବେ ନିଜସ୍ୱ ଏକ ପଥ । ମାତ୍ର ଦ୍ୱୈପାୟନ ଜାଣନ୍ତି, ଶେଷରେ ଏଭଳି ପଥ ରୂପାନ୍ତରିତ ହୁଏ ଏକ ଦୁର୍ଭେଦ୍ୟ ଜାଲରେ, ଯେଉଁଥିରେ ବ୍ୟକ୍ତି ଆବଦ୍ଧ ହୋଇଯାଏ । ଆମୃତ୍ୟୁ ସେଥିରୁ ଆଉ ତାକୁ ମୁକ୍ତି ମିଳେ ନାହିଁ । ସତ୍ୟବତୀଙ୍କର ଅଦ୍ଭୁତ ପ୍ରସ୍ତାବ ଯିଏ ଶୁଣିବ, କାନରେ ହାତ ଦେବ । ସେ ନିଜେ କ'ଣ ଚକିତ ହୋଇ ନିଜ କାନର ଛିଦ୍ରକୁବନ୍ଦ କରିବାକୁ ଚେଷ୍ଟା କରି ନ ଥିଲେ । ବୁଝାଇ ନ ଥିଲେ ନିଜକୁ ଯେ ଏସବୁ ଯାହା କୁହାଯାଉଛି, ସେ ତାକୁ ଆଦୌ ଶୁଣୁନାହାନ୍ତି । ଯାହା

ହେଉଛି ସେ ନିଜେ ତହିଁରେ ସାମିଲ୍ ନୁହନ୍ତି । ଏହା ଅପେକ୍ଷା ବରଂ ତହ ତହ ନିଆଁରେ ନିର୍ବିକାର ଭାବରେ ଠିଆ ହେବା କେତେ ସହଜ ! ମାତ୍ର କାନର ଛିଦ୍ର ବନ୍ଦ କରିଦେଲେ କ'ଣ ସେଇ ନିଷ୍ଠୁର ନିର୍ଦ୍ଦେଶକୁ ଏଡାଇ ହେଇ ହେବ ? ସତେ-ଯେମିତି ଅନ୍ତରର ନିଭୃତତମ ପ୍ରଦେଶରୁ ରବ ଉଠୁଛି, ''ଶୁଣୁଚୁ, ଆମେସବୁ ଶୁଣୁଚୁ, ଆମେ ସବୁ ଦେଖୁଚୁ... ।''

ଦ୍ୱୈପାୟନ ନିଜକୁ ପ୍ରକୃତିସ୍ଥ କରିବାକୁ ଚେଷ୍ଟା କଲେ । ଆଜି ସାୟାହ୍ନରୁ ତାଙ୍କର ମନ ବିଚଳିତ ହୋଇଛି । ତାକୁ ଆଉ ସେ ସ୍ଥିର କରିପାରୁ ନାହାନ୍ତି । ରାତ୍ରିର ଏ କେଉଁ ପ୍ରହର କେଜାଣି ? ସେ ମନେ ମନେ ନିଜର ପ୍ରିୟ ଶିଷ୍ୟ ଭାରିତକୁ ଖୋଜୁଥିଲେ । ହୁଏ ତା' ସହିତ କିଛି ସମୟ କଥାବାର୍ତ୍ତା କରିଥିଲେ, ମନଟା କିଟିଏ ବଦଳି ଯାଇଥାନ୍ତା ।

ମାତ୍ର ଭାରିତ କେଉଁଠି ଦେଖା ପଡୁ ନ ଥିଲା । ହୁଏତ ସେ ନିଜ କୁଟୀରରେ ବିଶ୍ରାମ ନେଉଥିବ । ସେ ବା କ'ଣ କରିପାରିବ ?

ସତ୍ୟବତୀ କହିଲେ, ''ମୁଁ ତୁମକୁ ଯାହା କହିଲି, ତାହା ଛଡ଼ା ତ ଅନ୍ୟ କୌଣସି ଉପାୟ ନାହିଁ ପୁତ୍ର । ମନେରଖ, ଚନ୍ଦ୍ରବଂଶର ପତନ ରୋକିବାକୁ ମୁଁ ସଂକଳ୍ପବଦ୍ଧ । ତମେ ମୋତେ ସାହାଯ୍ୟ କରିବ ବୋଲି ଶପଥ କରିଛ ।''

ଶପଥ କରିଛନ୍ତି ସତରେ । ଧୂଳିଲୁଣ୍ଠିତା ଆଲୁଳାୟିତ କୁନ୍ତଳା ରୋରୁଦ୍ୟମାନା ହସ୍ତିନା ରାଜମହିଷୀଙ୍କର ସେହି ଅସହାୟ ରୂପ, ତାଙ୍କୁ ଅତ୍ୟନ୍ତ ମୂହ୍ୟମାନ କରିପକାଇଥିଲା । ତାଙ୍କର ସେଇ ଦୁର୍ବଳତାର ପୂର୍ଣ୍ଣ ସଦୁପଯୋଗ କରିଥିଲେ ହସ୍ତିନା ରାଜମହିଷୀ ସତ୍ୟବତୀ । ସେ ତାଙ୍କର ସହାୟତାପାଇଁ ଶପଥ କରାଇ ନେଇଥିଲେ । କେମିତି ବା ଜାଣନ୍ତେ ସେ ସତ୍ୟବତୀଙ୍କର ମନତଳେ ଏଭଳି ଏକ କୁତ୍ସିତ ଯୋଜନା ଲୁଚି ରହିଛି ? କେମିତି ବା ବୁଝନ୍ତେ ସେ ଜନନୀ ନାମଧାରୀ ଏଇ ନାରୀଟି ତାଙ୍କୁ ଜଗତ୍ ସମ୍ମୁଖରେ ହେୟ ପ୍ରତିପନ୍ନ କରାଇବା ନିମନ୍ତେ ବଦ୍ଧପରିକର ?

ସତ୍ୟବତୀ ବ୍ୟାସଙ୍କୁ ବୁଝାଇବା ଭଳି ସ୍ୱରରେ କହିଥିଲେ, ''ମୁଁ ଜାଣେ ତମେ ଜୀବନର ଅନେକ ରୂପ ସହିତ ପରିଚିତ । ଜୀବନକୁ ତମେ ବୁଝ । ମାତ୍ର ତଥାପି ମୁଁ କହିବି ତମର ଏ ସମ୍ପର୍କରେ କୌଣସି ଅନୁଭବ ନାହିଁ । ତମ ପାଖରେ ସାହସ ଅଛି, ସେବା ଅଛି, ଜ୍ଞାନ ଅଛି, ଆଉ ଅଛି ତ୍ୟାଗ । ମାତ୍ର କେବଳ ଗୋଟିଏ ଶକ୍ତିର ଅଭାବରେ ଏ ସମସ୍ତ ବ୍ୟର୍ଥ ହୋଇଯାଉଛି । ସେଇଟି ହେଉଛି ଚାତୁର୍ଯ୍ୟ । ମନେରଖିବ ପୁତ୍ର ! ଏ ସଂସାରରେ ଚତୁରମାନେ ହିଁ କେବଳ ଇତିହାସର ନାୟକ ହୋଇ ବସନ୍ତି ।''

ସତ୍ୟବତୀଙ୍କର ହୀନ ଯୋଜନାରେ ସାମିଲ ହୋଇଗଲେ ସେ କିପରି ଏ ବିଶ୍ୱ ସଂସାରର ଚତୁରତମ ବ୍ୟକ୍ତି ହୋଇଉଠିବେ, ସେ କଥା ଦ୍ୱୈପାୟନ ବୁଝିପାରୁ ନ ଥିଲେ । ନିଜେ ଏକ କଳଙ୍କିତ ଜୀବନର ନାୟକ ହୋଇ ଇତିହାସର କେନ୍ଦ୍ର ବିନ୍ଦୁରେ ନିଜର ସ୍ଥିତି ଅନ୍ୱେଷଣ କରିବା ତାଙ୍କୁ କୌଣସି ଦିଗରୁ ସ୍ପୃହଣୀୟ ମନେ ହେଉ ନ ଥିଲା ।

ସତ୍ୟବତୀ ଘୋର ସଂସାରୀ । ପରିବାରର ପ୍ରୟୋଜନ ହିଁ ତାଙ୍କ ସମ୍ମୁଖରେ ସବୁଠାରୁ ବଡ଼ । ତାହାରି ଯଜ୍ଞ ବେଦୀରେ ସେ ନିଜର ଶିକ୍ଷାଦୀକ୍ଷା ସବୁକୁ ବଳୀ ଚଢ଼ାଇ ଦେବା ନିମନ୍ତେ ପଶ୍ଚାଦ୍‌ପଦ ନୁହନ୍ତି । ଏହା ହିଁ ହେଉଛି ତାଙ୍କର ଚତୁରତା । ଜଣେ ସଂସାରୀ ବ୍ୟକ୍ତିର ଚତୁରତା । ହେଲେ ଜଣେ ସଂସାରତ୍ୟାଗୀ ସନ୍ନ୍ୟାସୀର ଜୀବନରେ ଏହାର ମୂଲ୍ୟ ଯେ କାଣି କଉଡ଼ିଟିଏ ମଧ୍ୟ ନୁହେଁ ଏକଥା ସେ ବୁଝିବେ କାହିଁକି ?

ଯେଉଁ ସଂସାରର ପ୍ରୟୋଜନରେ ସେ ଆଜି ଅସମୟରେ ଦ୍ୱୈପାୟନଙ୍କ ନିକଟକୁ ଧାଇଁ ଆସିଛନ୍ତି, ସେ ସଂସାର ସହିତ ତାଙ୍କର ପରିଚୟ ବା କେତେ ? ଅନ୍ତତଃ ଜନନୀ ହିସାବରେ ତାଙ୍କର ଯେ ଏ ଦାୟିତ୍ୱଟି ପାଳନ କରିବା ପ୍ରଥମ କର୍ତ୍ତବ୍ୟ, ଏହା ସତ୍ୟବତୀ ଭୁଲିଗଲେ କିପରି ? ଶିଶୁର ଠୁକୁ ଠୁକୁ ଚାଲି, ଖିଲି ଖିଲି ହସ, କଇଁକଇଁ କାନ୍ଦ, ସତ୍ୟବତୀ ସିନା ନିଜର ସନ୍ତାନମାନଙ୍କ ଭିତରେ ପାଇ ପରିପୂର୍ଣ୍ଣ ଏକ ସଂସାରର କେନ୍ଦ୍ରବିନ୍ଦୁ ହୋଇଗଲେ । ମାତ୍ର ଦ୍ୱୈପାୟନ ? କେଉଁ ପରିବାରର ନିର୍ଜନତା ତାଙ୍କର ବାଲ୍ୟଲୀଳାର କଳକୋଳାହଳରେ ଭଙ୍ଗ ହେଉଥିଲା ? ରୋରୁଦ୍ୟମାନ ଶିଶୁକୁ ଭୁଲାଇବା ନିମନ୍ତେ କେଉଁ ଜନନୀ ତାଙ୍କୁ ଆକାଶର ଚାନ୍ଦ ଦେଖାଇ ଦେଉଥିଲା ? ସେ କ'ଣ ସତ୍ୟବତୀ ? ନା...

ଜନ୍ମାବଧି ସେ ଦେଖିଛନ୍ତି, ଗଙ୍ଗାଦ୍ୱୀପର ସେଇ ଭୟାବହ ପ୍ରକୃତିକୁ । ଝଡ଼ର ପ୍ରଚଣ୍ଡ ତାଣ୍ଡବରେ ମଥା ହଲାଇ ଯେତେବେଳେ ଦ୍ୱୀପସ୍ଥ ବନସ୍ପତିବୃନ୍ଦ, କାପାଳିକ ଭଳି ନାଚୁଥିଲେ, ସେତେବେଳେ ଶିଶୁ ମନ ତାଙ୍କର ବ୍ୟାକୁଳ ହୋଇ ଖୋଜୁଥିଲା, ଏକ ନିରାପଦ ଉଷ୍ମ ଅଞ୍ଚଳର ଆଶ୍ରୟ । ଶ୍ରାବଣ ଆକାଶର ଅଝରଝରା ଧାରା ଯେତେବେଳେ ବଜ୍ର ବିଦ୍ୟୁତ୍ ସହଯୋଗରେ ଭୂପୃଷ୍ଠକୁ ଓହ୍ଲାଇ ଆସୁଥିଲା, ସେତେବେଳେ ବାଳକଟିଏ ଅସହାୟ ଭାବରେ ଖୋଜି ବୁଲୁଥିଲା କାହାର ଉଷୁମ ନରମ ଛାତି, ଯେଉଁଠି ମୁହଁ ଗୁଞ୍ଜି ସେ ପୃଥିବୀର ସମସ୍ତ ବିଭୀଷିକାକୁ ଭୁଲିଯାଇ ପାରିବ । କେତେ ଛୋଟ ଜିନିଷ । ମାତ୍ର ସେତିକି ବା ସେ ପାଇ ପାରିଲେ କେଉଁଠି ? ଅଥବା ସଂସାରରେ ଏହା ହିଁ ହୁଏ । ଛୁଞ୍ଚିଟିଏ ହଜିଗଲେ, ତାକୁ ଖୋଜି ପାଇବା କଷ୍ଟକର । ମାତ୍ର ହାତୀ ମିଳିଯାଏ ଅନାୟାସରେ ।

ସତ୍ୟବତୀ ଚାହାନ୍ତି ବଂଶରକ୍ଷା । କେଉଁ ଅନାଦିକାଳରୁ ଗଡ଼ି ଆସୁଛି, ଚନ୍ଦ୍ରବଂଶର ଯେଉଁ ଅବିଚ୍ଛିନ୍ନ ପବିତ୍ର ଧାରା, ନିଜର ବର୍ତ୍ତମାନରେ ସେ ତାକୁ କେବେହେଲେ ବିଶୁଷ୍କ ହେବାକୁ ଦେବେ ନାହିଁ । କ୍ଷେତ୍ର ତାଙ୍କର ପ୍ରସ୍ତୁତ ହୋଇ ରହିଛି । ପ୍ରୟୋଜନ ତାଙ୍କର କେବଳ କିଛି ସତେଜ ମଞ୍ଜିର । ଦ୍ୱୈପାୟନଙ୍କ ନିକଟରେ ଶେଷରେ ସେ ତାହାର ସନ୍ଧାନ ପାଇପାରିଛନ୍ତି ।

ସତ୍ୟବତୀ ତାଙ୍କୁ ବୁଝାଇଥିଲେ, ''କ୍ଷେତ୍ରଜ ସନ୍ତାନ ସଂସାରରେ କିଛି ନୂଆ କଥା ନୁହେଁ । ମୁଁ ତ ତୁମକୁ କହିଛି, ମୁଁ ନିଜେ ଏହିଭଳି ପ୍ରକ୍ରିୟାର ସୃଷ୍ଟି । ଇତିହାସରେ ସୁଦ୍ଧା ଏହାର ଅଜସ୍ର ନଜିର ରହିଛି । ତୁମେ ସ୍ୱୟଂ ସର୍ବଶାସ୍ତ୍ରବିତ୍ । ଏ କଥା ମୁଁ ତୁମକୁ କ'ଣ ବୁଝାଇବି ?''

ଦ୍ୱୈପାୟନ କହିଲେ, ''ସନ୍ତାନ ଜନ୍ମ ନେଇ କଥା ଯେତେବେଳେ, ନୀତିସମ୍ମତ ଉପାୟରେ ତାହା କରାଯାଇପାରେ ।''

ସତ୍ୟବତୀ ଜିଜ୍ଞାସୁ ଦୃଷ୍ଟିରେ ଦ୍ୱୈପାୟନଙ୍କ ଆଡ଼କୁ ଅନାଇଲେ । ଦ୍ୱୈପାୟନ ଉତ୍ତର ଦେଲେ, ''ସୂର୍ଯ୍ୟବଂଶର ମହାରାଜ ଦଶରଥ ଅପୁତ୍ରିକ ଥିଲେ । ଋଷ୍ୟଶୃଙ୍ଗଙ୍କ ସହାୟତାରେ ସେ ଲାଭ କରିଥିଲେ ଚାରିପୁତ୍ର । ମିଥିଳାର ରାଜା ଜନକ ଯଜ୍ଞ କରିବାଦ୍ୱାରା ହିଁ ତ ଜାନକୀଙ୍କୁ ପାଇଥିଲେ । ଆପଣ ଯଦି ଅନୁମତି ଦିଅନ୍ତି, ତେବେ ମୁଁ ନିଜେ ପୁରୋହିତ ହୋଇ ଚନ୍ଦ୍ରବଂଶର ରକ୍ଷା ନିମନ୍ତେ ଯଜ୍ଞର ଆୟୋଜନ କରିବି ।''

ଅଧୈର୍ଯ୍ୟ ହୋଇ ସତ୍ୟବତୀ କହିଲେ, ''ସେକଥା ମୁଁ ଜାଣେ ପୁତ୍ର । ମାତ୍ର ତାହା ସମୟ ସାପେକ୍ଷ । ବିନାଶଶୀଳ ଏଇ ଶରୀର ନେଇ ମୁଁ ଆଉ ବେଶୀ ବିଳମ୍ବ କରିବାକୁ ପ୍ରସ୍ତୁତ ନୁହେଁ ।''

ଦ୍ୱୈପାୟନଙ୍କର ଦ୍ୱିଧାଭାବ ତଥାପି ଦୂର ହେଉ ନ ଥିଲା । ଯେକୌଣସି ଉପାୟରେ ସେ ଏଇ ବ୍ୟୂହ ମଧ୍ୟରୁ ଆତ୍ମରକ୍ଷା କରି ବାହାରକୁ ଚାଲି ଆସିବା ନିମନ୍ତେ ଉଦ୍ୟମ ଚଳାଇଥିଲେ । ସତ୍ୟବତୀ କିନ୍ତୁ ନିପୁଣ ସଂସାରୀର ଅଭିଜ୍ଞତା ନେଇ ତାଙ୍କର ଉଦ୍ୟମକୁ ଗୋଟିକ ପରେ ଗୋଟିଏ ପଣ୍ଡ କରିଦେବାରେ ଲାଗିଥିଲେ ।

''ଶୁଣ ପୁତ୍ର । 'ପୁତ୍' ନାମକ ନରକରୁ ତ୍ରାଣ କରିଥାଏ ବୋଲି ପୁରୁଷର ନାମ ପୁତ୍ର । ଚନ୍ଦ୍ରବଂଶ ପ୍ରତି ତୁମର ଦାୟିତ୍ୱକୁ ତୁମେ ଅସ୍ୱୀକାର କରିପାରନା । କାରଣ ତମ ଧମନୀରେ ବହୁଛି, ଏକ ସତ୍ୟବତୀର ରକ୍ତ । ତମେ ଅସ୍ୱୀକାର କଲେ ମଧ୍ୟ ଏହା ଦିବାଲୋକ ଭଳି ସ୍ପଷ୍ଟ । ତମରି ସାହାଯ୍ୟରେ ତେଣୁ ମୁଁ ଚନ୍ଦ୍ରବଂଶର ପିତୃପୁରୁଷମାନଙ୍କୁ ଜଳାଞ୍ଜଳି ଦେବାର ବ୍ୟବସ୍ଥା ବଜାୟ ରଖିବାକୁ ଚାହେଁ । ଅମ୍ବିକା ଏବଂ ଅମ୍ବାଳିକାଙ୍କଠାରୁ ତୁମକୁ ସନ୍ତାନ ଉତ୍ପାଦନ କରିବାକୁ ହିଁ ହେବ'' - ସତ୍ୟବତୀ କହିଲେ ।

ଦ୍ୱୈପାୟନ ଉତ୍ତର ଦେଲେ, "ସେମାନେ ମୋର ଭ୍ରାତୃବଧୂ, କନିଷ୍ଠା, କନ୍ୟାସ୍ଥାନୀୟା ।"

"କନ୍ୟାସ୍ଥାନୀୟା, କିନ୍ତୁ କନ୍ୟା ନୁହଁନ୍ତି । ମୂର୍ଖ ! ଭାବନାହିଁ ଯେ, ତମେ ହିଁ ଏ ଦେଶର ସକଳ ଶାସ୍ତ୍ର ଅଧ୍ୟୟନ କରି ବସିଛ । "ନିୟୋଗ ପ୍ରଥା' ମୋର ସୃଷ୍ଟ ନୁହେଁ । ତମରି ଭଳି ଶାସ୍ତ୍ରକାର, ସମାଜପତିମାନେ ଏହିଭଳି ବିଧାନ ଦେଇ ଯାଇଛନ୍ତି । ଅପୁତ୍ରିକ ଅବସ୍ଥାରେ ସ୍ୱାମୀର ମୃତ୍ୟୁ ହେଲେ ତାହାର ବିଧବା ପତ୍ନୀ, ଯେ କୌଣସି ସକ୍ଷମ ଆତ୍ମୀୟ ପୁରୁଷଦ୍ୱାରା ନିଜ କ୍ଷେତ୍ରରେ ସନ୍ତାନ ଉତ୍ପାଦନ କରାଇପାରେ । ଏହା ଶାସ୍ତ୍ରର ଅମୋଘ ବିଧାନ ।" ସତ୍ୟବତୀଙ୍କ ଜ୍ୱଳନ୍ତ ଚକ୍ଷୁ ଗୋଲକ ସତେ ଯେମିତି କୋଟର ମଧ୍ୟରୁ ବାହାରକୁ ଡେଇଁପଡ଼ିଲା ଭଳି ବୋଧ ହେଉଥିଲା ।

ଦ୍ୱୈପାୟନ ଅତ୍ୟନ୍ତ ବିଚଳିତ ବୋଧ କରୁଥିଲେ । ମୁକ୍ତିର ଆଉ କୌଣସି ମାର୍ଗ ତାଙ୍କ ଦୃଷ୍ଟିପଥକୁ ଆସୁ ନ ଥିଲା । ଅଜଗରର ସମ୍ମୋହନ ଶକ୍ତି ନେଇ ସତ୍ୟବତୀ ସତେ ଯେମିତି ତାଙ୍କୁ ଧୀରେ ଧୀରେ ଗ୍ରାସ କରୁଥିଲେ । ତଥାପି ସେ ଦୁର୍ବଳ ସ୍ୱରରେ କହିଲେ, "କିନ୍ତୁ ଅମ୍ବିକା ଏବଂ ଅମ୍ବାଳିକା..."

ସତ୍ୟବତୀ କହିଲେ, "ସେମାନଙ୍କୁ ବୁଝାଇବାର ଦାୟିତ୍ୱ ସଂପୂର୍ଣ୍ଣଭାବରେ ମୋର । ଅନ୍ତତଃ ଚନ୍ଦ୍ରବଂଶକୁ ବିଲୁପ୍ତିର ମୁଖରୁ ରକ୍ଷା କରିବା ଦିଗରେ ସେମାନଙ୍କର ତ ଏକ ନୈତିକ ଦାୟିତ୍ୱ ରହିଛି । ସେମାନେ ସହଯୋଗ ନ କରିବେ କାହିଁକି ?

ଦ୍ୱୈପାୟନ ବୁଝାଇବା ଭଳି ସ୍ୱରରେ କହିଲେ, "ଏହାର ଆଉ ଗୋଟିଏ ଦିଗ ବିଷୟରେ ଆପଣ ବୋଧ ହୁଏ ଚିନ୍ତା କରି ନାହାନ୍ତି । ଏଥିରେ ଯେଉଁ ପାପ... । ହଠାତ୍ ସତ୍ୟବତୀ ହସିଉଠିଲେ । କହିଲେ ପାପ ପୁଣ୍ୟର କଥା ତମେ ମୋତେ ଆଉ କୁହ ନାହିଁ ପୁତ୍ର । ଚନ୍ଦ୍ରବଂଶକୁ ରକ୍ଷା କରିବା ନିମନ୍ତେ ମୋତେ ଯଦି ନର୍କକୁ ଯିବାକୁ ପଡ଼େ, ସେଥିପାଇଁ ସୁଦ୍ଧା ମୁଁ ପ୍ରସ୍ତୁତ । ଏଥିପାଇଁ ମୁଁ ମହାରାଜ ଶାନ୍ତନୁଙ୍କଠାରେ ପ୍ରତିଜ୍ଞାବଦ୍ଧ । ଭୀଷ୍ମ କାପୁରୁଷ, ଭୀରୁ । ଶପଥର ଦୋହି ନେଇ ସେ ମୋ ସହିତ ସହଯୋଗ କରିବାକୁ ନାସ୍ତି କରିଦେଲା । ରକ୍ତର ଦାବୀ ନେଇ ତେଣୁ ମୋତେ ତୁମ ନିକଟକୁ ଆସିବାକୁ ପଡ଼ିଲା । ମୁଁ ତୁମକୁ କଥା ଦେଉଛି ଏଥିରେ ଅନ୍ୟାୟ ଯଦି କିଛି ଥାଏ, ପାପ ଯଦି ହୁଏ, ତେବେ ସେ ହେବ, ଏକାନ୍ତଭାବେ ମୋର । ସାକ୍ଷୀ ରହିଲେ ଚନ୍ଦ୍ର, ସୂର୍ଯ୍ୟ ଓ ଦଶଦିଗପାଳ ।"

ଦ୍ୱୈପାୟନ ସତ୍ୟବତୀଙ୍କର ଉଦ୍‌ଭ୍ରାନ୍ତ ରୂପ ଆଡ଼କୁ ଅନାଇ ଡାକିଲେ ମା', ମା'...

ଅନ୍ୟମନସ୍କଭାବରେ ସତ୍ୟବତୀ କହିଲେ, କାଲିର ଇତିହାସ ହୁଏ ତ କହିବ, ସତ୍ୟବତୀ ଏକ କୁଟ୍ଟିଣୀ, ଏକ ଚରିତ୍ରହୀନା ନାରୀ । ଜଗତ୍ ସଂସାରର ନିନ୍ଦା ଅପବାଦର ଧାରା ନିରବିଚ୍ଛିନ୍ନଭାବରେ ତା'ର ମସ୍ତକରେ ଅଜାଡ଼ି ହୋଇପଡ଼ିବ । ମାତ୍ର ଅନ୍ତର୍ଯ୍ୟାମୀ ଜାଣନ୍ତି, ଆଜି ସତ୍ୟବତୀ ଯାହା କରୁଛି, ତାହା କରିବା ବ୍ୟତୀତ, ତାହାର ଗତ୍ୟନ୍ତର ନ ଥିଲା । ସତ୍ୟବତୀ ଯଦି ପାପ କରିଥାଏ, ତେବେ ସେ ଏକ ରାଜକୁଳରେ ଜନ୍ମ ଲାଭକରି କରିଛି, ଏକ ରାଜବଂଶରେ ବିବାହ କରି କରିଛି । ବାକି ଯାହା କରିଛି, ତାହା ଜଣେ ବୁଦ୍ଧିମତୀ ସଂସାରୀ ମଣିଷ ଭାବରେ ହିଁ କରିଛି ।

ସତ୍ୟବତୀ ନିଜର ଉଦ୍‌ଗତ ଅଶ୍ରୁକୁ କୌଣସିମତେ ଚାପି ଦେଇ କହିଲେ, ''ତମେ ଶାସ୍ତ୍ରଜ୍ଞ, ସୁପଣ୍ଡିତ । ଶୁଣିଥିବ, ଶାସ୍ତ୍ରରେ ମାତୃଋଣ ବୋଲି ଗୋଟିଏ କଥା ଅଛି । ତାହା ପରିଶୋଧ କରିବାର ଗୋଟିଏ ସୁଯୋଗ ମୁଁ ତୁମକୁ ଦେଉଛି । ତମେ ପୁଣି ମୋ ନିକଟରେ ଶପଥବଦ୍ଧ । ଏହାକୁ ରକ୍ଷା କରିବ କିମ୍ବା ନାହିଁ, ଏ ଦାୟିତ୍ୱ ତୁମ ଉପରେ ନ୍ୟସ୍ତ କରି ମୁଁ ବାହୁଡ଼ି ଯାଉଛି । ମନେ ରଖିବ, ଆସନ୍ତା କାଲି ସାୟଂ କାଳରେ ରଥ ତୁମକୁ ହସ୍ତିନାପୁର ନେଇଯିବାପାଇଁ ଏଠାକୁ ଆସିବ ।''

ଏତିକି କହି, ଦ୍ୱୈପାୟନଙ୍କୁ ବିଦାୟ ଦେବାର କୌଣସି ମାତ୍ର ସୁଯୋଗ ନ ଦେଇ ସତ୍ୟବତୀ ଦ୍ରୁତପଦରେ ଅପେକ୍ଷମାଣ ରଥ ନିକଟକୁ ଫେରିଗଲେ ।

ସଂଶୟର ଦୋଳାରେ- ଇତସ୍ତତଃ ହେଉ ହେଉ ଦ୍ୱୈପାୟନ ଭାବୁଥିଲେ, ମାତୃଋଣ । ମାତାଙ୍କର ଆଦେଶ । ଶୁଣାଯାଏ, ପରଶୁରାମ ଜନ୍ମଦାତାଙ୍କର ଆଦେଶରେ ଜନ୍ମଦାତ୍ରୀଙ୍କର ଶିରଚ୍ଛେଦନ କରିଥିଲେ । ଜନନୀଙ୍କ ଆଦେଶରେ ସେ ଯଦି ଚନ୍ଦ୍ରବଂଶକୁ ପତନମୁଖରୁ ବଞ୍ଚାଇ ରଖିପାରନ୍ତି, ତେବେ ଏଥିରେ ଆଉ ଏମିତି କ'ଣ ପାପ ହୋଇଯିବ ? ପୁଣି ଏଥିନିମନ୍ତେ ଯେତେବେଳେ ଶାସ୍ତ୍ରୀୟ ସମର୍ଥନ ରହିଛି, ସେତେବେଳେ ଆଉ ଦୋଳାଚଳ ଚିତ୍ତ ହୋଇ ଲାଭ କ'ଣ ? ଯାହା ଭବିତବ୍ୟ ତାହା ନିଶ୍ଚୟ ଘଟିବ । ମଝିରେ ସେ ମାତୃ ଆଦେଶ ଲଙ୍ଘନ କରି ଘୋର ପାପ ଭାଗୀ ହେବେ କାହିଁକି ?

ଦ୍ୱୈପାୟନ ମନ ସ୍ଥିର କରିସାରିଥିଲେ । ହଠାତ୍ ତାଙ୍କର ଗମ୍ଭୀର କଣ୍ଠସ୍ୱର ଧ୍ୱନିତ ହୋଇଉଠିଲା, ''ତ୍ୱୟା ହୃଷୀକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋଽସି, ତଥା କରୋମି-''

ବନପକ୍ଷୀର କାକଳିରେ ସମଗ୍ର ଅରଣ୍ୟଭୂମି ନିନାଦିତ ହୋଇଉଠିଲା । ପୂର୍ବାକାଶରେ ସିନ୍ଦୁରା ଫାଟୁଛି ।



# ସଂବିତ୍‌ର ମୃତ୍ୟୁ

ଆଲୋଚନା ଶେଷ ହୋଇ ଯାଇଥିଲା । ଗୋପ ନରେଶ ନନ୍ଦ ମହାପ୍ରତାପୀ ତ୍ରିପୁର ବିଜୟୀ କଂସ ରାଜାର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରି ଦେବାପରେ ମଥୁରାରେ ଆଲୋଡ଼ନ ସୃଷ୍ଟି ହୋଇଥିଲା ।

ସାମାନ୍ୟ ଗୋଟିଏ କରଦ ରାଜା । ସେ ପୁଣି ମୁଣ୍ଡ ଟେକିବ କଂସାସୁର ଆଗରେ । ଦେବତାମାନଙ୍କୁ ଯେଉଁ କଂସ ପାଦ ତଳେ କିଙ୍କର ପରି ଖଟାଉଛି, ସାମାନ୍ୟ ଗୋଟାଏ ଛାଗଶିଶୁ ଛାତି ଫୁଲାଇ ଠିଆହେବ ସେଇ ଶାର୍ଦ୍ଦୁଳରାଜ ସମ୍ମୁଖରେ । ଦୃପ୍ତ କଣ୍ଠରେ କହିବ ମୁଁ ମଥୁରା ଯିବି ନାହିଁ, ଦେବି ନାହିଁ କିଛି ଭେଟି । କଂସ ମୋର କ'ଣ କରିବ ? କଂସ ପୁଣି ଏତେ ଅସହାୟ ଯେ, ତାକୁ ଏଇ ଅପମାନ ନୀରବରେ ହଜମ କରିବାକୁ ପଡ଼ିବ ।

ଚରର ମୁଖରୁ ଏଇ ସମ୍ବାଦ ଶୁଣିବା ପରେ କଂସ କ୍ରୋଧରେ ଜଳି ଉଠିଥିଲା । ମୂଷା ହୋଇ ମାର୍ଜାର, ସାପ ହୋଇ ଗରୁଡ଼ କିମ୍ବା ଶଶା ହୋଇ କେଶରୀ ସହିତ ଦ୍ୱନ୍ଦକଲେ, ତାହାର ପରିଣାମ କ'ଣ ହୁଏ ତାହା ତତ୍‌କ୍ଷଣାତ୍ ସେଇ ବୁଦ୍ଧିହୀନ ଗୋପାଳକୁ ଦେଖାଇ ଦେବା ପାଇଁ ମନ ତାର ବ୍ୟାକୁଳ ହୋଇ ଉଠିଥିଲା ।

ଯମୁନା କୂଳର କଦମ୍ବଆମ୍ରବଟଅଶ୍ୱତ୍ଥ ପରିବେଷ୍ଟିତ ଏତେ ଟିକିଏ ଭୂଖଣ୍ଡ ଗୋପପୁର - ତା'ର ପୁଣି ଗୋଟାଏ ରାଜା ନନ୍ଦ ଗୋପାଳ । ବଣେ ବଣେ ଗୋଚାରଣ କରି ଜୀବନ କଟାଉଥିବା ଏଇ ବୁଦ୍ଧିହୀନ, ନିର୍ବୋଧ ଜନ୍ତୁଟିର ଘଟରେ ନିଜର ଭଲମନ୍ଦ ସମ୍ପର୍କରେ ଲେଶ ମାତ୍ର ଧାରଣା ନାହିଁ । ଯଦି ଥାଆନ୍ତା, ତେବେ ଆଜି ଏ ଅବସ୍ଥା ସୃଷ୍ଟିହୋଇ ନ ଥାନ୍ତା ।

କଂସ ଭଲଭାବେ ଜାଣେ ନନ୍ଦର ଶକ୍ତିର ଉତ୍ସ କେଉଁଠି । ଦୁଇଟି ଉଦ୍ଦଣ୍ଡ ପୃଥ-ବୃନ୍ଦାବନ ଅରଣ୍ୟରେ ଆଭୀର ନାରୀମାନଙ୍କ ପଛରେ ଧାଉଁ ଧାଉଁ ଗୋଟିକର ବେଳ ଯାଉଛି । ବୀର ପଣ ଯେ କେତେ ! ହାତରେ ଖଣ୍ଡେ ବାଉଁଶର ବଇଁଶୀ- ମୁଣ୍ଡରେ ପୁଣି ଆଦର କରି ମୟୂରପୁଚ୍ଛ ମେଞ୍ଚାଏ ଖୋଷା ଯାଇଛି । ଆହା, ଶୋଭା ଦେଖିତ ଜାଣ କନ୍ଦର୍ପ ଲାଜରେ ମରୁଥିବ ! ପୁଣି ଆରଟି- ଶରଧାରେ ସେ କାନ୍ଧରେ ପକାଇଛି ଗୋଟାଏ ହଳ-ମୂଷଳ ।

ଗୋପାଳ ଜାତି ତ - ବୁଦ୍ଧି ଆଉ କେତେ ହେବ ?

ଉଗ୍ରସେନ ମନେ ପକାଇ ଦେଇଥିଲେ, ସେଇ ପିଲା ଦୁଇଟି କିନ୍ତୁ ଷଣ୍ଢା, ତୃଣା, ବକା, ଅଘାଠୁଁ ଆରମ୍ଭ କରି ଶକଟା ପ୍ରଭୃତି ବଡ଼ ବଡ଼ ବୀର ମାନଙ୍କୁ ମାରି ପକାଇଛନ୍ତି । ସମ୍ମୁଖ ଯୁଦ୍ଧରେ ତାଙ୍କୁ ପରାସ୍ତ କରିବା ଖୁବ୍ ଗୋଟାଏ ସହଜ କଥା ନୁହେଁ ।

କଂସ କ'ଣ ସେ କଥା ଜାଣି ନାହିଁ ? ଜଣକ ପରେ ଜଣେ ଯାଦବ ବୀର ନିଶ ମୋଡ଼ି ଯାଇଛନ୍ତି । ଲେଉଟି ସେମାନଙ୍କ ପାଦ ଆଉ ମଥୁରାରେ ପଡ଼ି ନାହିଁ । ଗୋପରେ ପ୍ରକୃତରେ କ'ଣ ହେଉଥିଲା ତାହା କଂସକୁ ଜଣା ନାହିଁ । ତେବେ ନିଶ୍ଚୟ ସେଇ ଗଉଡ଼ ଟୋକା ଦୁଇଟା.... । ତାଙ୍କୁ...

କଂସ ଦାନ୍ତ କଡ଼ ମଡ଼ କରି ଶିରଝୁଣି ଉଠିଲା ବେଳକୁ ଉଗ୍ରସେନ ପୁଣି ମନେପକାଇ ଦେଇଥିଲେ ସେଇ ଭୟଙ୍କର ଅଭିଶାପର କଥା । ଗୋପନଗ୍ରର ସୀମା ସ୍ପର୍ଶ କଲେ କଂସର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।

ପ୍ରଚଣ୍ଡ ହୁତାଶନ ମୁଖରେ ସତେ ଯେମିତି କେହି ଶୀତଳ ଜଳ ଢାଳି ଦେଇଥିଲା । ନିରୂପାୟ କଂସ ସିଂହାସନ ଉପରେ ବସିପଡ଼ିଥିଲା ।

ସେଇତ ଅସୁବିଧା । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରରେ ତା'ର ଅବାଧ ଗତି । ଅଥଚ ତା'ର ନିଜ ପାଦତଳେ କ୍ଷୁଦ୍ର ଆମଳକୀ ଫଳ ତୁଲ୍ୟ ଯେଉଁ ଗୋଷ୍ପଦ ଖଣ୍ଡକ ରହିଛି, ସେ ତା'ର ସୀମା ମଧ୍ୟ ସ୍ପର୍ଶ କରିପାରିବ ନାହିଁ ।

ସମଗ୍ର ରାଜସଭା ନିସ୍ତବ୍ଧ ହୋଇ ଯାଇଥିଲା । କଂସର ଆହ୍ୱାନରେ ଯେଉଁ ସୁରବୀର ନୃପଗଣ ରାଜ ସଭାରେ ଉପସ୍ଥିତ ଥିଲେ, ସେମାନଙ୍କ ମୁଖରୁ ବଚନ ସ୍ଫୁରୁ ନ ଥିଲା । ସେମାନେ ସମଦଣ୍ଡ ସାଜି କଂସର ଆଜ୍ଞାରେ ଯୁଦ୍ଧରେ ପ୍ରାଣ ଦେଇ ପାରନ୍ତି । ମାତ୍ର, ଦୈବୀ ବଳ ସହିତ ସଂଗ୍ରାମ କରିବାର ଶିକ୍ଷା ତ ସେମାନଙ୍କୁ ଦିଆଯାଇନାହିଁ । ଏଥକୁ ଉପାୟ ?

ଉପାୟ ବତାଇଥିଲେ ବହୁଦର୍ଶୀ ଉଗ୍ରସେନ । ଚତୁର ବାକ୍‌କୁଶଳ ଦୂତ ବରଗି ରାମକୃଷ୍ଣଙ୍କୁ ମଥୁରା ଡକାଇ ଆଣିବାର ସମସ୍ତ ପ୍ରଚେଷ୍ଟା ପ୍ରଥମେ କରାଯାଉ । ଥରେ ସେମାନେ ଆସିଗଲେ ତେଣିକି ବିଷ ହେଉ, ଉଦ୍‌ବନ୍ଧନ ହେଉ କିମ୍ବା ଅନ୍ୟ ଯେ କୌଣସି ଉପାୟରେ ହେଉ ସେମାନଙ୍କୁ ହତ୍ୟା କରିବାକୁ କେତେବେଳ ଲାଗିବ ?

ଅଗତ୍ୟା ଯଦି ସେମାନେ ନ ଆସନ୍ତି, ତେବେ ଯୁଦ୍ଧ ବ୍ୟତୀତ ଆଉ ଅନ୍ୟ ଉପାୟ କ'ଣ ?

ଉପସ୍ଥିତ ରାଜନ୍ୟ ମଣ୍ଡଳୀ ସମର୍ଥନ ସୂଚକ ଶିର ସଞ୍ଚାଳନ କରିଥିଲେ । ବିରାଡ଼ି ସହିତ ମୂଷିକର ସଂଗ୍ରାମ, କାଳସର୍ପ ସହିତ ମଣ୍ଡୁକୀର ଦ୍ୱନ୍ଦ୍ୱ କିମ୍ବା ସିଂହ ସହିତ ଛାଗଳର ଯୁଦ୍ଧ କ୍ଷତ୍ରୀ ମୁଖରେ ଉପହାସ୍ୟ ଉପୁଜାଇବ ସିନା ! ସାମାନ୍ୟ ଗୋପାଳକମାନଙ୍କର ବଳ କେତେ ? ମୂର୍ଖ ପଣରେ ନନ୍ଦ ସିନା ମୃତ୍ୟୁକୁ ହାତଠାରି ଡାକିଲା । ନ ହେଲେ ତା' ଉପରେ ବିଜୟ ତ୍ରିଲୋକ ବିଜୟୀ କଂସାସୁରର କେଉଁ ଯଶ ବୃଦ୍ଧି କରିବ ?

କଂସର ଉଦ୍ଧତ କ୍ରୋଧ ଧୀରେ ଧୀରେ ପ୍ରଶମିତ ହୋଇ ଆସୁଥିଲା । ବର୍ତ୍ତମାନ ସହସା ଯୁଦ୍ଧ ଯାତ୍ରା କରିବାର ସମୟ ନୁହେଁ । ସାରା ସଂସାରରେ ନିନ୍ଦାର ବାଜଣା ବାଜି ଉଠିବ । ପିପୀଲିକା ନିମନ୍ତେ ମତ୍ତଗଜ ବନ୍ଧନକ୍ଷମ ଲୌହ ଶୃଙ୍ଖଳର ପ୍ରୟୋଜନ ହୁଏ ନାହିଁ । ତା'ପାଇଁ ସାମାନ୍ୟ ଅଙ୍ଗୁଳିର ଚାପହିଁ ଯଥେଷ୍ଟ । ତଥାପି ଯଦି ସେଥିରେ ନ ହେଲା, ତେବେ - ସଭା ଶେଷ ହୋଇଥିଲା ।

ପ୍ରତ୍ୟୁଷରେ ମହାମତି ଅକ୍ରୁର ଦୂତପଣରେ ଗୋପପୁର ଯାତ୍ରା କରିବେ ବୋଲି ସ୍ଥିର କରାଯାଇଥିଲା ।

କଂସ ଚନ୍ଦ୍ରଶାଳାପୁର ଉପରୁ ଉଦାସ ନୟନରେ ମହାଶୂନ୍ୟ ଆଡ଼କୁ ଅନାଇ ରହିଥିଲା । ଊର୍ଦ୍ଧ୍ୱରେ ନିଃଶବ୍ଦ ତିମିର ବେଷ୍ଟିତ ବିସ୍ତୀର୍ଣ୍ଣ ଆକାଶ । ବକ୍ଷରେ ତା'ର ଲକ୍ଷ ଲକ୍ଷ ତାରକା ଅକ୍ଷରରେ ଲେଖା ମହାକାଳର ଦୁର୍ଲଂଘ୍ୟ ଲିପିକା- ସେଥିରେ କ'ଣ ସମାପ୍ତିର ଇଙ୍ଗିତ, ମୁକ୍ତିର ନିଶାଣ କିମ୍ବା ବ୍ୟାକୁଳପ୍ରାଣର ସଂକେତ ନିହିତ ?

ନିଜ ଅଲକ୍ଷିତରେ କଂସର ବକ୍ଷସ୍ଥଳ ଥରାଇ ଦୀର୍ଘଶ୍ୱାସ ବାହାରି ଆସିଲା । କଂସ ଜାଣେ, ସେ ଯାହା ଚାହିଁଛି, ତା' ରହିଛି ସବୁବେଳେ ତାର ପାଇବାର ଅତୀତ । ତା'ପାଖରୁ ଯାହା କାମନା କରାଯାଇଛି, ତା' ଦେବା ତା' ପକ୍ଷରେ ଅସାଧ୍ୟ ।

ଦୁଃଖ ତା'ର ଏଇଠି ।

ଅଥଚ ବିଶାଳ ସୃଷ୍ଟିରେ ପୌରୁଷର ସାମର୍ଥ୍ୟରେ ମୁଣ୍ଡଟେକି ବଞ୍ଚି ରହିବାକୁ ଚେଷ୍ଟା କରିବା କ'ଣ ଏଡ଼େ ଅନ୍ୟାୟ ?

କଂସ ବୁଝିଛି, ଯେଉଁ ପକ୍ଷୀର ମନତଳେ ଆକାଶରେ ଉଡ଼ିବୁଲିବାର ବାସନା ଅଛି, ଅଥଚ ପକ୍ଷରେ ଯଥେଷ୍ଟ ଶକ୍ତି ନାହିଁ, ତା' ଭଳି ଦୁଃଖୀ ତ୍ରିଜଗତରେ କେହି ନାହିଁ । ପକ୍ଷ ସଂଚାଳନ କରି କେବଳ କ୍ଷତବିକ୍ଷତ ହେବା ଛଡ଼ା ଗତ୍ୟନ୍ତର ଥାଏ ନା ତା'ର !

କଂସ ଶକ୍ତିମାନ, କଳ୍ପନା ବିଳାସୀ, ବୁଦ୍ଧିମାନ । କ୍ଷତବିକ୍ଷତ ହେବାର ଦୁର୍ଦ୍ଦଶା ତା'ର ଅବା ହେବ କାହିଁକି ?

ସସାଗରା ଧରାକୁ ପଦାନତ କରିସାରିବା ପରେ ଆଜି ତା'ର ସମସ୍ତ ଶକ୍ତି ଆଉ ସାମର୍ଥ୍ୟ ଯଦି ଦୁଇଟା ଅପୋଗଣ୍ଡ ଶିଶୁ ନିକଟରେ ବ୍ୟର୍ଥ ହୋଇଯାଏ ତେବେ ମହାଜନମାନେ ସ୍ୱେର ମୁଖ ହୋଇଉଠିବେ ନାହିଁ ?

କିଏ ଅବା ଆଉ କାହିଁକି କଂସାସୁରର ଶକ୍ତି ଆଗରେ ନତମସ୍ତକ ହେବ ?

ଦୁନିଆ ଶକ୍ତର ଭକ୍ତ ସିନା !

ଆଜି ସେଇ ଦୁର୍ଦ୍ଦମନୀୟ ଶକ୍ତିକୁ ଆହ୍ୱାନ ଜଣାଇଛି ଗୋଟାଏ ସାମାନ୍ୟ ଗୋପାଳ, ଅସ୍ତ୍ର କହିଲେ ଯେ ବୁଝେ ଖଣ୍ଡେ ବାଉଁଶ ଦଣ୍ଡକୁ ।

ଜଗତରେ ବଞ୍ଚିତ ହେବା ଭିତରେ ଥାଏ ଦୁଃଖ - କିନ୍ତୁ ପ୍ରତ୍ୟାଖ୍ୟାତ ହେବାରେ ଯେଉଁ ଅସମ୍ମାନ ଥାଏ, ତାହା କଂସ ଅପେକ୍ଷା ଅଧିକ କିଏ ବୁଝେ ? ସେଇ ଆତ୍ମାବମାନନାର ଯେଉଁ ଦୁସ୍ତର ଲଜ୍ଜା, ତାକୁ କିଏ ବୁଝିବ ? କଂସର ପାଦ ଲେହନ କରୁଥିବା ଏଇ ଭୀରୁ କାପୁରୁଷ ରାଜନ୍ୟ ମଣ୍ଡଳୀ, ତା'ର ପ୍ରାଣାଧିକା ପତ୍ନୀ ଜରାସନ୍ଧତନୟା ହେତିପ୍ରହେତି କିମ୍ବା ଅନର୍ଗଳତେଜା ପ୍ରାଣାଧିକ ପୁତ୍ର ହଂସ ?

ଅସାମାନ୍ୟ ଶକ୍ତି, ରୂପ ଓ ଅସାଧାରଣ ବୁଦ୍ଧି ସହ ଅତୁଳ ଐଶ୍ୱର୍ଯ୍ୟ ଏବଂ ଅସଂଖ୍ୟ ସେବାକାରୀ ଭିତରେ ସେ କିଭଳି ରିକ୍ତ, ନିଃସଙ୍ଗ ଆଉ ବୁଭୁକ୍ଷୁ ଏ କଥା ତା' ଅପେକ୍ଷା ଆଉ ଅଧିକ କିଏ ଜାଣେ ? ଚିରାଚରିତ ରୀତିରେ ଯେଉଁଠି ତା'ର ସ୍ଥାନ, ସେଠି ସେ ଅନାହୂତ, ସ୍ୱାଭାବିକ ନିୟମରେ ଯାହା ପାଖରେ ତାହାର ମାନ; ତା ପାଖରେ ସେ ଅନାଦୃତ । ସେଇ ଅବାଞ୍ଛିତ ଅବସ୍ଥିତିର ଅପରିମିତ ଗ୍ଲାନି ନିରନ୍ତର ବହନ କରି ନିଜ ଆତ୍ମାକୁ ତିଳ ତିଳ ଦହନ କରିଛି ଅନନ୍ୟୋପାୟ କଂସ ।

ସଂସାରରେ ସମସ୍ତ ଦେଖନ୍ତି ରାଜ-ଚକ୍ରବର୍ତ୍ତୀ କଂସର ବାହାର ରୂପଟାକୁ । ରାଜସିଂହାସନର ଆରପଟେ ଘନୀଭୂତ ଅନ୍ଧକାର ଭିତରେ ସ୍ନେହ ଆଉ ସହାନୁଭୂତିର କଣିକାଏ ଆଲୋକ ପାଇବା ପାଇଁ ଆତ୍ମା ତା'ର କିଭଳି ଉତ୍କଳ ବିକଳ ହେଉଛି ଏ କଥା କିଏ ଜାଣିଛି !

ସେଇ ରହସ୍ୟମୟୀ ତଡ଼ିତ୍ କନ୍ୟା ଯେଉଁ ଦିନ ତା' ହାତରୁ ଖସିଯାଇ ଆକାଶପଥରୁ ତା'ର ମୃତ୍ୟୁଭେଦ ବଖାଣି ଦେଇଗଲା, ସେଇଦିନୁଁ ମୁହୂର୍ତ୍ତେ ମାତ୍ର ନିଶ୍ଚିନ୍ତ ହୋଇ ନିଦ୍ରା ଯିବାର ସୁଯୋଗ ମିଳିଛି କାହିଁ ? ଆଖି ବୁଜିଲେ ଦେଖିବାକୁ

ମିଳିଛି, ସେଇ ନିର୍ଧୂମ ଅଗ୍ନିପ୍ରାୟ ପ୍ରଜ୍ୱଳିତା ଭୟଙ୍କରୀ କନ୍ୟାର ତ୍ରାସ ସଞ୍ଚାରୀ ରୂପ-ଶୁଣିବାକୁ ମିଳିଛି, ତା'ର ଟହ ଟହ ହାସ୍ୟ; ଆଉ କଂସର ଦିବସର ଶାନ୍ତି, ରାତ୍ରିର ନିଦ୍ରା କାହିଁ କୁଆଡ଼େ ଭାସି ଯାଇଛି ।

କେତେ ତ ପରାମର୍ଶ କରାଗଲା । ଗୋଟିକ ପରେ ଗୋଟିଏ ଅଷ୍ଟସେନା ବଳୀ ପଡ଼ିଲେ ବୃନ୍ଦାବନର କେଉଁ ନିର୍ଜନ ପ୍ରାନ୍ତରେ । ଗଲାବେଳେ ଯାଇଥିଲେ ଛାତି ଫୁଲାଇ, ପୌରୁଷ-ପ୍ରକଟାଇ, ଶୌର୍ଯ୍ୟର ଆସ୍ଫାଳନ କରି, କାହିଁ କେଉଁଠି ମାଟିକାମୁଡ଼ି ପଡ଼ିଲେ କିଏ ଜାଣିଲା ?

କି ଅଦୃଷ୍ଟ ଦେଇ ତା'ର ସୃଷ୍ଟିକର୍ତ୍ତା ତାକୁ ସଂସାରକୁ ପଠାଇଥିଲେ, ସେଇ ଏକା ଜାଣିଥିବେ ସିନା । ପ୍ରାଣାଧିକ ପ୍ରିୟ ଭଗ୍ନୀ ଦେବକୀ ଆଉ ଭଗ୍ନୀପତି ବସୁଦେବ-ଏମାନଙ୍କୁ ଯନ୍ତ୍ରଣାର ଶରଶଯ୍ୟାରେ ଶୁଆଇ ରଖିବାର ଯେଉଁ ମର୍ମଦାହ, ସେ କଥା କିଏ ବୁଝିଲା ? ଭାଗ୍ୟର ଏହି ବିଡ଼ମ୍ବନାର କଥା କାହାକୁ ସେ କହିବ ?

ସଂସାରରେ ବଞ୍ଚିବାର ଅଧିକାର ସମସ୍ତଙ୍କର ରହିଛି । ପ୍ରବଳ ପୁଣି ଏଇ ବ୍ୟାପାରଟିରେ ସମଧିକ ସୁଯୋଗ ପାଇଥାଏ । ଆକାଶବାଣୀ ଶୁଣିସାରିବା ପରେ ଯେ ଯଦି ପ୍ରତିକାର ନ କରି ଭୀରୁ କାପୁରୁଷ ଭଳି ନିଜକୁ ଅଦୃଷ୍ଟ ହାତରେ ଛାଡ଼ି ଦେଇଥାଆନ୍ତା, ତେବେ କି ଲାଭ ତା'ର ଏତେ ଶକ୍ତି ସାମର୍ଥ୍ୟ ଥାଇ ? ହୋଇପାରେ ଦେବକୀ ନିରପରାଧିନୀ, ନଥାଇପାରେ ବସୁଦେବର କିଛି ଦୋଷ । କଂସର ପ୍ରାଣହନ୍ତାକୁ ଗର୍ଭରେ ଧାରଣ କରିବା କ'ଣ କମ୍ ଅପରାଧ ? ସବୁ କଥା ଜାଣିଶୁଣି କିଏ ଅବା ନୀରବ ରହିପାରନ୍ତା ? ନପୁଂସକ କ୍ରୋଧ ନେଇ ନିଜେ ଜଳିପୋଡ଼ି ମରନ୍ତା ?

ତା' ଅପେକ୍ଷା ଏ ଯାହା ହୋଇଛି ବରଂ ଭଲ ହୋଇଛି । ଇତିହାସ କହିବ, କଂସ ଭଳି ନିଷ୍ଠୁର ଆଉ ହୃଦୟହୀନ ସମ୍ରାଟ ସଂସାରରେ କେହି ନ ଥିଲେ । କାଲି ସଂସାର ଆଖିରେ ତା'ର ମୂଲ୍ୟାୟନ କିଭଳି ହେବ, ସେଥିପାଇଁ ସେ ତା'ର ଆଜିକୁ ତ ବନ୍ଧ୍ୟ କରିଦେଇ ପାରିବ ନାହିଁ । ସେ କ୍ଷତ୍ରିୟ ବୀର, ପୁଣି ପୁରୁଷ-ଦୁର୍ବଳ ହୋଇ ଭାଗ୍ୟର ପାଦଧରି ଜୀବନ ଭିକ୍ଷା ମାଗିବ- ନାଃ -ତା' ଅପେକ୍ଷା ମୃତ୍ୟୁ ବରଂ ତା' ପାଇଁ ଶ୍ରେୟସ୍କର ।

ବସୁନ୍ଧରା ବୀରଭୋଗ୍ୟା । ରାମ ଅପେକ୍ଷା ରାବଣମାନେ ହିଁ ଚିରକାଳ ଧରି ଇତିହାସକୁ ନିୟନ୍ତ୍ରିତ କରି ଆସିଛନ୍ତି । ରାମ ହୋଇ କାଳକାଳ ଧରି ଦୁଃଖ ପାଇବା ଅପେକ୍ଷା ରାବଣ ହୋଇ ମୁହୂର୍ତ୍ତକରେ ଜଳିଉଠି ଲିଭିଯିବା ବରଂ ଭଲ ।

କୃଷ୍ଣ ବଳରାମଙ୍କ ପରାକ୍ରମ, ଶକ୍ତି ଆଉ ସାମର୍ଥ୍ୟ ବିଷୟରେ ତା'ର ଆଉ ସନ୍ଦେହ ନାହିଁ । ତା'ର୍ ଜୀବନର ମୁଦେଇ ଯେ ଗୋପପୁରରେ ବଢୁଛି, ଏ କଥା ମଧ

ତା' ନିକଟରେ ଅଛପା ନାହିଁ । ସେ ତ ସେଇଥିପାଇଁ ସେମାନଙ୍କୁ ନିମନ୍ତ୍ରଣ କରିବାକୁ ଚାହେଁ । ଥରେ ସେ ଏହି ଅଦ୍ଭୁତକର୍ମା କିଶୋର ଦ୍ୱୟଙ୍କୁ ଦେଖିବ । ଦେଖି ଜୀବନ ତା'ର ସାର୍ଥକ କରିବ । ବୀର ଭାବରେ ଲଢ଼ି ମୃତ୍ୟୁବରଣ କଲେ ମଧ୍ୟ ସେଥିରେ ତା'ର ଦୁଃଖ ନାହିଁ । ଶାସ୍ତ୍ର ବଚନ ଅନୁସାରେ ତାର ତ ଦିବ୍ୟଗତି ହେବ । ଆଉ ଯଦି ବଞ୍ଚିରହେ, ତେବେ ସେ ହେବ ସସାଗରାଧରାର ଅସପତ୍ନ ଅଧୀଶ୍ୱର । ଅନ୍ତତଃ ବର୍ତ୍ତମାନ ଭଳି ତିଳ ତିଳ କରି ତାକୁ ମରିବାକୁ ପଡ଼ିବ ନାହିଁ ।

କଂସ ଜାଣେ, କୃଷ୍ଣ-ବଳରାମଙ୍କ ପାଇଁ ତାହାର ଯେଉଁ ପ୍ରତିଷେଧକ ବ୍ୟବସ୍ଥାମାନ କରିବାର କଥା, ତାହା ସେ କରିସାରିଛି । ବର୍ତ୍ତମାନ ଅପେକ୍ଷା କେବଳ ଶେଷ ପରିଣତିକୁ...

ଅତି ପ୍ରୟୋଗରେ ବ୍ୟର୍ଥ ହୁଏ ଦଣ୍ଡ । ଅତି ପୀଡ଼ନରେ ଦୂର ହୁଏ ଭୟ । ଅନୁଭୂତି ଅସାଢ଼ ହୁଏ ଅତି ଦୁଃଖ ଭୋଗରେ, ତା' କିନ୍ତୁ ବେଦନାର ଅନ୍ତ ନୁହେଁ, ବରଂ କୁହାଯାଇପାରେ ବେଦନାର ଅଭ୍ୟାସ - ନୁହେଁ ତାହା ବ୍ୟଥାର ଅପସୃତି – କେବଳ ବିସ୍ମୃତି ମାତ୍ର ।

କଂସ ସୁଖର କାଙ୍ଗାଳ ନୁହେଁ । ସେ ଭଲ ଭାବରେ ଜାଣେ ଅନ୍ତତଃ ଏ କ୍ଷେତ୍ରରେ କୌଣସି ବଳପ୍ରୟୋଗ ଚଳେ ନାହିଁ । ଯାହା ପାଇବାର ନୁହେଁ ତାକୁ ନେଇ ଛଡ଼ାଛଡ଼ି କଲେ ମାନତ ଯାଏ, ପ୍ରାଣ ସଂଶୟ ମଧ୍ୟ ହୋଇପାରେ ।

ସଂସାରରେ ଯାହା ପାଖରୁ ଯେତିକି ମିଳେ, ତା'ପାଖରେ ସେତିକି ପାଇଁ କୃତଜ୍ଞ ରହିବା ଭଲ । ପଥର ଖଣ୍ଡକୁ ଶାଳଗ୍ରାମ ଭାବି ଅର୍ଘ୍ୟ ଦେଲେ ଯଦି ଆନନ୍ଦ ମିଳେ ତେବେ ସେଥିରେ ଅନୁଶୋଚନା କାହିଁକି ? ପୂଜାର ଆନନ୍ଦ ତ ମୂର୍ତ୍ତିରେ ନୁହେଁ, ଆନନ୍ଦ ଭକ୍ତର ମନରେ ।

କଂସର ସୌଭାଗ୍ୟ- ବାଟ ଚାଲୁ ଚାଲୁ ସେ ଗୁଡ଼ିଏ ବିଶ୍ୱସ୍ତ ସେବକ ପାଇଛି । ସେଇମାନେ ହସି ହସି ତା' ପାଇଁ ନିଆଁକୁ ଡେଇଁଛନ୍ତି । ଜୀବନ ଦେଇଛନ୍ତି ସିନା, ତୁଣ୍ଡ ଖୋଲିନାହାନ୍ତି । ଏଭଳି ଭାଗ୍ୟ କେତେ ଜଣଙ୍କର ଥାଏ ? ଭାଗ୍ୟ ଦେବତା ଅକୃପଣ ହାତରେ ତା'ଠୁ ଯେତିକି କାଢ଼ି ନେଇଛନ୍ତି, କୃପଣ ହାତରେ କିଛି ଦାନ ମଧ୍ୟ କରିଛନ୍ତି । ହୁଏତ ଭାଗ୍ୟ ବିରୁଦ୍ଧରେ ତା'ର ବିଶେଷ କିଛି କହିବାର ନାହିଁ ।

ରାତ୍ରିରର ଏକ ନିଃସଙ୍ଗ ପକ୍ଷୀର କର୍କଶ-ଚିତ୍କାରରେ ପରିବେଶର ନିର୍ଜନତା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା । ଆଗରେ କ୍ଲାନ୍ତ ଏବଂ ସୁଶୁପ୍ତ ମଥୁରା ନଗରୀ ଅଳସ କନ୍ୟାଭଳି ଲୀଳାୟିତ ଭଙ୍ଗୀରେ ବିଦ୍ୟାମାନ ।

ରାତ୍ରି ମଧ୍ୟଯାମ ଅତିକ୍ରାନ୍ତ ହୋଇଯିବଣି ପରା । ରାଜସଭାରୁ ଫେରି ଆସିବା ପରେ କଂସ ଏଇ ଚନ୍ଦ୍ରଶାଳାପୁରରେ ବସି ଆତ୍ମ ବିଶ୍ଳେଷଣ କରୁଥିଲା । କେହି ତା'ର ସେଇ ତନ୍ମୟତାକୁ ଭାଙ୍ଗିବାକୁ ସାହସ କରି ନାହାନ୍ତି ।

ହଠାତ୍ ଅଦୂରରେ କାହାର ବ୍ୟଥାତୁର ଦୀର୍ଘଶ୍ୱାସର ଶବ୍ଦ ଶୁଣି କଂସ ଅନାଇଲା । ନିଷ୍କମ୍ପ ଦୀପ ଶିଖା ଭଳି ଆସନ କୋଳରେ ଅଙ୍ଗ ଢାଳିଦେଇ ବସିଛନ୍ତି ଜରାସନ୍ଧତନୟା-ପଟ୍ଟମହିଷୀ ହେନ୍ତି-ନୀରବ ଆଉ ନିଥର । ମହାରାଜାଙ୍କର ମାନସିକ ଅବସ୍ଥା ତାଙ୍କ ପାଖରେ ଅଜଣା ରହିବା କଥା ନୁହେଁ । ତେଣୁ ସେ ତାଙ୍କୁ ଡାକିନାହାନ୍ତି ।

ହୁଏତ ସେ ବି ତାଙ୍କରି ପରି ଜୀବନ ସମ୍ପର୍କରେ ଭଗ୍ନଆଶ, ସ୍ୱପ୍ନହୀନ ଆଉ ବୀତସ୍ପୃହ ।

ଜଣେ ଭାବୁଛି ମୃତ୍ୟୁର ବାକି ଅଛି କେତେ ?

ଆଉ ଜଣକ ଭାବୁଛି, ମୃତ୍ୟୁର ଆଉ ବାକି ଅଛି କି ?

ହଠାତ୍ କଂସର ମନ ଅହେତୁକ କୋମଳତାରେ ଭରିଗଲା । ଜରାସନ୍ଧ ଭଳି ଚକ୍ରବର୍ତ୍ତୀ ରାଜାର କନ୍ୟା । ଜୀବନରେ ନ ପାଇବାର ବେଦନା ଯେ କ'ଣ, ତା' ତାଙ୍କୁ ଜଣା ନ ଥିଲା । କେବଳ କଂସ ଭଳି ଏକ ହତଭାଗା ସହିତ ନିଜର ଭାଗ୍ୟ ଛନ୍ଦିଦେବାରୁ ସିନା ସେ ଆଜି ଏତେ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି । ଆହା ବିଚାରୀ !

କୋମଳ କଣ୍ଠରେ କଂସ କହିଲେ - ମହାରାଣୀ !

ଅଗ୍ରମହିଷୀଙ୍କର ତନ୍ମୟତା ଭଙ୍ଗ ହେଲା । ସେ ଆସନ ତ୍ୟାଗ କରି ମହାରାଜଙ୍କ ନିକଟକୁ ଆସିଲେ । କଂସର ଭ୍ରମର କୃଷ୍ଣ କୁଞ୍ଚିତ କାକପକ୍ଷରେ ଚମ୍ପକ କଳି ତୁଲ୍ୟ ନିଜର ଅଙ୍ଗୁଳି ଚାଳନ କରୁ କରୁ ଉତ୍ତର ଦେଲେ - ମହାରାଜ !

କଂସ ମମତା ମଧୁର କଣ୍ଠରେ ପ୍ରଶ୍ନ କଲେ - କିଛି କହିବ ଦେବୀ ?

ହେନ୍ତି କିଛିକ୍ଷଣ ନୀରବ ରହିଲେ, ହୁଏତ ଯାହା କହିବାକୁ ଚାହାନ୍ତି, ତାହା ପ୍ରକାଶ କରିବା ନିମନ୍ତେ ସାହସ ସଂଗ୍ରହ କରୁଥିଲେ । ଶେଷରେ କହିଲେ - ଆମେ କ'ଣ ଆଉ ପଛକୁ ଫେରିଯାଇ ପାରିବା ନାହିଁ ସ୍ୱାମୀ ?

କଂସଙ୍କର କିଛି କହିବାର ନ ଥିଲା । ସେ କେବଳ ଗୋଟିଏ ହାତରେ ମହାରାଣୀଙ୍କର ହାତ ଉପରେ ସାମାନ୍ୟ ଚାପ ଦେଲେ । ହେନ୍ତି କହିଲେ - ସଂସାରରେ ଯାହା ଆପଣ ପାଇବାକୁ ଚାହିଁଛନ୍ତି, ତା' ଯେ ଆପଣଙ୍କର ପ୍ରାପ୍ୟ ନୁହେଁ, ଏକଥା ବୁଝିବାର ସମୟ କ'ଣ ଆପଣଙ୍କର ତଥାପି ଆସିନାହିଁ ମହାରାଜ ?

କଂସ ବୁଝିଲେ । ତଥାପି ସେ ଉତ୍ତେଜିତ ହେଲେ ନାହିଁ । ଏଇ ନାରୀଟି ହିଁ କେବଳ କଂସର ଭ୍ରୁକୁଟିକୁ ଭୟ ପାଏ ନାହିଁ । ଯେଉଁ ନାରୀ ସ୍ୱାମୀର ତୁଣ୍ଡରୁ କଥା ଖସିବା ମାତ୍ରେ ହସି ହସି ନିଜର ହୃତପିଣ୍ଡକୁ ସ୍ୱାମୀର ପାଦ ତଳେ ଥୋଇଦିଏ, ସେ ନାରୀ ତ ଅନନ୍ୟା । ଯେତେ ନିଷ୍ଠୁର ହୃଦୟ ହେଲେ ବି କଂସ ମଣିଷ ତ ! ହୃଦୟର ଆବେଦନ ବୁଝିବେ ନାହିଁ ?

ସ୍ନେହ କୋମଳ କଣ୍ଠରେ ସେ ନିଜର ଅର୍ଦ୍ଧାଙ୍ଗିନୀକୁ ଉତ୍ତର ଦେଲେ- ତମେ କ'ଣ ଭାବିଲ ମଣିଷ ଉପରୁ ଶ୍ରଦ୍ଧା ହରାଇ ମୁଁ ଆଜି ବ୍ୟସ୍ତ ହୋଇପଡ଼ିଛି ? ଦିନେ ମୁଁ ମନେ ମନେ ଦଗ୍ଧ ହୋଇଛି, ମଣିଷ ପ୍ରତି ବିଶ୍ୱବ୍ରହ୍ମାଣ୍ଡ ପ୍ରତି ବିତୃଷ୍ଣ ବୋଧ କରିଛି । ଆଜି କିନ୍ତୁ ମନର ଧୈର୍ଯ୍ୟ ସମ୍ପୂର୍ଣ୍ଣ ଫେରି ପାଇଛି । ସଂସାର ପ୍ରତି ମୋର କୌଣସି ଅଭିଯୋଗ ନାହିଁ ।

ହେଡି ଜାଣନ୍ତି, ଏହା ସତ୍ୟ ନୁହେଁ । କଂସ କେବେ ମଣିଷ ଉପରେ ପ୍ରତ୍ୟୟଶୀଳ ନ ଥିଲେ । ଆଜି ବି ନୁହଁନ୍ତି । ଉତ୍ସବମୁଖର ମଥୁରା ନଗରୀର କାମଳଗ୍ରସ୍ତ ଫିକା ହସ ଭିତରେ ସେ ନିଜର ଅସଫଳତାକୁ ଗୋପନ କରିବା ନିମନ୍ତେ ଚେଷ୍ଟା ମାତ୍ର କରୁଛନ୍ତି । ଧନୁଯାତ୍ରାର ଆୟୋଜନ କରି ତାଙ୍କର ସେଇ ଶତ୍ରୁମାନଙ୍କୁ ମଥୁରାକୁ ଟାଣି ଆଣିବାକୁ ଚକ୍ରାନ୍ତ କରୁଛନ୍ତି ।

ଗୋଲାପ ଚୟନ କରିବାକୁ ଗଲେ, ପୁଷ୍ପ ତ ଜୁଟେ, କଣ୍ଟା ବି ଫୁଟେ । ମାତ୍ର ସେଇ ପୁଷ୍ପର ସୌରଭ ଭୁଲିଯାଇ ଯେଉଁମାନେ କେବଳ କଣ୍ଟାର ଆଘାତଟାକୁ ଚିରକାଳ ମନରେ ବଞ୍ଚାଇ ରଖନ୍ତି, କଂସ ହେଉଛନ୍ତି ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ତାଙ୍କର ପାଟିର କଥା କିଭଳି ତାଙ୍କର ମନର କଥା ହୋଇପାରିବ ?

ହେଡି ଜାଣନ୍ତି, ଏକଥା ସେ କେବେହେଲେ ମୁହଁଖୋଲି ନିଜର ସ୍ୱାମୀଙ୍କୁ କହିପାରିବେ ନାହିଁ । ଗୀତ ସିନା ସରିଯାଏ । ମାତ୍ର ତା'ର ସ୍ୱରର ଅନୁରଣନ ଶ୍ରୋତାର ହୃଦୟରେ ଦୀର୍ଘକାଳଧରି ଚାଲିଥାଏ । ଝଡ଼ ଥମିଯିବା ପରେ ଥରଥର କମ୍ପୁଥାଏ ନଦୀର ଢେଉ । ତର୍କର ସମାପ୍ତି ଘଟେ ନାହିଁ । ବାକ୍‌ରୋଧ ହୁଏ ମାତ୍ର । କଥା ଯେତେବେଳେ ନ ଥାଏ ମୁଖରେ, ବ୍ୟଥା ଜାଗିରୁହେ ବୁକୁରେ । ସେଥିରେ ଚିତ୍ତ ବିକ୍ଷିପ୍ତ ହୁଏ ସିନା- ମାନସିକ ଶାନ୍ତି ମିଳିବ କୁଆଡୁ ?

ରାଣୀଙ୍କର ନୀରବତା କଂସଙ୍କୁ ସ୍ପର୍ଶକଲା । ନିଜ ଆସନର ଏକ ପାର୍ଶ୍ୱରେ ସେ ତାଙ୍କୁ ବସାଇଲେ । କହିଲେ - ଆଜି ମୁଁ ଜୀବନର ଯେଉଁ ବିନ୍ଦୁରେ ଆସି ଠିଆ ହୋଇଛି, ସେଠାରୁ ପଛକୁ ଫେରିବାର କୌଣସି ପଥ ନାହିଁ । ଆୟୋଜନ ସମ୍ପୂର୍ଣ୍ଣ ହୋଇଛି । କାଲି ପ୍ରାତଃରେ ଅକ୍ରୁର ଗୋପପୁରକୁ ଯାତ୍ରା କରିବେ ।

ହେତି କହିଲେ - କୃଷ୍ଣ ସର୍ବଶକ୍ତିମାନ୍ ମହାରାଜ ।

କଂସ ମ୍ଳାନ ହସିଲେ । କହିଲେ - ଦେଖୁଛି, ସ୍ୱାମୀର ଶକ୍ତି ଉପରୁ ତମେ ଭରସା ହରାଇ ସାରିଲଣି । କଂସ ଚିରଦିନ ନିଜ ସାମର୍ଥ୍ୟ ଉପରେ ନିର୍ଭର କରି ଆସିଛି । ଆଜି ମଧ୍ୟ ସେତିକି ତା'ର ସମ୍ବଳ । ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହୋଇପାରେ । ଦୁନିଆ ଓଲଟପାଲଟ ହୋଇଯାଇପାରେ, ମାତ୍ର କଂସର ନିଷ୍ପତ୍ତି ବଦଳିବ ନାହିଁ ।

ହେତି ଉତ୍ତର ଦେଲେ - ଶକ୍ତି ଆଉ ସାମର୍ଥ୍ୟର ଅହଂକାରରେ କୌଣସି ପୌରୁଷ ନ ଥାଏ ସ୍ୱାମୀ । ଦୁନିଆରେ ମାନ୍ଧାତା, ନହୁଷ, ଯଯାତି, ଦାଶରଥି ରାମ ପ୍ରଭୃତି କେତେ ଶକ୍ତିଧର ପୁରୁଷ ଜନ୍ମଗ୍ରହଣ କରିଥିଲେ । ସେମାନେ ଆଜି କାହାନ୍ତି ? ଶକ୍ତି ବିଲୀନ ହୁଏ ମଣିଷର ସ୍ମୃତିରେ । ନାମ ରହିଯାଏ କାଳକାଳକୁ ।

କଂସ କହିଲେ - କାଲି ହୁଏତ ଦୁନିଆ କହିବ, କଂସ ଭଳି ପ୍ରଜାପୀଡ଼କ, ଅତ୍ୟାଚାରୀ ଶାସକ ସଂସାରରେ କେହି ନ ଥିଲେ । ମାତ୍ର କଂସ ଜାଣେ ସେ ତାହା ହିଁ କରିଛି, ଯାହା ତାକୁ କରିବାକୁ ପଡ଼ୁଛି । ପାପ ହେଉ ବା ପୁଣ୍ୟ ହେଉ, ତା'ର ବିବେକ ତାକୁ ଯେଉଁ ବାଟରେ ଚାଲିବାକୁ ଇଙ୍ଗିତ ଦେଇଛି, ସେ ସେଇ ବାଟରେ ଚାଲିଛି । ବାଟ ଚାଲିବାରେ ଯେଉଁ ଆନନ୍ଦ, ସେତକ ସେ ପାଇଛି, ପଛକୁ ଫେରି ଚାହିଁବାରେ ଯେଉଁ ଭୀରୁତା ତାହା ତାକୁ ସ୍ପର୍ଶ କରିନାହିଁ ।

କଂସ ନୀରବ ରହିଲେ । ହେତି ଜାଣନ୍ତି କଂସଙ୍କର ଅନ୍ତରକୁ ଆତଙ୍କ ସ୍ପର୍ଶ କରିଛି । ଗୋଟିକ ପରେ ଗୋଟିଏ ତାଙ୍କର ବିଶ୍ୱସ୍ତ ସେନାନୀ ଗୋପପୁରରୁ ଲେଉଟୁ ନାହାନ୍ତି । କେଉଁ ଶିଶୁ ବୟସରୁ ନନ୍ଦରାଜାର ପୁତ୍ର ସେମାନଙ୍କୁ ଶେଷ କରିବାରେ ଲାଗିଛି ।

ଆଜି ମଥୁରାରେ ସମସ୍ତେ ଜାଣନ୍ତି, ଦେବକୀ ପୁତ୍ରର ମଥୁରା ତ୍ୟାଗର କାହାଣୀ । ଯେ ପର୍ଯ୍ୟନ୍ତ ସେ ନିର୍ଦ୍ୱନ୍ଦ୍ୱରେ ଗୋପରେ ବଢୁଥିବ, ସେ ପର୍ଯ୍ୟନ୍ତ କଂସର ସ୍ୱସ୍ତିନାହିଁ । ମୁଣ୍ଡ ଉପରେ ଯାହାର ଖଡ଼ଗ୍ ଝୁଲୁଛି, ସେ କାହୁଁ ପାଇବ ଜୀବନର ରୋମାଞ୍ଚକର ଆନନ୍ଦ । ସେଇଥିରୁ ମୁକ୍ତି ପାଇବା ପାଇଁ କଂସର ଏତେ ଆୟୋଜନ । ଏତେ ଚିନ୍ତା-ଆଉ ପରିଶ୍ରମ । ଅହରହ ମୃତ୍ୟୁର ବିଭୀଷିକା ମଧ୍ୟରେ ବଞ୍ଚିବାଠାରୁ ଯନ୍ତ୍ରଣା ସଂସାରରେ ଆଉ ଅଧିକ କ'ଣ ଅଛି ? କଂସ ନିତାନ୍ତ ଦୁଃଖୀ ମଣିଷଟିଏ ।

ନା ତାକୁ ମିଳିଛି ସ୍ନେହୀ ବନ୍ଧୁ ପରିଜନଙ୍କର ମମତାର ଅନାବିଳ ସ୍ପର୍ଶ, ନା ମିଳୁଛି ସେମାନଙ୍କର ଦିଗ୍‌ଦର୍ଶନ । ଉଗ୍ରସେନ ମହିଷୀଙ୍କ ସହିତ ଦ୍ରୁମିଳା ରାକ୍ଷସର ପାପାଚାର ଭିତରୁ ଯାହାର ଜନ୍ମ, ଏକ ଉପେକ୍ଷିତ ଶୈଶବ ବ୍ୟତୀତ, ତା' ଭାଗ୍ୟରେ ଆଉ ଅଧିକ କ'ଣ ଜୁଟନ୍ତା ?

ମଣିଷ ହିଁ ତାଙ୍କୁ ଏକ ସ୍ୱାଭାବିକ ଜୀବନରୁ ବଞ୍ଚିତ କରିଛି । ସେଇ ମଣିଷ ପାଇଁ ତେଣୁ କଂସର ମନରେ ଆକଣ୍ଠ ଘୃଣା ବ୍ୟତୀତ ଆଉ କିଛି ନାହିଁ ?

ଜୀବନ-ସୁଧା ପାନ କରିବାର ଆକଣ୍ଠ ତୃଷା ନେଇ, ତା'ର ସମୁନ୍ନତ ମଞ୍ଚରୁ ଓହ୍ଲାଇ ଆସି କଂସ ବିନମ୍ର ଅଞ୍ଜଳି ପାତିଥିଲା ନଦୀରେ- ହାୟ, ସେଠାରେ ସ୍ନେହ ସ୍ରୋତ ବିଶୁଷ୍କ-ଜଳ ତ ମିଳିଲା ନାହିଁ- ହତଭାଗ୍ୟର ଦୁଇହାତ ଭରି ଉଠିଲା କେବଳ କ୍ଳେଦାକ୍ତ ପଙ୍କରେ ।

ହେଡି ଦୀର୍ଘଶ୍ୱାସ ପକାଇ ଘୁମାଇ ପଡୁଥିବା ନଗରୀକୁ ଚାହିଁଲେ । ହଠାତ୍ ଆକାଶର ବକ୍ଷ ବିଦୀର୍ଣ୍ଣ କରି ଆଲୋକର ଏକ ତରଳ ସ୍ରୋତ ଝଲକି ଉଠି ମୁହୂର୍ତ୍ତକରେ ମହାଶୂନ୍ୟରେ ମିଳାଇଗଲା । ଏହା ଆଉ ଇନ୍ଦ୍ର ପତନର ସୂଚକ ନୁହେଁ ତ ?

ହେଡିଙ୍କର ମନ ବ୍ୟାକୁଳ ହୋଇଉଠିଲା । ପୃଥିବୀ-ମାତାର ଏଇ ଚିର ଅଶାନ୍ତ ଦୂରନ୍ତ ଶିଶୁଟିର ଭାଗ୍ୟରେ କ'ଣ ଅଛି କିଏ ଜାଣେ ?

ନିଜକୁ ଭୁଲାଇ ରଖିବା ପାଇଁ କଂସ ଏସବୁ ବ୍ୟବସ୍ଥା କରିଥିବାର ହେଡି ଜାଣନ୍ତି । ଧନୁଯାତ୍ରା ହେଉ, ଅବା ଅନ୍ୟ ଯେକୌଣସି ଉତ୍ସବ ହେଉ, କୃଷ୍ଣବଳରାମ ଯେ, ମଥୁରା ଆସିବେ ନାହିଁ, ଏ କଥା କଂସ ଅପେକ୍ଷା ଅଧିକ କିଏ ଜାଣେ ? ଅଭିଶାପ କାରଣରୁ ନିଜେ କଂସ ମଧ୍ୟ ଗୋପପୁରର ସୀମା ସ୍ପର୍ଶ କରି ପାରିବେ ନାହିଁ । ତଥାପି ସେ ଯଶୋଦା ନନ୍ଦନଙ୍କୁ ହାତ ପାଖରେ ପାଇବାର ସ୍ୱପ୍ନ ଦେଖନ୍ତି- ତା'ରି ଭିତରେ ବଞ୍ଚିବାର ଆନନ୍ଦ ଖୋଜିବା ପାଇଁ ଉଦ୍ୟମ କରନ୍ତି ।

ଏହାକୁ ଭବିତବ୍ୟ ଛଡ଼ା ଆଉ ଅନ୍ୟ କ'ଣ କୁହାଯାଇ ପାରିବ ?

ମଥୁରା ନଗରୀ ଆଜି ନୂତନ ସାଜରେ ନବବଧୂଟିଏ ଭଳି ଦେଖାଯାଉଛି । ଏହାର ମାର୍ଗ ସୁପରିଷ୍କୃତ- ଚନ୍ଦନ କର୍ପୂର ସୁବାସିତ ଜଳରେ ମାର୍ଜିତ । ଦ୍ୱାରେ ଦ୍ୱାରେ ପୂର୍ଣ୍ଣ କୁମ୍ଭ, ରମ୍ଭା ବୃକ୍ଷର ଆଡ଼ମ୍ବର । ସୁଗୁମ୍ଫିତ ପୁଷ୍ପ ପତ୍ରଦାମରେ ଗୃହଦ୍ୱାର ବିମଣ୍ଡିତ । ମାର୍ଗର ଠାବେ ଠାବେ ପୁଣି ସୁସଜ୍ଜିତ-ତୋରଣ-ରକ୍ତ ପୀତ ଶ୍ୱେତ ବର୍ଣ୍ଣର ଅଜସ୍ର ଚିରାଳ ମନ୍ଦ ବାୟୁରେ ପହଁରି ପହଁରି ପଥଚାରୀଙ୍କୁ ସ୍ୱାଗତ ଜଣାଉଛି ।

ଉତ୍ସବର ସ୍ପର୍ଶ ରାଜପୁରୀରେ ମଧ୍ୟ ଲାଗିଛି । ଗୃହ ଭିତ୍ତି ନୂତନ ଚୂର୍ଣ୍ଣ ବିଲେପିତ- ଏବଂ ସୁଦକ୍ଷ କଳାକାରମାନଙ୍କ ଦ୍ୱାରା ବିଚିତ୍ରିତ । ଗୃହେ ଗୃହେ ମହାର୍ଘ ଚନ୍ଦ୍ରାତପର ବର୍ଣ୍ଣିଳ ମହୋତ୍ସବ । ମଙ୍ଗଳ ଗାନରେ ପୁରମୁଖରିତ ।

ନହେବ ବା କାହିଁକି ? ତ୍ରିଭୁବନର ଏକାଙ୍ଗ ଚକ୍ରବର୍ତ୍ତୀ, ଦେବାସୁର ଯାହାର ପାଦତଳର କିଙ୍କର, ଯାହାର ଦୋର୍ଦ୍ଦଣ୍ଡ ପ୍ରତାପରେ ବାସୁକୀର ଉଦ୍ଧତ ଫଣା ମଧ୍ୟ ଅବନମିତ, ତାହାର ନିର୍ଦ୍ଦେଶ ଅମାନ୍ୟ କରିବ, ଏତେ ଶକ୍ତି କାହାର ଅଛି ?

ଧନୁଯାତ୍ରା ଉତ୍ସବରେ ଯୋଗଦେବା ନିମନ୍ତେ ଦୂତ ହସ୍ତରେ କରଦ ରାଜାମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ନଆସି ବା ସେମାନଙ୍କର ଚାରା କାହିଁ ? ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚଉଦିଗର ରାଜନ୍ୟମଣ୍ଡଳୀ ବହୁମୂଲ୍ୟ ଉପଢୌକନମାନ ଧରି ମଥୁରାରେ ଉପସ୍ଥିତ ଅଛନ୍ତି ।

ମଧୁବନ-କଟକ ସେମାନଙ୍କ ଜ୍ଞାତିପରିଜନ ଆତ୍ମୀୟ ସ୍ୱଜନ ସୈନ୍ୟ ସାମନ୍ତ ଅଶ୍ୱଗଜଙ୍କ ଗହଣରେ ମୁଖରିତ ହୋଇଉଠିଛି । ସେମାନଙ୍କ ଚର୍ଚ୍ଚାରେ ଲାଗି ପଡ଼ିଛନ୍ତି ଚୌରାଶୀକୋଟି ଯାଦବ । ସମୁଦ୍ର ଗର୍ଜନ ଭଳି ଗୁରୁଗୁରୁ ଘୋଷରେ ଚୌଦିଗ ଉଛୁଳୁଛି ।

ଯାତ୍ରାକାରୀ ତଥା ନିମନ୍ତ୍ରିତମାନଙ୍କର ମନୋରଞ୍ଜନ ନିମନ୍ତେ ପୁଣି କେତେ ଯେ ବ୍ୟବସ୍ଥା କରାଯାଇଛି, ତାହାର ଇୟତ୍ତା ନାହିଁ । ସୁନ୍ଦରୀ ମାଗଧୀର ଚଟୁଳ ନୃତ୍ୟ ଆଉ ସୁରଭିତ କାଦମ୍ବରୀର ଫେନିଳ ପାନ ପାତ୍ର ବାହୀ ତରୁଣ ଗୋଷ୍ଠୀର ଉଚ୍ଚ କଳହାସ୍ୟରେ ମଧୁପୁରୀର ରାଜଦଣ୍ଡ ମୁଖରିତ । କେଉଁଠି ଅବା ଚାଲିଛି ଅଶ୍ୱ ଗଜ ବା ମଲ୍ଲମାନଙ୍କର ଦ୍ୱୈତ ଯୁଦ୍ଧ । ଅଗଣିତ ଦର୍ଶକ ଉପସ୍ଥିତ ହୋଇ ତା ଦର୍ଶନ କରୁଛନ୍ତି ଏବଂ ନିଜ ନିଜ ପକ୍ଷକୁ ଉତ୍ସାହିତ ମଧ୍ୟ କରୁଛନ୍ତି । କେଉଁଠି ଚାଲିଛି ଦ୍ୟୂତକ୍ରୀଡ଼ା । କ୍ରୀଡ଼ାଶକ୍ତ ପ୍ରମତ୍ତ ନାଗରିକମାନଙ୍କର ଉଚ୍ଚ କଣ୍ଠ ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଛି । କିଏ ପଣ ଜିତି ଅତ୍ୟନ୍ତ ଉଲ୍ଲସିତ ତ ଆଉ କିଏ ଅବା ସର୍ବସ୍ୱ ହରାଇ ମୂହ୍ୟମାନ ।

ବ୍ରାହ୍ମଣମାନେ ବେଦପାଠ କରୁଛନ୍ତି । ଭାଟମାନେ ସ୍ତୁତିଗାନ କରୁଛନ୍ତି ।

ସମସ୍ତଙ୍କର ସେଇ ଗୋଟିଏ ଭୟ । କେହି କଂସ ରାଜାର ଅହେତୁକ କ୍ରୋଧର ପାତ୍ର ହେବାକୁ ଚାହାନ୍ତି ନାହିଁ । ଖଳିକାର ନୋହି କଳାନାଗକୁ ଚାଳିବାର ଦୁଃସାହସ କିଏ ଅବା କରିବ ?

ମଧୁପୁରର ସୀମା ପୁଣି ଦ୍ୱାଦଶ ଯୋଜନକୁ ଛୁଇଁଛି । ସୌନ୍ଦର୍ଯ୍ୟ ପଣରେ ଏଇ ଦେବଦୁର୍ଲ୍ଲଭ ନଗରୀ ବାରାସ୍ୱତୀପୁର, ଅବା ଅଳକାପୁରକୁ ମଧ୍ୟ ନିନ୍ଦା କରୁଛି । ସ୍ୱୟଂ ବିଶ୍ୱକର୍ମା ନିଜ ହସ୍ତରେ ଯେଉଁ ନଗରକୁ ନିର୍ମାଣ କରିଛନ୍ତି, ତା'ର ଶୋଭାର ପଟାନ୍ତର କାହିଁ ?

ଧନୁ-ଗୃହର ଶୋଭା ପୁଣି ହାର ମଧ୍ୟରେ ପଦକ ଭଳି ହୋଇଛି । ଏହାର ଅଦୂରରେ ରାଜସଭା ମଣ୍ଡନ କରି ସିଂହାସନରେ ବସିଛନ୍ତି ମହାପ୍ରତାପୀ କଂସାସୁର । ଚୌରାଅଶୀ କୋଟି ଯାଦବ ଯେ ଯାହା ପଦମର୍ଯ୍ୟାଦାରେ ସଭାରେ ରହିଛନ୍ତି । ଗନ୍ଧର୍ବମାନେ ସୁସ୍ୱରେ ଦୁନ୍ଦୁଭି ବାଦନ କରୁଛନ୍ତି । ଅପସରାମାନେ ନୃତ୍ୟ କରୁଛନ୍ତି । କିଏ ଛତ୍ର ଟେକିଛି ତ କିଏ ଆଲଟ ପକାଉଛି । କିଏ ତାମ୍ବୁଳକରଙ୍କ ବାହିନୀ ହୋଇଛି ତ କିଏ ମୁଖବାସ ଯୋଗାଉଛି । ମଣିମା ମଣିମା ଡାକରେ ସଭାଗୃହ ପୂରିଛି ।

କଂସ ମାନୀ ଲୋକର ମାନ ରଖେନାହିଁ- ଏ କଥା ତା'ର ସବୁଠାରୁ ବଡ଼ ଶତ୍ରୁ ମଧ୍ୟ କହିପାରିବ ନାହିଁ । କେତେ ଯେ କର୍ମଚାରୀଙ୍କ ମୁଣ୍ଡରେ ରାଜା ନିଜେ ଶାଢ଼ୀ ବାନ୍ଧି ଦେଇଛନ୍ତି, ମୁନି ଋଷିମାନଙ୍କୁ ସିଂହାସନରୁ ଓହ୍ଲାଇଆସି ସମ୍ମାନ ପ୍ରଦର୍ଶନ କରୁଛନ୍ତି, ତାହାର ସୁମାରି ନାହିଁ । ନଅ ଦିନ ନଅ ରାତି ବ୍ୟାପି ଚାଲିଛି ଏଇ ଉତ୍ସବ । ମଣିଷ ତ ଛାର, ସ୍ୱର୍ଗର ଦେବତାମାନେ ମଧ୍ୟ ଏଥିରେ ଯୋଗ ଦେବାପାଇଁ ବାଧ୍ୟ । ଉତ୍ସବର ଆଡ଼ମ୍ବର ଭିତରେ ଦିନରାତିର ପାର୍ଥକ୍ୟ ବାରିବା କଷ୍ଟସାଧ୍ୟ । ବାଣ-ନିଶାଣ-ଚମକ ଘୋଷରେ ପୁର ପ୍ରକମ୍ପିତ ।

ଭୋଜବଂଶରେ କେତେକେତେ ରାଜା ପୂର୍ବରୁ ରାଜପଣ କରି ଯାଇଛନ୍ତି । ହେଲେ ରୂପରେ ଗୁଣରେ ପରାକ୍ରମରେ କଂସ ପରି କିଏ ହେବ ? ବର୍ଷ ବର୍ଷ ଧରି ସେମାନେ ଯେଉଁ ସଞ୍ଚୟ କରି ଯାଇଥିଲେ, ଆଜି କଂସ ହିଁ ସେ ସବୁକୁ ଭୋଗ କରୁଛି ।

କଂସ ଜାଣେ ଶକ୍ତି ଯାହାର ଅଛି, ସେଇ ହିଁ ଧନବାନ୍, କୁଳବାନ୍ ଏବଂ ବଳବାନ୍ ମଧ୍ୟ । ତା'ର ଭ୍ରୂକୁଟୀ କୁଞ୍ଚନରେ ବସୁଧା ରସାତଳଗାମୀ ହୁଏ । ଅଙ୍ଗୁଳୀ ଚାଳନାରେ ସୂର୍ଯ୍ୟ ଅସ୍ତାଚଳ ମୁଖୀ ହୁଏ ।

ସେ ପୁଣି ଡରିବ ସାମାନ୍ୟ ଗୋଟାଏ ଗୋପାଳ କିଶୋରକୁ ?

ସାରା ସୃଷ୍ଟିକୁ ଡରାଇ ନିଜ ପଦାନତ କରି ରଖିବାର ପ୍ରଚେଷ୍ଟା କରୁ କରୁ କେଉଁ ଦିନ କଂସ ସ୍ୱୟଂ ଯେ ଡରି ମରି ଅସହାୟ ଭାବରେ ବଞ୍ଚି ରହିବା ପାଇଁ ପ୍ରାଣ ମୂର୍ଚ୍ଛା ସଂଗ୍ରାମ ଆରମ୍ଭ କରି ଦେଇଛି, ଏ କଥା ହୁଏତ ସେ ନିଜେ ମଧ୍ୟ ଜାଣେ ନାହିଁ ।

ସାରା ରାଜ୍ୟ ଧରି ଏଇ ଯେ ଉତ୍ସବର ଆୟୋଜନ ଚାଲିଛି, ଏହାର ଉଦ୍ଦେଶ୍ୟ କ'ଣ ? କୋଳାହଳ ଭିତରେ ନିଜକୁ ନିରାପଦ ମଣିବା ନୁହେଁ ତ ? ଏ କଥା କଂସକୁ କହିଲେ, ସେ କେବେ ସ୍ୱୀକାର କରିବ ନାହିଁ ।

ହେଟି ଜାଣନ୍ତି କଂସର ଦୁର୍ବଳତା, ଜାଣି ଶୁଣି କାହାର ଗୋପନ ତନ୍ତ୍ରୀରେ ଆଘାତ ଦେଲା ଭଳି ନିର୍ଲଜ୍ଜ ଶିକ୍ଷା ତାଙ୍କର ନାହିଁ । ନିଜକୁ ଭୁଲାଇ ରଖିବା ଭଳି ଆୟୋଜନ କରି କଂସ ଯଦି ତହିଁରେ ସନ୍ତୋଷ ପାଉଛି, ତେବେ ସେଥିରେ କାହାର କି କ୍ଷତି ?

ଏ ଯାତ୍ରା ଦେଖିବା ପାଇଁ ରାମକୃଷ୍ଣ ଯେବେ ଆସି ଯାଇଥାନ୍ତେ ତେବେ ଯାହା ହେବାର ହୋଇଥାଆନ୍ତା । ହୁଏତ ଉଭୟଙ୍କୁ ଶେଷ କରି ଦେବା ପାଇଁ କଂସ ଦୀର୍ଘଦିନ ଧରି ଯେଉଁ ଚେଷ୍ଟା ଚଳାଇଛି, ସେଥିରେ ସେ ସଫଳ ହୋଇଥାଆନ୍ତା କିମ୍ବା କୃଷ୍ଣଙ୍କ ହାତରେ ନିଜେ ପରାଭବ ପାଇ ସାରା ଜୀବନ ପାଇଁ ନୀରବ ହୋଇ ଯାଇଥାନ୍ତା ।

ଗୋପପୁରରୁ ଦୂତ ଶୂନ୍ୟ ହାତରେ ବାହୁଡ଼ି ଆସିବା ଫଳରେ ହିଁ କଂସ ଏଇଭଳି ଅବ୍ୟବସ୍ଥିତ ହୋଇ ପଡ଼ିଛି । ବ୍ୟର୍ଥ ପ୍ରତୀକ୍ଷା ଭଳି ଯନ୍ତ୍ରଣା ଆଉ କାହିଁ ? ହେଟି ଭାବୁଥିଲେ ଆସନ୍ତା କାଲିର ଭାରତବର୍ଷର କଥା । ଉତ୍ତରାପଥ ସମ୍ପ୍ରତି କ୍ଷୁଦ୍ର କ୍ଷୁଦ୍ର ଜନପଦରେ ବିଭକ୍ତ ହୋଇ ପଡ଼ିଛି । ହସ୍ତିନାପୁରରେ ଅନ୍ଧ ଧୃତରାଷ୍ଟ୍ରଙ୍କ ବଦଳରେ ବର୍ତ୍ତମାନ ରାଜତ୍ୱ କରୁଛନ୍ତି ଅମିତ ବିକ୍ରମ ପାଣ୍ଡୁ । ଶୁଣାଯାଉଛି ଇନ୍ଦ୍ରିୟପରତନ୍ତ୍ର ଏଇ ରାଜପୁତ୍ରଙ୍କ ଜୀବନ ଲଗ୍ନରେ ରାହୁର ଦୃଷ୍ଟି ପଡ଼ି ସାରିଛି କେଉଁ ଏକ ମୁନିଙ୍କର ଅଭିଶାପରେ । ସେ ପୁଣି ଅଳ୍ପାୟୁଷ ।

ଅବଶ୍ୟ ଅଛନ୍ତି ଏମାନଙ୍କର ଅଭିଭାବକରୂପେ ମହାତେଜସ୍ୱୀ ଶାନ୍ତନୁ କୁମାର ଭୀଷ୍ମ । ମାତ୍ର ତାଙ୍କର ବୟସ ହେଉଛି, ସେ ପୁଣି ଅଭିଭାବକ ସିନା, ପିତା ତ ନୁହଁନ୍ତି । ଉଚ୍ଛୃଙ୍ଖଳ ପାଣ୍ଡୁଙ୍କୁ ଉପଯୁକ୍ତ ମାର୍ଗ ଦେଖାଇବା ତାଙ୍କର ସାଧ୍ୟାତୀତ ।

ହେଟି ଶୁଣିଛନ୍ତି, କୁରୁବଂଶର ଧୃତରାଷ୍ଟ୍ର ସନ୍ତାନ ଶତପୁତ୍ର ଏବଂ ପାଣ୍ଡୁପୁତ୍ର ପାଞ୍ଚଭାଇ, ଏମାନେ ବାଳକ ମାତ୍ର । ଏମାନେ ବୟସ୍କ ହୋଇ ରାଜ୍ୟଭାର ଗ୍ରହଣ କଲା ବେଳକୁ ବହୁ ବିଳମ୍ବ ।

ଉତ୍ତରା ପଥରେ ଏକ ଅଣ ଆର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିବାର ଏଇ ଥିଲା ଚମତ୍କାର ସୁଯୋଗ । ମଗଧରାଜ ଜରାସନ୍ଧ ତାଙ୍କର ପିତା ହେଲେ ମଧ୍ୟ ରାକ୍ଷସ ପ୍ରକୃତିର । ସେ ପୁଣି ଜରା ରାକ୍ଷସୀ ଦ୍ୱାରା ଜୀବନପ୍ରାପ୍ତ । ମଥୁରା ରାଜ କଂସଙ୍କ ଧମନୀରେ ତ ସହଜେ ରାକ୍ଷସ ରକ୍ତ ପ୍ରବାହିତ । ମଗଧ ଆଉ ମଥୁରା ବୈବାହିକ ସୂତ୍ରରେ ପରସ୍ପରର ମିତ୍ର । ଉଭୟେ ଯଦି ଗୋଟିଏ ପତାକା ତଳେ ଠିଆ ହୋଇପାରନ୍ତେ, ତେବେ ଏ ମିଳିତ ଶକ୍ତି ଅନାୟାସରେ ସମଗ୍ର ଉତ୍ତରା ପଥର ନେତୃତ୍ୱ ନିଅନ୍ତା ।

ମାତ୍ର ତାହା ସମ୍ଭବ ହେବ ନାହିଁ । କାରଣ ହେଟି ଭଲ ଭାବରେ ଜାଣନ୍ତି, ମଗଧ ପତି ଭାରତ ବିଖ୍ୟାତ ବୀର । ମଥୁରାପତି ମଧ୍ୟ ଏ ଦୃଷ୍ଟିରୁ ନଗଣ୍ୟ ନୁହଁନ୍ତି । ଯେତେ

ଆତ୍ମୀୟ ହେଲେ କ'ଣ ହେଲା ? ଉଭୟଙ୍କର ସ୍ଫୀତିକୃତ ଅହଂକାରର ସଂଘର୍ଷରେ ଯେଉଁ ସ୍ଫୁଲିଙ୍ଗ ସୃଷ୍ଟି ହେବ, ଉଭୟ ରାଜକୁଳଙ୍କୁ ଦଗ୍‌ଧ କରିଦେବା ପାଇଁ ସେତକ ପର୍ଯ୍ୟାପ୍ତ ହେବ । ଏମାନେ ଦେଶକୁ ନେତୃତ୍ୱ ଦେବେ କ'ଣ ?

ତା' ଭିତରେ ଏଇ କୃଷ୍ଣବଳରାମଙ୍କର ଆତ୍ମପ୍ରକାଶ । ଆଜି ଏକଥା ପ୍ରାୟ କାହାରିକୁ ଅଛପା ନାହିଁ ଯେ ଉଭୟେ ହେଉଛନ୍ତି ଯଦୁବଂଶୀୟ । ଏଇ ବୟସରୁ ସେମାନଙ୍କ ସମ୍ପର୍କରେ ଯେଉଁ ସବୁ ଅଲୌକିକ ବିବରଣୀମାନ ଶୁଣିବାକୁ ମିଳୁଛି, ପୂର୍ଣ୍ଣ ବୟସ୍କ ହେବା ପରେ ଏମାନେ ଯେ ଦେଶକୁ ନେତୃତ୍ୱ ଦେବାପାଇଁ ପୂର୍ଣ୍ଣ ରୂପରେ କ୍ଷମ ହେବେ, ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ଉଦ୍‌ଥିତ ଶକ୍ତିକୁ ଖର୍ବ କରିବାର ଏଇ ହେଉଛି ଉପଯୁକ୍ତ ଅବସର । ମଗଧ ଆଉ ମଥୁରା ଯୁଗ୍ମ ଶକ୍ତିର ପ୍ରୟୋଗ ହିଁ ଗୋପପୁରର ଧ୍ୱଂସ ସାଧନ କରିପାରେ । ରାମକୃଷ୍ଣଙ୍କୁ ପରାଭବ ଦେଇପାରେ । ବର୍ତ୍ତମାନ ମୁହୂର୍ତ୍ତରେ କଂସ ଯଦି ଜରାସନ୍ଧଙ୍କ ସାହାଯ୍ୟ ଭିକ୍ଷା କରନ୍ତେ ଜରାସନ୍ଧ ନିଶ୍ଚୟ ତାଙ୍କୁ ସାହାଯ୍ୟ କରନ୍ତେ । ଅନ୍ତତଃ ପ୍ରାଣାଧିକା ଦୁଇ କନ୍ୟାଙ୍କର ସ୍ନେହର ଦାବୀକୁ ସେ କଦାପି ଉପେକ୍ଷା କରିପାରନ୍ତେ ନାହିଁ ।

ହେତି ଜାଣନ୍ତି, କଂସ ଏଭଳି ଆତ୍ମ ଅବମାନନାକାରୀ ପ୍ରସ୍ତାବରେ କେବେ ରାଜି ହେବେ ନାହିଁ । ତେବେ ତାଙ୍କୁ ତ ଶେଷ ଚେଷ୍ଟା କରିବାକୁ ହିଁ ପଡ଼ିବ । ମଥୁରା ରାଜବଂଶ ପ୍ରତି ତାଙ୍କର ମଧ୍ୟ ଗୋଟାଏ ଦାୟିତ୍ୱ ରହିଛି ।

ଅନେକ ସମୟର ନୀରବତା ପରେ ମଥୁରା-ରାଣୀ ମୁହଁ ଖୋଲିଲେ । ବିନମ୍ର କଣ୍ଠରେ କହିଲେ, ମହାରାଜ.... ।

ତାଙ୍କର ସେହି ଆକୁଳ ଆହ୍ୱାନ ଅନ୍ୟମନସ୍କ କଂସର ମର୍ମସ୍ଥଳକୁ ସ୍ପର୍ଶ କଲା । ସେ ବୁଝିଲା- କାରଣ ଯାହା ହେଉନା କାହିଁକି ତା'ର ଏଇ ଶୁଭାର୍ଥିନୀ ନାରୀଟି ପ୍ରକୃତରେ ବ୍ୟସ୍ତ ହୋଇ ପଡ଼ିଛି । ନିଜର ବିଶାଳ ବାହୁଯୁଗଳ ମେଲି ତାଙ୍କୁ ଗଭୀର ଆଶ୍ଳେଷରେ ବନ୍ଦୀ କରୁ କରୁ କଂସ ସ୍ନେହ କୋମଳ କଣ୍ଠରେ କହିଲା, କୁହ ପ୍ରେୟସୀ ।

ଅନାବିଳ ମମତାର ଏଇ ସ୍ନେହଳ ସ୍ପର୍ଶର ଉଷ୍ଣତା ହେତିଙ୍କ ତନୁରେ ଶିହରଣ ସୃଷ୍ଟି କଲା । କଂସ ତାଙ୍କର ବକ୍ଷର ସ୍ପନ୍ଦନ ନିଜ ବକ୍ଷରେ ଅନୁଭବ କରୁ କରୁ ତାଙ୍କ ପିଠିରେ ମମତାର ସ୍ପର୍ଶ ଦେବାକୁ ଲାଗିଲା ।

ହେତି ନିଜକୁ ମୁକୁଳିତ କଲେ । ଦୀର୍ଘକାଳ ଧରି ମନତଳେ ଯେଉଁ ଅଭିଳାଷଟିକୁ ସେ ପୋଷଣ କରି ରଖିଥିଲେ, ଆଜି ସେ ତାକୁ ପ୍ରକାଶ କଲେ ।

ହେତି କହିଲେ - ବର୍ତ୍ତମାନ ମଗଧ ଆଉ ମଥୁରାର ଯୁଗ୍ମ ପ୍ରୟାସ ଭାରତବର୍ଷକୁ ନେତୃତ୍ୱ ଦେବା ପାଇଁ ଉଦ୍ୟମ କରିବାର ସମୟ ଆସିଯାଇଛି ମହାରାଜ । ମୋର ଦୃଢ଼ ବିଶ୍ୱାସ, ଏଥିରେ ହିଁ ମଥୁରାର ମଙ୍ଗଳ ହେବ ।

କଂସ ବୁଝିଲା । ଜରାସନ୍ଧ ନିଜ କନ୍ୟା ମାଧ୍ୟମରେ ମଥୁରା ଉପରେ କର୍ତ୍ତୃତ୍ୱ ବିସ୍ତାର କରିବାକୁ ଚାହୁଁଛନ୍ତି କିମ୍ବା ନୁହେଁ, ସେ ତ ପରର କଥା । ହୁଏତ ହେତି ଯାହା କହୁଛନ୍ତି, ତାହା ମଥୁରା ପାଇଁ ଶୁଭଙ୍କର । ମାତ୍ର ମଗଧର ନେତୃତ୍ୱ ମାନି ନେବା, ତାଙ୍କ ପକ୍ଷରେ ଆଦୌ ସମ୍ଭବପର ନୁହେଁ । ସମଗ୍ର ଭାରତର ରାଜନ୍ୟ ମଣ୍ଡଳୀ ସ୍ୱୈରମୁଖ ହୋଇଉଠିବେ । ଯଦି ଉତ୍ତରା ପଥରେ କେବେ ଅଣ-ଆର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠା ହୁଏ, ତେବେ ତାହା ହେବ, ଏକାନ୍ତ ଭାବରେ ତାଙ୍କରି ଉଦ୍ୟମରେ । ଏଥିପାଇଁ ଅନ୍ୟର ଦ୍ୱାରରେ ଭିକ୍ଷାର ଥାଳ ଧରି ସେ ଆଦୌ ଠିଆ ହୋଇପାରିବେନାହିଁ । ପରିଣତି ଯାହାହେବାର ହେଉ ପଛେ ।

କଂସ କହିଲେ, ଲତା ଭଳି ଅନ୍ୟକୁ ଅବଲମ୍ବନ କରି ବଞ୍ଚିବା ଅପେକ୍ଷା ମରଣ ଯେ କଂସର କେତେ କାମ୍ୟ ତାହା ତମେ ବୁଝିପାରିବ ନାହିଁ । କଂସ ଏ ପର୍ଯ୍ୟନ୍ତ ଛିଡ଼ାହୋଇଛି ନିଜର ପାଦରେ । ମରଣ ପର୍ଯ୍ୟନ୍ତ ଠିଆ ହୋଇଥିବ ନିଜର ଶକ୍ତିରେ । ଏ ଧରଣର ଅନୁରୋଧ ତମେ ମୋତେ କର ନାହିଁ ।

ହେତି ବ୍ୟାକୁଳ କଣ୍ଠରେ କହିଲେ - ମହାରାଜ !

କଂସ ଉତ୍ତେଜିତ ହେଲେ । ଥର ଥର କଣ୍ଠରେ କହିଲେ- ତମର ସ୍ୱାମୀ ଜୀବନ ପାଇଁ ଅନ୍ୟର ପାଦ ପାଖରେ ନତଜାନୁ ହୋଇ ଭିକ୍ଷା ମାଗୁଛି, ଏ ଦୃଶ୍ୟ କ'ଣ ତମ ପାଇଁ ଖୁବ୍ ଆମୋଦଦାୟକ ହେବ ? ବରଂ ଆସନ୍ତୁ ରାମକୃଷ୍ଣ, ଯେମିତି ଗୋଟି ଗୋଟି କରି ଅଷ୍ଟ ସେନାଙ୍କୁ ମାରିଛନ୍ତି, ସେମିତି ଖଣ୍ଡ ବିଖଣ୍ଡ କରି ଦିଅନ୍ତୁ କଂସର ଶରୀର । କଂସ ଚାହେଁନାହିଁ ଏଭଳି ଭୀରୁ ଜୀବନ- ଏତିକି କହୁ କହୁ କଂସର କଣ୍ଠରୁଦ୍ଧ ହୋଇଗଲା । ହଠକାରୀ ଶିଶୁ ନିଜ ଉଦ୍ଦେଶ୍ୟ ପୂର୍ଣ୍ଣ ନ ହେବାର ଦେଖିଲେ, ଯେମିତି ଅଭିମାନରେ ଆଖିରୁ ଲୁହ ଝରାଏ, ଠିକ୍ ସେମିତି ଆବେଗ ତରଳ କ୍ରୋଧରେ କଂସର ଆଖିରୁ ଝର୍ ଝର୍ ଲୁହ ଝରିପଡ଼ିଲା ।

ହେତି ବିସ୍ମୟ ଏବଂ ଦୁଃଖରେ ଏଇ ଅଦ୍‌ଭୁତକର୍ମୀ ପୁରୁଷଟି ଆଡ଼େ ଅନାଇ ରହିଥିଲେ ।

○○○